

“ ଦୁଇଦିନର   ଦୁନିଆଠାରେ
ମୁଁ ଖୋଲିଛି,   ତୁ ଖୋଲିଦେ
ଛାତି ଖୋଲିଦେ, ଛାତିକୁ ମିଶା
ଛାତିରେ ମୋର ଛାତିକୁ ତୋର
ତୋହର ଛାତି, ମୋହର ଛାତି
ମିଶାଇ ଦେବା  ଭଲପାଇବା—
ପାଇବା ଭଲ ।।”

[ କନ୍‌ଫେଇଲାଲ ]

ସଂପାଦନା

**ଶ୍ରୀ ବ୍ରଜନାଥ ରଥ**

ସଭାପତି :

ଫକୀରମୋହନ ସାହିତ୍ୟ ପରିଷଦ



ସହଯୋଗୀ

**ଶ୍ରୀ ଚନ୍ଦ୍ରକୁମାର ମହାନ୍ତି**

ଉପ-ସଭାପତି :

ଫକୀରମୋହନ ସାହିତ୍ୟ ପରିଷଦ

**ଶ୍ରୀ ପୁରୁଷୋତ୍ତମ ଭୂୟାଁ**

ସଂପାଦକ :

ଫକୀରମୋହନ ସାହିତ୍ୟ ପରିଷଦ

**ଶ୍ରୀ ପଞ୍ଚାନନ ଦାଶ**

ସହ-ସଂପାଦକ :

ଫକୀରମୋହନ ସାହିତ୍ୟ ପରିଷଦ



ପ୍ରକାଶକ

## ଫକୀର ମୋହନ ସାହିତ୍ୟ ପରିଷଦ

## ବାଲେଶ୍ୱର

# କନ୍ହେଇନାମା

•

ସଂପାଦନା
**ଶ୍ରୀ ବ୍ରଜନାଥ ରଥ**

•

ପ୍ରକାଶକ
**ଫକୀରମୋହନ
ସାହିତ୍ୟ ପରିଷଦ
ବାଲେଶ୍ବର**

•

ଲିପିକାର
**ବିଶ୍ବଶ୍ରୀ ପ୍ରେସ
ବାଲେଶ୍ବର**

•

ପ୍ରଥମ ପ୍ରକାଶ
**୨୭ ଜୁନ୍ ୧୯୭୬**

•

ପ୍ରଚ୍ଛଦ ସଜ୍ଜା
**ଶ୍ରୀ ଉଦୟନାରାୟଣ ଜେନା**

•

ମୂଲ୍ୟ
**ସାଢ଼ ଟଙ୍କା**



ପ୍ରବେଶ :

ତା ୨-୭-୧୯୪୭

ପ୍ରସ୍ଥାନ :

ତା ୨୭-୭-୧୯୭୫

ପିତା :

**କ୍ଷେତ୍ରମୋହନ ଦାସ**

ମାତା :

**ଅନୀଲ୍ ଦେବୀ**

ଗ୍ରାମ : ଜମର୍ଦ୍ଧା  ଜିଲ୍ଲା : ବାଲେଶ୍ୱର

# ॥ ବିନମ୍ର କୃତଜ୍ଞତା ॥

ଯେଉଁ ଉଦାରଚେତା ଶିଳ୍ପୀ, ସାହିତ୍ୟିକ ଓ ସାହିତ୍ୟପ୍ରେମୀମାନଙ୍କର ଅକୁଣ୍ଠ ସାହାଯ୍ୟ "କନ୍ଦେଇନାମା" ପ୍ରକାଶନର ପଥ ସୁଗମ କରିଛି—

ଶ୍ରୀ ରତନ ଦେ
ଶ୍ରୀ ସୀତାକାନ୍ତ ମହାପାତ୍ର ଆଇ: ଏ:ଏସ୍
ଶ୍ରୀ ମନୋଜ ଦାସ
ଅଧ୍ୟାପକ ଗଙ୍ଗାଧର ବଳ
ଅଧ୍ୟାପିକା ଶାନ୍ତ ମହାପାତ୍ର (ବଳ)
ଅଧ୍ୟାପିକା ବୀଣାପାଣି ମହାନ୍ତି
ଶ୍ରୀ ଜଦୁନାରାୟଣ ଜେନା
ଶ୍ରୀମତୀ ଶୈଳବାଳା ମହାନ୍ତି
ଶ୍ରୀ ଶୁଭେନ୍ଦୁ ମୋହନ ଦାସ
ଶ୍ରୀ ସତ୍ୟ ମିଶ୍ର
ଅଧ୍ୟାପକ ମଧୁସୂଦନ ଦାସ
ଶ୍ରୀ ଇନ୍ଦୁଭୂଷଣ କର
ଶ୍ରୀ ରାଜକିଶୋର ମହାନ୍ତି
ଶ୍ରୀ ରଣଧୀର ଦାସ
ଶ୍ରୀ ଚତ୍ତ ଦାଶ
ଶ୍ରୀ ପୁରୁଷୋତ୍ତମ ଭୂୟାଁ
ଶ୍ରୀ ଶେଷଦେବ ମଲ୍ଲିକ
ଅଧ୍ୟାପିକା ଗୀତା କାନୁନଗୋ

ଅଧ୍ୟାପିକା କୃଷ୍ଣାବସୁ (ନନ୍ଦୀ)
ଅଧ୍ୟାପିକା ଜ୍ୟୋତ୍ସ୍ନା ପଟ୍ଟନାୟକ
ଅଧ୍ୟାପିକା ଗିରିବାଳା ମହାନ୍ତି
ଅଧ୍ୟାପିକା ମନୋରମା ମିଶ୍ର
ଅଧ୍ୟାପିକା ବିନୋଦିନୀ ଦାଶ
ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି
ଶ୍ରୀ ସମରେନ୍ଦ୍ର ନାୟକ
ଶ୍ରୀ ପ୍ରସନ୍ନକୁମାର ମିଶ୍ର
ଶ୍ରୀ ପୂର୍ଣ୍ଣ ମହାପାତ୍ର
ଶ୍ରୀ ଅଚ୍ୟୁତାନନ୍ଦ ସାମଲ
ଶ୍ରୀ ପ୍ରସନ୍ନକୁମାର ଦାସ
ଶ୍ରୀ ଶରତଚନ୍ଦ୍ର ସାହୁ
ଶ୍ରୀ କୁଞ୍ଜବିହାରୀ ଧଳ
ଶ୍ରୀ ଅରୁଣ ପଟ୍ଟନାୟକ
ଶ୍ରୀ ସନାତନ ସେଠୀ
ଶ୍ରୀ ଗୌରୀଶଙ୍କର ଶତପଥୀ
ଶ୍ରୀ ରବୀନ୍ଦ୍ର ନାଥ ଦାସ
ଶ୍ରୀମତୀ ଧାତ୍ରି ବିଶ୍ୱାଳ

—o—

# ‘ସ୍ୱପ୍ନ-ସମ୍ରାଟ’ର ଉଦ୍ଦେଶ୍ୟରେ

ଆଜକୁ ଠିକ୍ ବର୍ଷେ ହେଲା ଯିଏ ଆମକୁ ଛାଡ଼ି ଚାଲିଯାଇଛନ୍ତି ସେ ଆମର ଆଦରର କାନ୍ତକବି, ସ୍ନେହର କାନ୍ତକବି । ଆଉ କେବେ ତା’ ସହିତ ଭେଟ ହେବ ନାହିଁ ଏ ଜୀବନରେ—ସେଥିପାଇଁ ଏତେ ସ୍ମୃତି-ସ୍ମରଣ, ଏତେ ଅଶ୍ରୁ-ତର୍ପଣ ।

ମୃତ୍ୟୁରେ କିଛି ବୈଚିତ୍ର୍ୟ ନାହିଁ । ତାହା ଏକ ଚରମ ସତ୍ୟ, ଏକ ନିଷ୍ଠୁର ସତ୍ୟ, ଏକ ଦାରୁଣ ସତ୍ୟ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସମସ୍ତ ସୀମା ପୂର୍ବରୁ ଯଦି ମୃତ୍ୟୁର କାଳ ହାତ ଲମ୍ବି ଆସି ବିକାଶୋନ୍ମୁଖୀ ଏକ ଉଜ୍ଜ୍ୱଳ ପ୍ରତିଭାକୁ ଜୀବନବୃନ୍ତରୁ ଛଡ଼ାଇନିଏ ତାଠାରୁ ବଳି ଚରମ ଦୁଃଖ ଓ ଦୁର୍ଭାଗ୍ୟ ଆଉ କଣ ଥାଇପାରେ ! କାନ୍ତକବିଙ୍କର ଏହି ଅକାଳ ବିୟୋଗ ସେଥିପାଇଁ ଆମ ନିକଟରେ ଏତେ ଦୁଃଖପ୍ରଦ ଓ ଏତେ ଯନ୍ତ୍ରଣାଦାୟକ । ତାର ସୃଷ୍ଟି-ସାଧନା ସିଦ୍ଧିର ପରିପୂର୍ଣ୍ଣ ରୂପ ପରିଗ୍ରହ କରିବା ପୂର୍ବରୁ ତହିଁରେ ଯେଉଁ ଅକାଳ ଯବନିକାପାତ ହେଲା ସେଥିପାଇଁ ଆମର ଏତେ ଅନୁଚିନ୍ତା ଏତେ ମର୍ମବେଦନା । ଆଜି ତା’ କଥା ଭାବିଲାବେଳକୁ କବି ଗଡ଼ନାୟକଙ୍କର ଗୋଟିଏ ପ୍ରାଣସ୍ପର୍ଶୀ କବିତାର କିୟଦଂଶ ବାରମ୍ବାର ଆସି ମନର ରୁଦ୍ଧ କବାଟରେ କରାଘାତ କରୁଛି—

ଧରଣୀର ବୁକେ ଫଗୁଣଇ ଯେବେ  
ଅରୁଣ ପରଶ ଲାଗି  
ନବ ବିକାଶର ଦୀପ୍ତ ଉତ୍ସବ  
ଧୀରେ ଉଠୁଥାଏ ଜାଗି  
ଚିତ୍ତର ଦେହେ ସୁଷମା ଉକୁଟେ  
ପତରେ ଫୁଲରେ ସଙ୍ଗୀତ ଉଠେ  
ଲାଗେ ଉଚ୍ଛଳ ରସ,  
ମୃତ୍ୟୁହେ ତୁମେ—ସେତେବେଳେ କାହିଁ ଆସ ?

ଜୀବନର ଦ୍ୱାର— ପ୍ରାଙ୍ଗଣେ ଯେବେ  
ଯୌବନ ଉଠେ ଝଳି  
ଉଚ୍ଛଳି ପଡ଼ଇ ଫେନିଳ ମଦିରା  
ପାନ ସମ୍ପୁଟ ଭରି,

ସୃଷ୍ଟିର ଅଙ୍କୁର କେତେ ଦୃଢ଼ ଓ ଗଭୀର ଥିଲା ଏହାର ଅନାସକ୍ତ ଓ ନିରପେକ୍ଷ ବିଚାର କରି ତାର ପ୍ରତି ଯୋଗ୍ୟ ମୂଲ୍ୟ ଦେବା ଉଚିତ । ଆମ ଜାଣିବାରେ ମାତ୍ର ପାଞ୍ଚ ଛଅ ବର୍ଷର ସାହିତ୍ୟିକ ଜୀବନ ଭିତରେ କାନ୍ହେଇଙ୍କର ସୃଷ୍ଟିର ପରିମାଣ କିଛି କମ ନୁହେଁ । ପ୍ରାୟ ଶହେଟି ଗଳ୍ପ, ଗୋଟିଏ ଉପନ୍ୟାସ, କିଛି କ୍ଷୁଦ୍ର କବିତା ଓ ରମ୍ୟ ରଚନା ସେ ଲେଖିଯାଇଛି ଏବଂ ସେ ଗୁଡ଼ିକରୁ ପ୍ରାୟ ଅଧିକାଂଶ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ତନ୍ମଧ୍ୟରୁ କିଛି ଗଳ୍ପ ଓ କବିତା ଓଡ଼ିଶାର ସୁଧୀ ପାଠକ ମହଲରେ ବେଶ୍ ଚାଞ୍ଚଲ୍ୟ ମଧ୍ୟ ସୃଷ୍ଟି କରିଛି । କେବଳ ପରିମାଣାତ୍ମକ ଦୃଷ୍ଟିରୁ ନୁହେଁ ଗୁଣାତ୍ମକ ଦୃଷ୍ଟିରୁ ମଧ୍ୟ କାନ୍ହେଇର କିଛି ଲେଖା ଶୈଳୀ ଓ ବିଷୟବସ୍ତୁ ଉଭୟ ଦିଗରୁ ବେଶ୍ ଉଚ୍ଚକୋଟୀର ଏହା ସ୍ୱୀକାର କରିବାକୁ ହେବ । ହୁଏତ ପରୀକ୍ଷା, ନିରୀକ୍ଷା ଭିତରେ ସେ ଅନେକ ସମୟ ବିତାଇ ଦେଇଛି ଏବଂ ଅନେକ ଗଳ୍ପରେ ପ୍ରେମକୁ ମୁଖ୍ୟ ଉପଜୀବ୍ୟ କରି ନେଇଛି, ତଥାପି ତାର ଏଭଳି କେତେକ ଗଳ୍ପ ଅଛି ଯେଉଁଥିରେ ବିଷୟର ବୈଚିତ୍ର୍ୟ ଏବଂ ଲେଖକଙ୍କର ଅଦ୍ଭୁତ ଶକ୍ତି ଲକ୍ଷ୍ୟଣୀୟ । ଏ ପ୍ରସଙ୍ଗରେ 'ମୃତବସ୍ତ୍ରର ଆଗ' 'ପ୍ରଯୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର,' 'ବୁମେରାଂ,' 'ଏକ ବ୍ୟବଚ୍ଛେଦର ଧାରା ବିବରଣୀ "ଉତ୍ତମପାଦ" ଇତ୍ୟାଦି ଗଳ୍ପକୁ ଉଲ୍ଲେଖ କରାଯାଇ ପାରେ । କାନ୍ହେଇ ଜଣେ ନୂତନ ସ୍ରଷ୍ଟା ଭାବରେ ଯେ ଏକ ଶକ୍ତିଶାଳୀ ହାତ ପାଇଥିଲା ଏବଂ ତାର ସମ୍ଭାବନା ଯେ ଖୁବ୍ ଉଜ୍ଜ୍ୱଳ ଥିଲା ଏହା ନିଃସନ୍ଦେହରେ କୁହାଯାଇ ପାରେ । କିନ୍ତୁ ସେ ସମ୍ଭାବନା, ସମ୍ଭାବନାରେହିଁ ରହିଗଲା । ସିଦ୍ଧିର ସାଫଲ୍ୟ ପୂର୍ବରୁ ସାଧନାର ଗତିଧାରା ମୃତ୍ୟୁର ମରୁପଥରେ ହଜିଗଲା ।

ଜଣେ ତରୁଣ ଲେଖକ ଭାବରେ କେବଳ ନୁହେଁ, ଜଣେ ସ୍ନେହ-ବତ୍ସଳ ଅନୁଜ-ପ୍ରତିମ ବନ୍ଧୁ ଭାବରେ ମଧ୍ୟ ସେ ଥିଲା ଆମମାନଙ୍କର ପ୍ରେରଣାର ଉତ୍ସ, ଅବସରର ସାଥି, ସାହିତ୍ୟିକ ଆଡ୍ଡାର ମଧ୍ୟମଣି । ଆଜି ବି ମନେପଡ଼େ, ଡା: ବୋଲ୍‌ଟନଙ୍କ ସହ ବୁଦ୍ଧପୁରର ବେଳାଭୂମିରେ ବୁଲୁଥିବା ବେଳେ ତା'ର ସେହି ଛନ୍ଦଚପଳ ଗତି, କୁଲ୍‌ଡ଼ିହା ଜଙ୍ଗଲର ନିର୍ଜନ ଡାକବଙ୍ଗଳାରେ ସାହିତ୍ୟିକ ବନ୍ଧୁ ଗହଣରେ ତାର ସେହି ବାଲ୍ୟଚପଳ ସ୍ୱଭାବ, କିମ୍ବା ପଞ୍ଚଲିଙ୍ଗେଶ୍ୱରର ଝରଣା କୂଳରେ ଲେଖକ ଆସରରେ ତାର ସେହି ପ୍ରଗଲ୍‌ଭ କଥିକତା ଓ ରସିକତା । ହୃଦୟ ସହିତ ହୃଦୟକୁ ଯୋଡ଼ିଦେଇ କ୍ଷଣକାଳ ଭିତରେ ଏକାତ୍ମ ହୋଇ ଯିବାର ଅଦ୍ଭୁତ କଳା-କୌଶଳ ମାଲୁମ ଥିଲା ତାକୁ । ଅଶ୍ରୁ-ତର୍ପଣ ଭିତରେ ଏହି ସ୍ମୃତି-ଚାରଣ କରିବାକୁହିଁ ପଡ଼ିବ ଆମକୁ ସାରା ଜୀବନ ଧରି ।

କାନ୍ହେଇ ତାର ଏକମାତ୍ର ଉପନ୍ୟାସ 'ଦୁର୍ଘଟଣା'ର ଗୋଟିଏ ସ୍ଥାନରେ ଲେଖିଛି "ପୃଥିବୀରେ ସମୟ ଖୁବ୍ କମ୍ । ଏଇ ସମୟ ମଧ୍ୟରେ ଅନେକ କାର୍ଯ୍ୟ କରିଯିବାକୁ ହେବ । ଅନେକ କଥା ଜାଣି ଯିବାକୁ ହେବ ।" ଏହାର ଅନ୍ତରାଳ

ପ୍ରତିଧ୍ୱନି ମଧ୍ୟ ଶୁଣିବାକୁ ମିଳେ ତାର ଏକ ଦିନଲିପିରୁ ଯେଉଁଠି ସେ କହୁଛି "ମତେ ସ୍ୱା ଭିତରେ ଅନେକ କାମ କରିବାକୁ ହେବ । ଜାଣେ ନମା ସମସ୍ତ ଯାଖେଇ ଆସିଲାଣି ।" ମୃତ୍ୟୁକୁ ସେ ଖୁବ୍ ନିକଟରେ ଦେଖି ପାରିଥିଲା ବୋଲି ବୋଧହୁଏ ଜୀବନକୁ ଏତେ ଭଲ ପାଉଥିଲା । ସକଳ ଯନ୍ତ୍ରଣା ସତ୍ତ୍ୱେ ସେ ଅକପଟ ଭାବରେ ସ୍ୱୀକାର କରିଥିଲା "ବୋଧହୁଏ ସାହିତ୍ୟ ମତେ ଦୁଃଖରୁ ଅସମ୍ଭବ ମୁକ୍ତି ଦେଉଛି । ମୁଁ ଜାଣେ ମୋର ପାର୍ଥିବ ସମ୍ପତ୍ତି ବା ପଦାର୍ଥ କିଛି ନାହିଁ । ମୁଁ ସ୍ୱପ୍ନ-ସମ୍ରାଟ ।" (ଦିନଲିପି ୧୬-୧-୭୩) ବାସ୍ତବିକ ସେ ଥିଲା 'ସ୍ୱପ୍ନ-ସମ୍ରାଟ' ଆଉ ବଞ୍ଚିବା ପାଇଁ ବ୍ୟାକୁଳତା ତାର କିଛି କମ୍ ନଥିଲା । କିନ୍ତୁ ସେ ବଞ୍ଚିବା ଶବ ଭଳି ବଞ୍ଚିବା ନୁହେଁ । ସେଥିପାଇଁ 'ଶଫଙ୍ଗ' ଗଳ୍ପରେ ସେ ଲେଖିଛି "ମୁଁ ଆଉ କିଛି ଚାହେଁନି, କେବଳ ବଞ୍ଚିବାକୁ ଚାହେଁ । ତୁମଭଳି, ଏମାନଙ୍କ ଭଳି, ଶବ ଭଳି ବଞ୍ଚିବାର ଇଚ୍ଛା ମୋର ଆଦୌ ନାହିଁ । ତେଣୁ ତୁମେ ଯଦି ପ୍ରକୃତରେ ବଞ୍ଚିବାକୁ ଚାହଁ ତେବେ ମୋତେ କେବଳ ଭଲପାଅ । ତୁମର ମହାଧମନୀରେ ଶୋଇଥିବା ଯନ୍ତ୍ରଣାର ଶଫଙ୍ଗକୁ ଉଠାଇ ସାରା ସ୍ନାୟୁକୋଷରେ ବଞ୍ଚିବାର ସମ୍ବାଦ ପଠାଇ ଦିଅ ।" ଏଭଳି ପ୍ରଚଣ୍ଡ ଭାବରେ ବଞ୍ଚିବା ପାଇଁ ବୋଧହୁଏ କନ୍‌ହେଇ ଭଲପାଇବାକୁ ତାର ଅମୋଘ ଅସ୍ତ୍ରରୂପେ ବ୍ୟବହାର କରି ଶିଖିଥିଲା । ହର କୋପାନଳରେ ମଦନ କେବେ ଭସ୍ମୀଭୂତ ହୋଇଥିଲେବି ଆଜି ତାର ପୁଷ୍ପବାଣର ଟଂକାରରେ ସମଗ୍ର ସୃଷ୍ଟି ଶିହରିତ ହେଲା ଭଳି ମୃତ୍ୟୁର କୋପାନଳରେ ବିଦଗ୍ଧ କନ୍‌ହେଇର ସେଇ 'ଭଲପାଇବା' ଆମକୁ ଏତେ ଉଦ୍‌ବେଳିତ କରୁଛି ।

କନ୍‌ହେଇ ଏହାର ଚରମ ପରୀକ୍ଷା ତାର ସ୍ୱଳ୍ପାୟୁ ଜୀବନରେ କରିଯାଇଛି । ପାର୍ଥିବ ସମ୍ପତ୍ତି ବା ପଦାର୍ଥ କିଛି ନଥାଇବି ଜୀବନ ଓ ସାହିତ୍ୟକୁ ଭଲପାଇବା ଭିତରେ ସେ ଅନେକ କିଛି ପାଇ ପାରିଥିଲା ଏବଂ ତାହାରି ଭିତରେ ବଞ୍ଚିବାର ଅଦମ୍ୟ ଇଚ୍ଛା ପୋଷଣ କରିଥିଲା । ଆମର ମନେହୁଏ ତାର ସେ ଇଚ୍ଛା ଫଳବତୀ ହୋଇଛି ଏବଂ "ସ୍ୱପ୍ନ-ସମ୍ରାଟ" କନ୍‌ହେଇ ଅତି ଅଦ୍ଭୁତ ଭାବରେ ବଞ୍ଚି ରହିଛି ଆମର ମହାଧମନୀରେ ଆମର ପ୍ରତିଟି ସ୍ନାୟୁକୋଷରେ ଏବଂ ତାର ସାହିତ୍ୟ ସୃଷ୍ଟି ଭିତରେ ।

ବାଲେଶ୍ୱର
୨୭-୭-୭୬

ଶ୍ରୀ ବଜନାଥ - ରଥ

# ॥ ସ୍ମରଣିକାର ପୃଷ୍ଠାରେ ॥

॥ ପରିଶିଷ୍ଟ ॥





# ଫୁଲଟି ଝରିଯାଇ......

• ଶ୍ରୀ ଭୃଜନାଥ ରଥ

ଫୁଲଟି ଝରିଯାଇ
ରହିଲା କାହିଁ ବୃନ୍ତ ରହିଲା
ତା ମଧୁ ମହକରେ
ନିଖିଳ ଜନମନ ମୋହିଲା ।
କା' ମାଳ ହାର ବାଜି
ଅକାଳେ ଗଲା ହଜି
ସକଳ କାନେ କଥା କହିଲା ??

ଫୁଲଟି ଫୁଟିଥିଲା
ଧୂସର ମରୁପଥ ପ୍ରାନ୍ତରେ
ଫୁଟି ସେ ଲେଉଟିଗଲା
ଶ୍ରାବଣ ଘନ ଘୋର ଗର୍ଭରେ ।
ଝରିବା ଆଗୁ ସିଏ
ଧରଣୀ ଆଖି ଲୁହେ
ଜୀବନ-ପ୍ରେମ-ଗୀତ ଗାଇଲା ॥

ସେ ଯଦି ଝରିଗଲା
କି ଏବେ ନେବ ତାକୁ ସାଉଁଟି
ସେ ଯଦି ମରିଗଲା
ଫୁଟିବ ଯାଇ କହ କେଉଁଠି ?
ସେ ନୁହେଁ ଝରିବାର
ସେ ନୁହେଁ ମରିବାର
ସୃଷ୍ଟି-ସାଧନାରେ ଫୁଟିବ ବାର ବାର
ହୃଦୟ ଦେଇ ସିଏ
ସକଳେ ଯେଣୁ ଭଲ ପାଇଲା ॥

—o—

# ॥ ସ୍ୱପ୍ନ-ସମ୍ରାଟ ॥

• ଶ୍ରୀ ଚନ୍ଦ୍ରକୁମାର ମହାନ୍ତି

ଅସମୟେ ଚାଲିଗଲ "ସ୍ୱପ୍ନର ସମ୍ରାଟ" ଆହେ
ତୁମ ସୃଷ୍ଟି ସାମ୍ରାଜ୍ୟକୁ ଛାଡ଼ି
ଯେଉଁଠି ଅଜବ ଖାଲି ସବୁ ପାଇବାର ଆଶା
ଲାଭନାହିଁ ଜଳୁଅଛି କୁହୁଳି କୁହୁଳି ।

ତୁମେବା ପାଇଲ କଣ ?
କିଛି ହେଲେ ସତ ହେଲା ନାହିଁ
ଆହାଃ କେତେ ପ୍ରବଣତା !
ଚଞ୍ଚଳ ତନୁରେ ତୁମ ଶିଥିଳତା ଟିକେ ଦେଖିନାହିଁ ।

ଅସୀମ ମମତା ନେଇ ଆପଣାକୁ ଉଜାଡ଼ିଲ
ସବୁଙ୍କ ପାଖରେ ତୁମେ, ନିଷ୍କପଟ ନିରହଂକାରରେ
ଆପଣାର ପ୍ରୀତି ଦେଇ ସାଉଁଟି ନେଇଛ ସିନା
ନିଜର ସମ୍ବଳ ବୋଲି ଯାହାଟିକେ ଆତ୍ମ ସନ୍ତୋଷରେ

ବଞ୍ଚିବା ପାଇଁକି ଖାଲି ମୃତ୍ୟୁ ସଚେତନ ହୋଇ
ସବୁଠାରୁ ଅମ୍ନୀସୁତା, ସମ୍ପର୍କର କସୁଦ୍ଧ ସେତୁ
ତୁମେ ବାନ୍ଧିଦେଇଗଲ ଆମର ଏ ପୃଥିବୀରୁ
ତୁମର ପୃଥିବୀ ଯାଏ, ମୃତ୍ୟୁଞ୍ଜୟି ! ମନେ ଆଙ୍କକରୁ

ଦୁଃଖ ଖାଲି
ସବୁ କିଛି ଅହେତୁକ ଯନ୍ତ୍ରଣା ଭିତରେ
ଅନୁଭବ କରିଗଲ ଯାହାକିଛି ଅପାର୍ଥିବ
ଅବାସ୍ତବ, ଜବୁଟିବୁ ବସନ୍ତର ନିଛକ ଜଲ୍ଲାରେ
କିଛି ପାଇଲନି,
ମୃତ୍ୟୁର ଦୁଃସ୍ୱପ୍ନ ଯାହା ଖାଲି ତୁମ ସତହେଲା
"ସ୍ୱପ୍ନର ସମ୍ରାଟ" ତୁମେ
ତୁମ ସ୍ୱପ୍ନ ଆଜିବି ମରିନି ॥

—O—

# କଲ୍ଲୋଲ ସହିତ ମୋର ଶେଷ ଦେଖା

• ଶୁଭେନ୍ଦୁ ମୋହନ ଦାସ

“ସାର୍ ଆପଣ ଆମମାନଙ୍କୁ, ବିଶେଷତଃ ମୋତେ, ଯାହା ନ କରିବାକୁ କହନ୍ତି, ଆପଣ ତାହାହିଁ ତ କରନ୍ତି ଆପଣଙ୍କ ଗଳ୍ପରେ ।

ମାନେ ?

ମାନେ ଏଇ ଧରନ୍ତୁ ହାରକନ୍, କନ୍ତ୍ରରଂଗ, ପ୍ରବନ୍ଧ ପରି ସବ୍-କାପ୍‌ସନ ଦେଇ ଗଳ୍ପକୁ ସଜାଇବା—ଏଇ ସବୁକୁ ଆପଣ ନିଜେ, ମାନେ ଏଇ ଆବରଣକୁ ଆପଣ ତ ଭଲ ପାନ୍ତି ନାହିଁ, ଅଥଚ ଆପଣଙ୍କର ଯେତେ ଗଳ୍ପ ପଢ଼ିଛି ଅଧିକାଂଶରେ ଏସବୁ ଥାଏ … … …”

ଜୀବନରେ ପ୍ରଥମ ଥର ପାଇଁ ତା ମୁହଁରୁ ସେଦିନ ଏପରି କଥା ଶୁଣି ସ୍ତମ୍ଭିତ ହେଲି । ସ୍ତମ୍ଭିତ ହେଲି ଏଇଥିପାଇଁ ଯେ କଲ୍ଲୋଳ ମଥାରେ ଏପରି କଥା ସବୁ ଆସିଲା କିପରି ? ମୁଁ ଭଲ ଭାବି ଜାଣେ କଲ୍ଲୋଳ ଗୋଟେ ନିରୋଳା ସୃଷ୍ଟିଶୀଳ ଲେଖକ, ଏକ ନିର୍ମଳ ସ୍ରଷ୍ଟା ସମାଲୋଚନାମୂଳକ କଥା ବା ଯୁକ୍ତିର ଧାର ଦେଇ ସେ ଯାଏ ନା । ଇଂରାଜୀ ଗଳ୍ପ ପଢ଼େ ନା, ଓଡ଼ିଆ, ଇଂରାଜୀ, ବଂଗଳାର ସାହିତ୍ୟ ସମାଲୋଚନା ପଢ଼େନା । ଗଳ୍ପର ଆଧୁନିକ ରୂପ ବିଦେଶରେ କିପରି ସେ ଟବ୍ରୁର ଖବର ସେ ରଖେ ନା । ଗଳ୍ପ ବା ଉପନ୍ୟାସର ଥିଓରୀର ଅ-ଆ-କ-ଖ ତାକୁ ମାଲୁମ ନଥାଏ । ଅଥଚ ସେଥିପାଇଁ ସେ କେବେ ହେଲେ ବିବ୍ରତ ବୋଧ କରେ ନା, ନିଜକୁ କେବେ ହେଲେ ହୀନ ମନେ କରେ ନା । ସେ ନିର୍ଭିକ ମନରେ ତାର ନିଜସ୍ୱ ଜଗତରେଇ ରହିଥାଏ । ସେଣ୍ଟିମେଣ୍ଟ, ଭାବପ୍ରବଣତା ଏପରିକି ଇମୋସନ ନେଇ ଗଳ୍ପଟିଏ ଛିଡ଼ା କରିବାରେ ସେ ସିଦ୍ଧହସ୍ତ । ‘ଇମୋସନ ନ ହେଲେ ମୁଁ ବଞ୍ଚି ପାରିବି ନି, ଆଃ ସେ ଗଳ୍ପରେ ଯୁମାଲ୍ ପ୍ରଚୁର ଇମୋସନ ଗୁଡ଼େଇ ଭର୍ତ୍ତି କରିଛୁ’……ଏମିତି ହଜାରେ ଥର ସେ କହିଥିବ ।

ଦେଖ, କଲ୍ଲୋଳ, ପ୍ରେମିକାକୁ ନେଇ ଜ୍ୟୋତ୍ସ୍ନାଲୋକ ଅନେକଥର ଉପଭୋଗ କଲ, ଅଥଚ ଜ୍ୟୋତ୍ସ୍ନାକୁ ଜ୍ୟୋତ୍ସ୍ନାରୂପେ କେତେଥର ଉପଭୋଗ କଲ ସେକଥା ନିଜେ କେବେ ନିଜକୁ ପଚାରିଛ ?

ସେ ଚୁପ୍ ରହେ । ହୁଏତ ସେତେବେଳେ ତା ନିଜ ଜଗତରେ ବି ସେକେଣ୍ଡ ପାଇଁ ଟିକେ ଭୂମିକମ୍ପ ହୁଏ—ଏବଂ ଏଇ ଆନ୍ଦୋଳନ ଆଉ ଟିକିଏ ବଢ଼ି ଯାଉଥିବ—ଯେତେବେଳେ ମୋର ପରବର୍ତ୍ତୀ ତୋମାସାର୍, • 'ଦେଖ, ସେମିତିକାକୁ ନେଇ ସବୁବେଳେ ନଦୀକୂଳ, କୋଠାଘରର ଜମ୍ମା ସିନେମାର ବାଲକନୀରେ ସମସ୍ତ କଟାଇବା କଥା ଗଳ୍ପରେ ରଖିଲେ ଗଳ୍ପର ପୃଷ୍ଠ ନିଛକ ହୃଦ୍ଧ ଛବି ହୋଇଯିବ ।'

"କିନ୍ତୁ ସାର୍ ଏଘୋଟାର ସତ, ଦୁନିଆରେ ଏଇଟାର ଘଟୁଛି ଆପଣ ମନା କରି ପାରିବେ ?"

"କିନ୍ତୁ ଆହୁରି ଅନେକ କିଛି ଘଟୁଛି ତ ଏଇ ଦୁନିଆରେ, ଆହୁରି ଅନ୍ୟରକମ ସତ୍ୟ କିଛି ତ ଥାଇ ପାରେ"—ମୋର ଏଇଟା ପ୍ରଶ୍ନ ?

ତାପରେ ସେ ଚୁପ୍ ରହେ ।

ତାପରେ ଶ୍ରୀମାନ ଭରତ ପାତ୍ରର ପାଳି । ସେ ହୁଏତ ଆରମ୍ଭ କରେ,—"କହୁଛି, ତମେ ତମ ପ୍ରେମିକାମାନଙ୍କ ଛଡ଼ା ଦୁନିଆରେ ଆଉ କାହା କଥା ଲେଖିଛ ମୋତେ କହିଲ ? ଏକ ସେକେଣ୍ଡ ପର୍ଯ୍ୟନ୍ତ ? ନିଜ ମା ? ଭାଇ ? ଘରର ମୂଲିଆ ? ତା ବି କଣ ଲେଖିଛ ? କିଛି ଗୋଟେ ହୋଇଥାନ୍ତା ହୋଇ ପାରିଲା ନି - ଏଇଆ ତ ?

ସମ୍ପୂର୍ଣ୍ଣ ଅସହାୟ ମୁହୂର୍ତ୍ତରେ ନାରାୟଣ ବାବୁ ବାଧା ଦିଅନ୍ତି । "ଆଃ—ସେ ଯାହା ଲେଖୁଛି ଲେଖୁ, ତା ବଦଳରେ ତା ସମୟରେ ଯାହା ସେ ଦେଖୁଛି ତାହା ଲେଖୁଛି, ଠିକ ଲେଖୁଛି, ଆଉ ଏକଥା ସତ ଯେ ଓଡ଼ିଶାରେ ତା ବୟସର ଗଳ୍ପ ଲେଖକ ଯେତେଜଣ ଥିବେ—ସେମାନଙ୍କ ଭିତରେ ସେ ସବୁଠୁଁ ଭଲ ଲେଖୁଛି, ଆଉ ସେ ଯେ ଭଲ ଲେଖୁଛି, ଏଇଟା ଗର୍ବର କଥା ।"

ନାରାୟଣ ପଟ୍ଟନାୟକଙ୍କ କଥା ଶେଷ ହେଲାବେଳକୁ ଭରତେଇ ହୁଏତ ଏକ ତୃପ୍ତିର ନିଃଶ୍ୱାସ ମାରୁଥିବ । ଆମେ ଚାରି ଜଣ ଲେଦଲ ଜସିଂ ଏତେବେଳକୁ ପାଖ ହୋଇ ସାରିଥାଉ । ପ୍ରାୟ ତିନି ବର୍ଷ ତଳର କଥା, ଏବଂ ପ୍ରଥମଦିନର କଥା । ସେତେବେଳେ,ୟିଏ ବ୍ରୁମେଗ୍ଂ,। ଲିଶ ବୋଝେଇ, ବା କରଫିଉ ପରି ଚମତ୍କାର ଗପ ସବୁ ଲେଖିନି । ଶତ୍ରୁମାନ୍ ଏକ ସ୍ରଷ୍ଟା ବ୍ୟକ୍ତି ସେ ଆଉ କଣ ଥିଲା ?

କିନ୍ତୁ ସେଦିନ ଜୀବନରେ ପ୍ରଥମଥର ପାଇଁ ସେ ମୋତେ ବେଶ କିଛି ସମୟ ପାଇଁ ଚୁପ୍ କରାଇ ଦେଲା । ମୁଁ ତାକୁ ମନେ ମନେ ପ୍ରଶଂସା କରୁଥିଲି । ନିଜେ ଭଙ୍ଗ ଅନୁଭବ କରୁଥିଲି ।

ଛାତ୍ର ଯଦି ଗୁରୁଙ୍କୁ ପରାସ୍ତ କରେ ବା ଛାତ୍ରର ଅସମ୍ଭବ ପ୍ରତିଭା ଯଦି ଶିକ୍ଷକଙ୍କୁ ବେଳେବେଳେ ସ୍ତମ୍ଭିତ କରେ, ସେଠି ଶିକ୍ଷକର ମନରେ କି ପ୍ରକାର ଆନନ୍ଦ ଜନ୍ମେ ? ବିଶେଷଣଟିଏ ଦେବା ପାଇଁ ମୋ ନିକଟରେ ଶବ୍ଦ ନାହିଁ ।

ତେଣୁ କହୁଛି ସେଦିନ ତୃତୀୟ ଦିନଟି ମୋର ଚିରନ୍ତନ ଆନନ୍ଦ, ମୋର ତା ପ୍ରତି ନୀରବ ଅନୁଚ୍ଚାରିତ ପ୍ରଶଂସା ଓ ଆଶୀର୍ବାଦ । ଭେଲୋର ବ୍ରେନରେ ଫିଜିକାଲ ସାର୍ଜେନ୍ ଆସିଲା କିପରି ?

ସେଦିନ ଥିଲା ଜୁଲାଇ ୧୨ ତାରିଖ (ନା, ୧୧ ତାରିଖ ?) । ସନ୍ଧ୍ୟାର ଅନ୍ଧକାର ଏଇ ଓହ୍ଲେଇ ଆସୁଛି । ଷ୍ଟ୍ରିଟଲାଇଟ ବୋଧହୁଏ ଲଗି ନାହିଁ । ସେ ଇଦାନୀଂ ଯେବେ ବାଲେଶ୍ୱର ଆସେ ଏଇ ସମୟରେହିଁ ମୋ ବସାକୁ ଆସେ — ଅବଶ୍ୟ ରବିବାର ହେଲେ ସକାଳୁ । ସେ ଏ. ଜି. ରେ ଚାକିରି କଲା ଦିନଠୁଁ ପ୍ରତି ମାସ ଯେ କୌଣସି ଶନିବାର ଆସିପାରେ, ବିଶେଷତଃ ଦ୍ୱିତୀୟ ଶନିବାର ପ୍ରଥା ଚାଲୁ ହେବା ଦିନଠୁଁ ସେଇ ଦ୍ୱିତୀୟ ଶନିବାର ଦିନ ସେଇ ବେଳଟାହିଁ ତାର ଆସିବାଟା ପ୍ରତ୍ୟାଶିତ ଥାଏ । ପୃଥିବୀ ବୁଡ଼ିଗଲେ ବି ସେ ଆସିବ । ଅବଶ୍ୟ ମୋର ଲକ୍ଷେ କାମ ଥିଲେ ବି ମୁଁ ସେଇ ସମୟଟା ତା ପାଇଁ ବୁକ୍ କରି ରଖିଥାଏ । ପ୍ରତି ମାସ ଦ୍ୱିତୀୟ ଶନିବାର ରାସ୍ତାର ଆଲୁଅ ଜଳି ଉଠିବା ପୂର୍ବରୁ କେହି ମୋ କବାଟରେ ସାର୍, ସାର୍ ଡାକିବ ଓ କବାଟ ଖୋଲିବା ମାତ୍ରେ ପଚାରିବ କେମିତି ଅଛନ୍ତି ? କିଛି ଔଷଧ ପ୍ରେସକ୍ରାଇବ କରିବେ ? ହୋମିଓ ? ମୋ ଲିଭର ଟ୍ରବଲଟା ସେଇମିତି ରହିଗଲା । ତା'ପରେ ସେ ଓ ମୁଁ ନିର୍ଜନ ରାସ୍ତାରେ ପ୍ଲାଷ୍ଟିକ ଫ୍ୟାକ୍ଟ୍ରି, କମ୍ପା ମୁକ୍ତ ଆକାଶ ତଳେ ମାଇଲ ମାଇଲ ଲମ୍ବି ଯାଇଥିବା ଧାନ ଜମି ପାର ହୋଇ ଆଗେଇଚୁଁ ଛତ୍ରପୁର ଆଡ଼େ । ଆଉ ଯଦି ସାଇକେଲ ହାତରେ ଥାଏ, ଯାଉଁ ଟାଟା ଆଡେ ଯାଇଥିବା ନାସନ୍ୟାଲ ହାଇୱେକୁ ବଲଙ୍ଗ ନଈ ଯେଉଁଠି ଅତିକ୍ରମ କରୁଛି ସେଇ ପର୍ଯ୍ୟନ୍ତ ଟର୍ କରିବାକୁ । କିନ୍ତୁ ସେଦିନ ଆମେ ଗଲୁନି ସହରର ଛାତି ଦେଇ ବୁଲିବାକୁ । ତାକୁ ଟିକେ କେମିତି ଉଦ୍ବେଗ ଲାଗୁଥାଏ । ମାତ୍ର ତାର ଯେଉଁ ସ୍ୱାଭାବିକ ଉଚ୍ଛଳତା ଥାଏ ସେଇଟା ଯେମିତି ସେଦିନ ପାଇଁ ନଥିଲା, ସେଦିନ ଲକ୍ଷ୍ୟ କରିପାରି ନଥିଲି, ଆଜି ମନେ ପଡ଼ୁଛି ।

ଗେଟ୍ ପାଖରେ ସାଇକେଲ ରଖି ସେ କହିଲା, ସାର ଭଲ ଅଛନ୍ତି ? ମୁଁ ପୋର୍ଟିକୋରେ ତାକୁ ଅପେକ୍ଷା କରି ବସିଥାଏ । ଆସ, ଆଉ ସବୁ ଭଲ ? ଆଜି ଆସିବା ଡେରି ହେଲା ଯେ ? "ଏଇ ବାଳକଟା ସବ କଣ ସବୁ ବୁଝୁଛୁ ଏଠି — ଏତେ ସଉକରେ ବଢ଼େଇଛୁ — ଦୁଇଟା ଦିନ ପାଇଁ କୌଣସି ମତେ ଏସ୍କେପ୍ କରିଗଲେ ଗଲା । ସାର୍ ବାହାରନ୍ତୁ, ଗିଳିସେ ଜଳ । ହଁ — ଆପଣଙ୍କ ଗପ ଖାତାଟା ଆଣିଥାନ୍ତି ।"

'ହଠାତ୍ ଗପ ଖାତା ?'

'କହୁଚ ସ୍ୱଳନ୍ତୁ ।'

'କୁଆଡ଼େ ଯିବା ? ବର୍ଷା ଆସି ପାରେ, ପାଗ ଭଲ ନାହିଁ ।'

ସ୍ୱଳନ୍ତୁ ବ୍ରଜବାବୁଙ୍କ ପ୍ରେସ । ସେଠି ଆପଣ ଦଶଟା ଗପ ପଢ଼ିବେ । ସେଠି ସବୁ ଲୋକ ଭିଡ଼ ଥିବେ କୌଣସି ଆଲୁଅ ଯାଗା ଦେଖିବା—ସିନେମା କାଣ୍ଟିନ୍ ।

'କଥା କ'ଣ ?'

ବଲ୍ଲଭବାବୁ ଆପଣଙ୍କର ଦଶଟା ଗପ ପାଇଛନ୍ତି । ଆଉ 'ନବରବି' ବାଲା ବି ଆପଣଙ୍କ ଗପ ପାଇଛନ୍ତି, ଖବର ପାଇଲି । ଆଉ ବଲ୍ଲଭ ପଞ୍ଚନାସ୍ତିକ ସେବନ କହୁଲେ, କହ୍ନେଇ ତମେ ସେ ଗପ ଦଶଟା ପଢ଼ିଚ ? କ'ଣ ଚଳିବ ? କେମିତି ହୋଇଛି ?

ଆଚ୍ଛା, ବଲ୍ଲଭବାବୁ କ'ଣ ନିଜେ ପଢ଼ିବେ ନାହିଁ ? ନ ବାହାରିଲେ ମୋର ଦୁଃଖ ନାହିଁ । ଙ୍ଗ୍ ଟ୍ରିଟରେ ସମସ୍ତ ପାଇଥିଲି—ହଜିଗଲା ବସି ବସି ।

ନାଁ ନାଁ ବଲ୍ଲଭବାବୁ ପଢ଼ିବେ, ନିଶ୍ଚୟ ପଢ଼ିବେ । ଆଚ୍ଛା ନୂଆ କିଛି ଗପ ପଠେଇଲେ କି ?

ନୂଆ ମାନେ କଣ ? ତମ ପାଇଁ ସିନା ଏଟା ପୁରୁଣା, କାରଣ ତମେ ଆଗରୁ ପଢ଼ିଚ । ଅନ୍ୟ ସମସ୍ତଙ୍କ ପାଇଁ ତ ନୂଆ ।

ଅବଶ୍ୟ । ଆଚ୍ଛା ସାର କଉଁ ଗପଦଶଟା କହିଲେ ?

ତାପରେ ମୁଁ ଗଳ୍ପ ଦଶଟାର ମନଫୁଟିସ୍, ପ୍ରଥମ ରଚନା ବେଳର ନାମ, ବର୍ତ୍ତମାନର ଏମ୍, ଏସ୍,ରେ ଶାମାନ୍ୟ ପରିମାର୍ଜ୍ଜନ ଓ ନାମ ପରିବର୍ତ୍ତନ କଥା କହି ହାଲିଆ ବେଳକୁ କହ୍ନେଇ ଶଆନ୍ଟ କଲି—

"ସାର୍"

ବସ । ଚାହା ଖାଅ ।

ନାଁ । ଚାହା ମୁଁ ଛାଡ଼ି ଦେଇଛି । ସ୍ୱଳନ୍ତୁ, ବାହାରନ୍ତୁ ।

ଦୁଇ ଜଣଙ୍କ ହାତରେ ସାଇକେଲ ଥିବା ସତ୍ତ୍ୱେ ଚାଲି ଚାଲି ଆମେ ଆଗେଇଲୁ । ପ୍ରେସରେ ବ୍ରଜବାବୁ ନାହାନ୍ତି । କେହି ନାହାନ୍ତି । ନଟେଲା । କିଛି ସମୟ ପରେ ଅରୁଣ ଆସିଲା । ମୁଁ ଗଳ୍ପ ଦୁଇଟା ପଢ଼ି ଶେଷ କଲି । ଅରୁନ୍ଧତୀ ନକ୍ଷତ୍ରର ମାନେ କଣ ? ସେ ପଚାରିଲା । ଅରୁଣ କହିଲା ଅରୁନ୍ଧତୀ ନକ୍ଷତ୍ରଟି ସେ ଗଳ୍ପର କେନ୍ଦ୍ର ବିନ୍ଦୁ ଏବଂ ଏପିଲଗରେ ସ୍ୱପ୍ନଟା ଅପେକ୍ଷା ଗଳ୍ପ ମଝିରେ ଅରୁନ୍ଧତୀ ନକ୍ଷତ୍ର, ଖୋଲା ପଡ଼ିଆ, ଓ୍ୟାରଲେସ୍ ଟାୱାରର ବତୀ ଓ ଏ ଦୁଇ ପ୍ରୋଟାଗନିଷ୍ଟ ଏବଂ ପୋଲିସ ଫାଣ୍ଡିରେ ରାତି ଦଶ ବାଜିବାର ଘଣ୍ଟାଧ୍ୱନି ତାକୁ ବେଶୀ ଭଲ ଲାଗୁଛି । ସେମାନେ କିଛି ସମୟ ଗଳ୍ପର କେନ୍ଦ୍ର ଇମେଜ କିଏ ସେ ବିଷୟରେ ଆଲୋଚନା କଲେ । କହ୍ନେଇ ଆଉ ଗୋଟିଏ ଗଳ୍ପର ପ୍ରଥମ ଓ ଶେଷ ଅଂଶରେ ଅରୁନ୍ଧତୀ ନକ୍ଷତ୍ରର ଉତ୍‌ଥାପନ ଥିବା କଥା ମୋତେ ମନେ ପକାଇଲା । ମୁଁ ସେମାନଙ୍କ କଥାରେ ଅଂଶ ନ ନେଇ ଚୁପ୍ ଚାପ୍ ଗୋଟିଏ କଥାହିଁ ଭାବୁଥାଏ—କହ୍ନେଇ କ୍ରିଟିକ୍ ହେଲା କେବେଠୁଁ ?

ତାକୁ ଏଟା ଶୋଭା ପାଏନା । ତା ପାଇଁ ଏ ଲାଇନ ଖୁବ୍ ଶୁଭଙ୍କର ନୁହେଁ । ନା, ତୁ ତ ଲେଖକ, କ୍ରିଟିକ ହବାକୁ ବସିଲେ ତୋର କ୍ରିଏଟିଭ ଆର୍ଟିଷ୍ଟ ସତ୍ତାଟି ଆସ୍ତେ ଆସ୍ତେ ମରିଯିବ । କ୍ରିଟିକ ହବାର ସମୟ ଆସିନି । କିନ୍ତୁ ମୁଁ ଏସବୁ କହି ପାରିଲି ନି ।

ରାତି ନଅ ବେଳକୁ ଆମେମାନେ—କହ୍ନେଇ ଓ ମୁଁ, ଆସିଲୁ ପରମିଟ ପଡ଼ିଆକୁ । ବେଶ୍ ବଡ଼ ପଡ଼ିଆ ଏଟା । ଏଇ ଗ୍ରେଟ ସହର ପାଇଁ ବେଶ ବଡ଼ ପଡ଼ିଆ । ସାଇକଲ ଦିଟାରେ ଷ୍ଟାଣ୍ଡ ମାରି ଦେଇ ଚୁପଚାପ କିଛି ସମୟ ବସିବା ପରେ ମୁଁ ପ୍ରଥମେ ଆରମ୍ଭ କଲି—"ମୋର ଏଇ ଗପଟାରେ ଯେଉଁ ଆରେଞ୍ଜମେଣ୍ଟ ଦେଖିଲ—ପ୍ରଥମେ ମୁଖବନ୍ଧ, ଦ୍ୱିତୀୟରେ ପ୍ରୋଲଗ୍, ତୃତୀୟରେ ଗୋଟେ ସ୍ୱପ୍ନରେ ଗଳ୍ପଟା ଶେଷ ହେଉଛି ଏବଂ ଏପିଲଗରେ ଗୋଟେ ଭଗ୍ନ ସଙ୍ଗୀତ ଯାହା ଉଲ୍ଲେଖ କରଯାଇ ନାହିଁ—ଏପରି ଆରେଞ୍ଜମେଣ୍ଟ ଆଉ ଏଇ ପ୍ରକାର ଭାଷା ବ୍ୟବହାର ବ୍ୟତୀତ ଅନ୍ୟ କୌଣସି ପ୍ରକାରରେ ଗଳ୍ପଟା ଲେଖାଯାଇ ପାରିଥାନ୍ତା କି ?

ତା ମାନେ ଆପଣ କହୁଛନ୍ତି ମୋ ଭାଷାରେ ଯେଉଁଟା ହାରକନ୍, ସେଟା 'ଫର ଷ୍ଟାଇଲ ସେକ୍' ନୁହେଁ, ଆପଣଙ୍କ ପାଇଁ 'ଫର ଆର୍ଟ ସେକ୍' ?

ରାଇଟ୍ । ତମେ ଯେଉଁଟା ଷ୍ଟାଇଲ ବୋଲି କହୁଛ ମୋର ସେଟା ଆବଶ୍ୟକତା ସେଇ ଓ୍ୱାର୍କ ଅଫ୍ ଆର୍ଟ ପାଇଁ । କିନ୍ତୁ ତୁମକୁ ଲାଗୁଛି ସେଟା ଷ୍ଟାଇଲ, ଫେସନ୍, ହାରକନ୍ ।

ହୁଁ । ତାହେଲେ ... ... ...

ସେ କଣ କହିବାକୁ ଯାଉଥିଲେ, ମୁଁ ବାଧା ଦେଲି । ଦେଖ, ସବୁ ଗପ ଯେ ସରଳ ରେଖାରେ ଲେଖି ହେବନି ତାର କିଛି ମାନେ ନାହିଁ, ଆଉ ସବୁ ଗପ ଯେ ସରଳ ରେଖାରେ ଲେଖିଲେ ଉଠିବ ତା ବି ସତ ନୁହେଁ । ତମ ବ୍ୟାଚର ଅଧିକାଂଶ ତ ସରଳରେଖାରେ ଗପର ପ୍ଲଟକୁ ଛୁଡ଼ା କରୁଛନ୍ତି — ଟେକ୍‌ନିକ ସର୍ବସ୍ୱ ହୋଇ ବି ଠିକ୍ ଟେକ୍‌ନିକ୍ ସେଗୁଡ଼ା ନୁହେଁ ।

ତାହେଲେ ଆପଣ କହୁଛନ୍ତି ଗଳ୍ପ ଲେଖକକୁ ଖୋଜି ବାହାର କରିବାକୁ ହେବନି । କେମିତି ସଜେଇଲେ ଗଳ୍ପର ଏଫେକ୍ଟ ବଢ଼ିଯିବ ?

ହଁ । ଗଳ୍ପ ଲେଖି ଲେଖି, ସେଇ ଗଳ୍ପରୁ ହିଁ ସେ ଆବିଷ୍କାର କରିବ । ଖାଲି ସେତିକି ନୁହେଁ, ଭାଷା ମଧ୍ୟ । ଗଳ୍ପର ଗଳ୍ପାଂଶ, ମୋଟିଭ୍, ଚରିତ୍ର ଏବଂ ଘଟଣା ଏ ସମସ୍ତେ ତମଠୁ ମାଗି ନେବେ କେଉଁ ଭାଷାରେ ସେମାନେ ଗଢ଼ି ଉଠିବେ ଏବଂ କେଉଁ ଟେକ୍‌ନିକ୍‌ରେ ସଜା ହେବେ ।

ଭାଷା କଥା ପଦେ କହିଲେ, ଆପଣଙ୍କର ଏଇ ଗପର ସ୍ୱପ୍ନଟା କଥା ମନେ ପଡ଼ିଲା । ସ୍ୱପ୍ନର ଭାଷାଟାରେ ସ୍ପିଡ୍ ଅଛି । ମୋତେ ସେଇଟାଇ ଭଲ ଲାଗିଲା । ଶବ୍ଦଗୁଡ଼ାକୁ ସ୍ପିଡ୍ ଦେବା ସହଜ ନୁହେଁ ।

ମୁଁ ଫେରି ଯାଉଥିଲି ଅତୀତକୁ । ତା ସହ ମୋର ପ୍ରଥମ ସାକ୍ଷାତର ଦିନଗୁଡ଼ାକୁ । କାହିଁକି ଜାଣେନି । ସେଟା ଥିଲା ଆଜିପରି ଜୁନ ମାସର ଦ୍ୱିତୀୟ ଶନିବାର । ୧୯୭୯ ମସିହା ପାସେଞ୍ଜର ଟ୍ରେନରେ ମୁଁ କଟକ ଯାଉଥାଏଁ । ବାହାନଗା ଷ୍ଟେସନରେ ଗାଡ଼ି ପଡ଼ି ରହିଲା ପାଖ ଘଣ୍ଟାଏ । ଜୁନ ମାସର ଗରମରେ ମୁଁ ଝାଳେଇ ଯାଉଥାଏଁ । ଡବା ଭିତରେ ମଇଳା ଆଲୁଅ । ଗାଡ଼ି ନ ଚାଲିଲେ ଖରା ଜୋର ଲାଗେ । ମୁଁ ଉପର ବଙ୍କରୁ ଓହ୍ଲାଇ ଆସି ଡୋର ପାଖେ ଛିଡ଼ା ହେଲି । ପ୍ଲାଟଫର୍ମ ଉପରେ ସୁନ୍ଦର ଜହ୍ନ ଆଲୁଅ । ଗୋଟିଏ ସିମେଣ୍ଟ ବେଞ୍ଚରେ ଗୋଟେ ପେଆର ବସିଛନ୍ତି ଓ ପ୍ଲାଟଫର୍ମ ଉପରେ ଏ ମୁଣ୍ଡରୁ ସେମୁଣ୍ଡ ଅନ୍ୟ ଏକ ପେଆର ବୁଲବୁଲି କରୁଛନ୍ତି । ବେଳେ ବେଳେ ଗୋଟେ ଯୋଡ଼େ କଥା ଛିଟିକି ଆସୁଥାଏ, 'ସାର ନାଁ, ମୋତେ ବେଶ୍ ସନ୍ଦେହ କରୁଥିଲେ ଯେ' । ଏମାନେ ବୋଧହୁଏ ଏଇ ଗଲବର୍ଷ କଲେଜ ଛାଡ଼ିଛନ୍ତି । ଟୋକାଏ ସିଗାରେଟ ଲଗାଇବାକୁ ଯାଉଛୁ କୋଡ଼ିଏ ଏକୋଇଶ ବର୍ଷର ଟୋକାଟିଏ ପ୍ଲାଟ୍‌ଫର୍ମରେ ସେଇ ଫଚରଣଶୀଳ ପେଆରକୁ ଅନୁସରଣ କରିବା ଛାଡ଼ି ଦେଇ ମୋ ଡବା ପାଖରେ ରହିଗଲା ଏବଂ କିଛି ସମୟ ଇତସ୍ତତ ହେବା ପରେ ଉଠିଲା । ଆନ୍‌ଟିକ୍ ଡେସ, ଆନପେଇଡ୍, ଏଞ୍ଜିଆସ ଲୁକ,

ସେଇ କମ୍ପାର୍ଟମେଣ୍ଟରେ ତାଙ୍କୁ ମିଶାଇ ଆମେ ଏବେ ହେଲୁ ଚାରି ଜଣ । ଆର ପାଖ ବେଞ୍ଚରେ ସେ, ଏ ପାଖରେ ମୁଁ । ମୋ ଅଙ୍କରେ ଥିଲା ମାତ୍ର ତିନୋଟି ବହି—'ଏକାନ୍ତେ', 'ତାଣର ଶୋଭେନା' ଏବଂ 'ମାଟି ମଣିଷ ଉଇଥ କ୍ଷେପାତ୍ର' । ଗତ ଦଶ ବେଳରୁ କମ୍ପାର୍ଟମେଣ୍ଟର ସ୍ତିମିତାଲୋକରେ ମୁଁ 'ଏକାନ୍ତେ'ର ପୃଷ୍ଠା ଲେଉଟାଉଥିଲି । କିଛି ସମୟ ପରେ ପିଲାଟି ଓହ୍ଲେଇ ଆସିଲା ତା ବେଞ୍ଚରୁ ଏବଂ ମୋ ପାଖେ ଠିଆ ହୋଇ ରହିଲା । ବୃଷକ୍ୟ ସେନ ନାଁଟା ମୋଟା ମଲାଟ ଉପରେ ବଡ଼ ବଡ଼ ଅକ୍ଷରରେ ତାକୁ ବିବ୍ରତ କରିଛି । ମୁଁ ଇତସ୍ତତଃ ହେଲି । ଆଉ ବହିଟା ମୋଠୁଁ ମାଗି ନେଲା । ଦୁଇ ମିନିଟ୍ ପରେ । ଆପଣ ଶୁଭେନ୍ଦୁ ବାବୁ ? କବିତା ଲେଖନ୍ତି ସେଇ ଶୁଭେନ୍ଦୁ ମୋହନ ଦାସ ? ବସ୍ତୁତଃ ମୋ ନାଁ ଟା ସେହି ବହିଟିରେ ଲେଖିଥିଲି । ତାପରେ ଅଜସ୍ର ପ୍ରଶ୍ନ-ବାଣ, ଉତ୍ତରରେ କାହାକୁ କାହାକୁ ଭଲ ଲାଗେ, ବଙ୍ଗଳାରେ କିଏ ସବୁ ଆପଣଙ୍କର ପ୍ରିୟ ଲେଖକ ଓ କବି ଇତ୍ୟାଦି । ସାରା ରାତି କଟିଗଲା । ସେ କଟକ ଷ୍ଟେସନରେ ଓହ୍ଲେଇ ଗଲା । ଏଇଟା ଥିଲା ମୋର ତା ସହିତ ପ୍ରଥମ ସାକ୍ଷାତ ଓ ଆଳାପ । ମୋ ପାଇଁ ମାମୁଲି—କିଏ ଗୋଟେ ଅର୍ବାଚୀନ ଗ୍ରନ୍ଥ-ସାହିତ୍ୟିକ ହୋଇଥିବ । କିନ୍ତୁ ତା ପାଇଁ ? ସିଏ ଗୋଟେ ନୂଆ ଜଗତରେ ପ୍ରବେଶ କରୁଥିଲା—ନୂଆ ଜଗତର ଆଲୋକ ଯାହାକୁ ବିହ୍ୱଳ କରୁଥିଲା—ତା ପାଇଁ ସେ ସମୟଗୁଡ଼ାକ ଓ ମୁଁ କ'ଣ ଥିଲି ? ମୁଁ ଅବଶ୍ୟ ତାପରେ କେବେହେଲେ ତାକୁ ସେ ସବୁରେ କଥା ପଚାରି ନାହିଁ ।

ତା' ପରେ ସେଇ ବର୍ଷ, ଅର୍ଥାତ ଏଇ ଦେଖାର ଛଅ ମାସ ପରେ ହଠାତ ଦିନେ (ସେଟା ଥିଲା ଅଗଷ୍ଟ ୧୫ ତାରିଖ) ଅଧ୍ୟାପକ ଶିବ ଆଚାର୍ଯ୍ୟଙ୍କ ସହ ଦୁଇ ଜଣ କଲେଜ ଛାତ୍ର ମୋ ସହ ଦେଖା କରିବାକୁ ବସାକୁ ଆସିଲେ । ତାଙ୍କ ଭିତରେ ଜଣେ ହେଉଛି ଆମ ଭଦ୍ରେଇ । ଆସିବାର ଉଦ୍ଦେଶ୍ୟ—'କିଛି ଗୋଟେ କରନ୍ତୁ' । ଆପଣ ପୁରୁଣା ଲୋକ, ଆମକୁ ବୁଦ୍ଧି ଦିଅନ୍ତୁ । ସ୍କୁଲରୁ ପତ୍ରିକା ବାହାର କରିବା । ବାଲେଶ୍ୱରରେ ସାହିତ୍ୟିକ ଜାଗରଣ ଆଣିବା । 'ଏବଂ' ତ ବାହାରୁନାହିଁ ? 'କାବ୍ୟ' ବୋଧେ ବ୍ରଜବାବୁ ଆଉ ବାହାର କରିବେନି । ଏଟା ଥିଲା ଭଦ୍ରେଇ ସହ ମୋର ଦ୍ୱିତୀୟ ସାକ୍ଷାତ । ତା' ପରେ କ୍ରମଶଃ ସେ ପାଖେଇ ଆସିଲା । ଧୀରେ ଅତି ଧୀରେ । ମୋର ଗୋଟେ ଦୁର୍ଗୁଣ ଯେ ମୁଁ ନିଜେ କାହାର ସହ ଲାଗି ପଡ଼ି ବନ୍ଧୁତ୍ୱ କରି ପାରେ ନାହିଁ । କିନ୍ତୁ ଯଦି ଅନ୍ୟ ଜଣେ କେହି ମୋତେ ନେଇ ବନ୍ଧୁତ୍ୱ କରେଇ ନେଲା—ମୋର ବିଶେଷ ଆପତ୍ତି ନଥାଏ ଏବଂ ମୋର ଆଉ ଗୋଟେ ଦୁର୍ଗୁଣ ମୋଠାରେ ଡେଲକାର୍ଣ୍ଣିଜଙ୍କର କେତେକ ଗୁରୁତ୍ୱପୂର୍ଣ୍ଣ ନିୟମର ଓଲଟା ନିୟମ ଦେଖାଯାଏ—ଅର୍ଥାତ୍ ମୁଁ ବଡ଼ ସ୍ପଷ୍ଟବାଦୀ, ଅନେକ ସମୟରେ

କଥାବାର୍ତ୍ତା ଓ ବ୍ୟବହାରରେ ନିଷ୍ଠୁର । ମୁଁ ଯାହା ବୁଝିଛି, ଅନ୍ୟରକମ ବୁଝିବାକୁ ସହଜରେ ରାଜି ହୁଏ ନି, ଆଉ ମୋ ସହ ମିଥ୍ୟାଚାର, କୂଟନୀତି, ଛଳନା ଇତ୍ୟାଦି ଜଣେ ଘନିଷ୍ଠତାର ସୁଯୋଗ ନେଇ କରୁଛି ଦେଖିଲେ ମୁଁ ତତ୍‌କ୍ଷଣାତ୍ ଆକ୍ରମଣ କରେ ଓ ଆଘାତ କରି ପାରେ ମଧ୍ୟ । କନ୍ହେଇ ସହିତ ଘନିଷ୍ଠ ହେବାର ମୋର କୌଣସି କାରଣ ନଥିଲା । ସେ ମୋ ଆଡ଼କୁ ଆକୃଷ୍ଟ ହୋଇଥିଲା, ମୁଁ ତା ପ୍ରତି ନୁହେଁ । କେଉଁଠି କେମିତି ସାହିତ୍ୟ ସଭାରେ ମୋ ର ଗୋଟେ ଦିଟା ଗପ ଓ ଗୋଟେ ଦିଟା କବିତା ଶୁଣି ସେ ବିସ୍ମିତ ହେଲା ଏବଂ ସେ ଯେ ଆକୃଷ୍ଟ ହେଲା—ବେଶ ବୁଝି ପାରିଲି—ତା ନିଜର ସ୍ୱାର୍ଥ ଦୃଷ୍ଟିରୁ । ସେଇ, ଦୁଇ ବର୍ଷ ପ୍ରତିଦିନ ସେ ମୋର ସ୍କୁଲ ଛୁଟି ହେବା ପୂର୍ବରୁ ଗେଟ୍ ପାଖରେ ଅପେକ୍ଷା କରିଥାଏ, ମୋତେ ଘରକୁ ଫେରିବାକୁ ଦିଏ ନି । କେବଳ ସେଇଦିନ ଘରକୁ ଫେରେ ଯେଉଁଦିନ 'ଆପଣଙ୍କ ଖାତାଟା ନିଅନ୍ତୁ' ତାର କହିବାର ଥାଏ । ତା' ମାନେ, ସ୍କୁଲରୁ ଫେରନ୍ତା, ହାତ ମୁହଁ ନ ଧୋଇ, କିଛି ନ ଖାଇ, ଅଧିକାଂଶ ଦିନ, ଏ ଅଧମ, ଯାହାର ଟେରେଖା ଲଭି ଲଭି ଆସିଲାଣି, ଯିଏ ନୂଆ ଜେନେରେସନର ପିଲାଙ୍କ ପାଇଁ 'କିଏ ଜଣେ ନୂଆ ଲେଖକ,' ଯାହାକୁ ତା'ର ଅନ୍ତରଂଗ ଓ ସ୍କୁଲର ବା ପଞ୍ଚଦଶବର୍ଷର ସମସାମୟିକ କେତେ ଜଣଙ୍କ ବ୍ୟକ୍ତିଗତ ଅଡ୍ଡା କେନ୍ଦ୍ର ମନେ ରଖି ନାହାନ୍ତି—ବାହାର ଯାଏ ସହର ଗ୍ରୀଷ୍ମ ଦିନ ମାଇଲ ଦୂରର ବଲଙ୍ଗ କ୍ଲବକୁ ବା କେଉଁ ଗ୍ରାମର ସୋରିଷ କ୍ଷେତକୁ ସାହିତ୍ୟ କରିବା ପାଇଁ, ଆଁ ଜନ୍ଦି ହଠାତ୍ କେଉଁ ଲେଖକର କଞ୍ଚା ଲେଖା ଶୁଣି ବୋର୍ ହେବା ପାଇଁ ? କନ୍ହେଇ-ସହିତ ଘନିଷ୍ଠ ହେବାର ମୋର କୌଣସି କାରଣ ନଥିଲା । ସେ ନିଜେ ନିଜକୁ ଘନିଷ୍ଠ କରେଇ ନେଲା । ତାର ସହନଶୀଳତା ମୋତେ ତା ପ୍ରତି ଆକୃଷ୍ଟ କରାଇଥିଲା । ତେଲକର୍ଣ୍ଣିକ ବିରୋଧୀ ମୋର ସମସ୍ତ ଗୁଣାବଳୀ ସେ ସେ ସହି ଯାଉଥିଲା ଓ କଠିନ ବ୍ୟବହାରକୁ ହଜମ କରୁଥିଲା ସେଇଥି ପାଇଁ, ନା ତା'ର ଜନ୍ମଠାରୁ କଲେଜ ଜୀବନ ପର୍ଯ୍ୟନ୍ତ ସମସ୍ତ ଗୋପନୀୟ, ସମସ୍ତ ଘରୋଇ କାହାଣୀ ମୋତେ ଆର୍ଦ୍ର କରିଥିଲା—ସେଇଥିପାଇଁ ? ଦେଖ, ତୁମେ ସବୁ ପ୍ରକାର ଲେଖିବାକୁ ଚେଷ୍ଟା କଲେ ହବନି । ଦିନେ ତାକୁ କହିଲି, ତମ ଦ୍ୱାରା କବିତା ଆଦୌ ହବନି । ପ୍ରବନ୍ଧ କଥା ଭୁଲିଯାଅ । ରମ୍ୟ ରଚନା ପରେ ଲେଖିବ । ତମେ ଗଳ୍ପ ଚେଷ୍ଟା କରିପାର—ତମ ହାତରେ ଗଳ୍ପ ହୋଇପାରେ, ଯଦିଓ ସେତେବେଳକୁ ବି ସେ ଦଶମ ଶ୍ରେଣୀର ଛାତ୍ରଙ୍କ ପରି ଗଳ୍ପ ଲେଖୁଥାଏ । ତାପରେ ଦିନେ ବୈଷ୍ଣବବାବୁଙ୍କୁ ପଚାରିଲି ଆପଣଙ୍କ କଲେଜରେ କନ୍ହେଇ ଦାସ, ଥାର୍ଡ ଇୟରରେ ପଢ଼େ, ସେ କଣ ଲେଖାଲେଖି କରେ ? ବୈଷ୍ଣବ ବାବୁ ତତ୍‌କ୍ଷଣାତ୍ କହିଲେ ଅଶ୍ଳୀଳ—ଗୋଟେ ଫ୍ରକ ପିନ୍ଧା କିଶୋରୀ ପେଡ଼ା ଗଛରେ ଚଢ଼ିଛି, ଇଏ ତଳୁ ଅନେଇ ତା'କୁ ଦେଖୁଛି—ଏମିତି ଗୋଟେ ଦୃଶ୍ୟ କେଉଁଠି ଗୋଟେ ଦେଇଛି- ଅଶ୍ଳୀଳ ନୁହେଁ ?

ତା ପରେ କ୍ରମଶଃ ସେ କେବଳ ଗଳ୍ପ ଲେଖାରେହିଁ ମନୋନିବେଶ କରୁଥାଏ । ତା'ର B. A. ପରୀକ୍ଷା ପରେ ଆମର ଫିଲ୍ଡ ଟ୍ରିପଗୁଡାକୁ ନିକଟବର୍ତ୍ତୀ ଗୋଟାଏ ରେଲପୋଲ ତଳକୁ ସୀମାବଦ୍ଧ ରଖିଲୁ । କାରଣ ମୁଁ ପ୍ରଭାତକୁ ବେଶୀ ଦୂର ସ୍ଥାନକୁ ଯିବାକୁ ଇଚ୍ଛା କରି ନାହିଁ । ଆମ କଥାବାର୍ତ୍ତାର ମୁଖ୍ୟ ବିଷୟବସ୍ତୁ (୧) ତା'ର ପରିବାରର କରୁଣ କାହାଣୀ, ପରିବାର ଚଳାଇବାର ଗୁରୁ ସମସ୍ୟା ଓ ତହିଁରେ ତା'ର ଭୂମିକା । (୨) ତା'ର କଲିକତା ଶଶିଭୂଷଣ ଦେ ଷ୍ଟ୍ରିଟରେ ବାଲ୍ୟ ଜୀବନ ବା ବାରିପଦାର ସ୍କୁଲ ଜୀବନ । (୩) ଏଠି ତା'ର ସାହିତ୍ୟିକ ସମସ୍ୟା, ଉଦର ସମସ୍ୟା, ଗୃହର ସମସ୍ୟା, ରହିବା ସମସ୍ୟା । ଆଉ ଏ ସମସ୍ତ ସମସ୍ୟା ବାଦେ ପୁଣି ଅଛି ପ୍ରେମିକାମାନଙ୍କୁ ନେଇ ଅଜସ୍ର ସମସ୍ୟା—ଯାହା ପ୍ରଭାତର ବଢ଼ି ଉଠୁଥାଏ —ଯେଉଁଥିପାଇଁ ସେ ପ୍ରଭାତ ଯେ କେବଳ ଅତି ଅସୁନ୍ଦର ପରିସ୍ଥିତିରେ ପଡ଼ୁଥାଏ ସେତିକି ନୁହେଁ, ତା ଛଡ଼ା ଅଯଥା ଅନେକ ସମୟରେ ତା'ର ଜୀବନ ମଧ୍ୟ ବିପଦାପନ୍ନ ହେଉଥାଏ । 'ଏ ଛୁରୀ ମାଡ଼, ଚେନ୍ ଓ ସାଇକେଲ ଆକ୍ସିଡେଣ୍ଟର ଧମକ ଓ ଗପ୍ପ ଭିତରେ ନରହି ବରଂ ତମେ ଆସ, ଏ ସାହିତ୍ୟକୁ ଚଳାଅ' । ବସାଟିଏ ମୁଁ ଖୋଜି ଦେବି ।' ନା ସାର୍—ଆପଣ ବ୍ୟସ୍ତ ହୁଅନ୍ତୁନି । ଆପଣ ଦେଖିବେ ମୋର କିଛି ହବନି ।' ସିଧାସଳଖ କହିଲା । 'କିନ୍ତୁ ସେ ସବୁ ଯାହା ହେଉ ମୋ ଲେଖା ତ କୁଆଡ଼େ ବାହାରୁନି, ଯେତେ ଯୁଆଡ଼େ ପଠାଇଲେ ବି, କ'ଣ କରିବା ?' ଏଇଟା ହେଉଛି ସେଇ ସମୟ ଯେତେବେଳେ ମୁଁ 'ମିନିବୁକ୍' ବାହାର କରିବା ପାଇଁ ପ୍ରସ୍ତୁତ ହେଉଥାଏଁ । ଅବଶେଷରେ ମୋ ସମ୍ପାଦନା ଓ ପରିଚାଳନାରେ ''ମିନିବୁକ୍' ବାହାରିଲା.....ଏବଂ କଣ୍ଢେଇ ଥିଲା ମୋର ସହକାରୀ । ବାଲେଶ୍ୱର ବାହାର କଥା ଛାଡ଼, ବାଲେଶ୍ୱରରେ ବି ବ୍ରଜବାବୁ ଚନ୍ଦ୍ରବାବୁ ଓ ଚଣ୍ଡିବାବୁ ଇତ୍ୟାଦି ତାଙ୍କୁ ସେତେବେଳକୁ ଚିହ୍ନି ନାହାନ୍ତି—ଇଏ କଣ୍ଢେଇ ଦାସ କିଏ ? କେବଳ କୁନ୍ତଳକୁ ଛାଡ଼ି ଏଠିକା ଲେଖକମାନେ ଏଇମିତି କିଛି ପ୍ରଶ୍ନ ମୋତେ କେତେଥର ପଚାରି ଥିବେ । ତା' ପରେ ଗୋଟାଏ ଗୋଟାଏ ଘଟଣା—ମୋ ଦୃଷ୍ଟିରେ ଜଣେ ଲେଖକ ପାଇଁ ଅନାବଶ୍ୟକ ହୋଇପାରେ—କିନ୍ତୁ ତାପାଇଁ ଯଥେଷ୍ଟ ଅପରିହାର୍ଯ୍ୟ ଥିଲା—ହଁ ତାର ଭବିଷ୍ୟତପାଇଁ—ଲେଖା ପ୍ରକାଶପାଇଁ ଓ ଲେଖକ ହେବାପାଇଁ । ପୂର୍ବାଞ୍ଚଳ ଲେଖକ ସମ୍ମିଳନୀ, ବାରିପଦା ଓ ଜୟପୁର ଅଧିବେଶନ (ଓ. ଯୁ. ସ)—ଏ ସବୁ ତାର ଲୋକ ସମ୍ପର୍କର ପରିଧି ପ୍ରସାରିତ କରିଥିଲା ନିଶ୍ଚୟ । ଅଥଚ ସେଇ ସାଥେ—ମୋ ଠାରୁ ସେ ଆହୁରି ଦୂରେଇ ଯାଇଥିଲା—ମାନେ ପୂର୍ବ ବର୍ଷମାନଙ୍କ ତୁଳନାରେ । ଡିଗ୍ରୀ ନେଇ ସାରିବା ପରେ ପୁରୁଣା ଶିକ୍ଷକଙ୍କ ସାଥେ ଯେତିକି ସମ୍ପର୍କ ରହେ ସେତିକି ମାତ୍ର ଥିଲା । ବେଳେ ବେଳେ ହୁଏ ତ ରିଫ୍ରେସ ହେବା ପାଇଁ ମୋତେ ନେଇ ବସେ—ନ ହେଲେ ନାହିଁ । ଏଇ ସମୟରେ ସେ ଖୁବ୍ ଲେଖୁଛି—ଓ ଲେଖା ତାର ଖୁବ୍ ପ୍ରକାଶ ପାଉଛି—ମୁଁ ସବୁଲେଖା ପଢ଼ିପାରୁନି, କେବେ କେମିତି ଗୋଟେ ଅଧେ ବା ସେ ପଢ଼ାଇ ଶୁଣାଇଲେ ହେଲା ଓ ମୋର

ଜଗତର ତାକୁ ସମସ୍ତ ସମୟରେ ଦୁଃଖ ଦେଉଛୁ— । କାରଣ ? କାରଣ—ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ ଓ ଅନ୍ୟ କାରଣ ତଥାକଥିତ ସୃଜନ ଟେକନିକ୍ । ବୋଧହୁଏ ମୁଁ ଏକ ଭାଷାରେ ଅନେକଥର ତାକୁ ନମସ୍କାର କରିଥିବ : ଦେଖ, ତମ ହାତ ଖୁବ୍ ଭଲ, ଯଦିଓ ବଙ୍ଗ ଗ୍ରନ୍ଥାଗାରର ଲକ୍ଷ୍ମୀ ଆସନ ନେବାକୁ ହବା ଉଚିତ୍ । ସେ ସବୁ ପରେ ଠିକ୍ ସମୟରେ ଦେବ । କିନ୍ତୁ ମୁଁ ଶୀର୍ଷେନ୍ଦୁଙ୍କୁ ନପଢି ତମକୁ କାହିଁକି ପଢିବି ? ଗୋଟେ କଥା—କହେଇ, ତମ ନାୟକ ଶୀର୍ଷେନ୍ଦୁର ନାୟକ ନୁହେଁ, ଅଥଚ ତମ ନାୟକ ଶୀର୍ଷେନ୍ଦୁର ନାୟକ ପରି ବ୍ୟବହାର ଦେଖାଇଲେ ମୋତେ ଖାପଛଡ଼ା ଲାଗିବ ନାହିଁ କି ? ଶୀର୍ଷେନ୍ଦୁର ନାୟକର ଗୌରବ ତମ ନାୟକ ପାଖରେ କାହିଁ ? ତାଙ୍କ ନାୟକ ସମସ୍ତ ସମୟରେ ଘଟଣାକୁ ନିୟନ୍ତ୍ରଣ କରେ, ଦୁର୍ଘଟଣାର ଚେହେରାକୁ ଡରି ମାଡ଼ି ଅତିକ୍ରମ କରି ପାରେ କିନ୍ତୁ ତମ ନାୟକ ଘଟଣାର ଦାସ, ଟିକେ ବେଶୀ ଅନ୍ତର୍ମୁଖୀ, ରୋମାଣ୍ଟିକ ଓ ଅଧା ପ୍ଲାଟୋନିକ୍ । ଓକିଲ ଯନ୍ତ୍ରର କଳବନ୍ଧା ବା କମ୍ପଟାଣ ସିନ୍ଦାଲର ଜଳ ଆନେଲନ, ଆଦ ଦୋକାନ ଆବସିରେ ନଜର ଶ୍ରମିକ ନେତୃତ୍ୱର ହିଂସ—ଏ ମନ୍ ଅତଏବ ତାର ନାୟକ ମାଡ଼ି ଜନ୍ମ ଏବଂ ସେଇ ପ୍ରଶ୍ନର ସମାଧାନ ତମ ନାୟକର ଗାଲ୍ଗଂର, ହିଂସା ଓ ପରିବେଶ ସହ ଠିକ୍ ଭାବେ ଖାପ୍ ଖାଏ କି ? ଅତେବ ତମକୁ ପରାମର୍ଶ । ଆଉ ବଙ୍ଗାଳି ଲେଖକ ମାନେ ଅନେ ପ୍ରଲୋଭିତ କଲେ—ସେମାନଙ୍କ କବଳରୁ ମୁକ୍ତ ପାଇବା କଠିନ । ସେଥିପାଇଁ ତମ ପାଖରେ କିଛି କରେକ୍ଟିଭ୍ ବା ଆଣ୍ଟିଡୋଟ୍ ରହିବା ଉଚିତ୍ । ଭାଟ୍ଟା ପଢ଼ନ୍ତି ନାହିଁକି ? ଫକୀରର ? ଏତେଦିନର ମାଳମୁଣ୍ଡ ? ପୁରୁଣା ଲୋକ ହେଲେ କି ଅସୁବିଧା ହୁଆନ୍ତା ? କିଛି ନ ପଢିଲେ ବି ଦୁଃଖ ନାହିଁ—ଯଦି ମାସକୁ ଥରେ ଫକୀରମୋହନ ପଢି ପାର । କ'ଣ ? ନିଜକୁ ପରୀକ୍ଷା କରିବ କେମିତି ? ଭଲ ଲେଖୁଛ ନା ଖରାପ ଲେଖୁଛ ? ଅଚ୍ଛା ଯାହା ଦେଖୁଛ ତା ଲେଖିବ କି ନାହିଁକି ? ସିଧାସଳଖ ନିଜକୁ ଆତ୍ମପ୍ରତାରଣା କଲେ କ୍ଷତି କଣ ? ବୋଧ ହୁଏ କେବଳ ମୋର ଶେଷ କଥା ଉପଦେଶ ସେ ମନେ ରଖି ପାରିଲା - ତେଣୁ ତାର ପାଣ୍ଡୁଲିପିରୁ ଲେଖିଥିବା ଚିଠି ମୁଁ ଆଜି ବି ମନେ ରଖିଛି—

ସାର,

ଯା ଭାବୁଥିଲ ଏଠାରେ ତା ନାହିଁ । ମୁଁ ଯେଉଁ ଅଫିସରେ କାମ କରୁଛି ସେଟା ୪୧ ବର୍ଗ ମାଇଲର ଗୋଟେ walled area. ବଡ଼ ବଡ଼ ପାହାଡ଼ ଜଙ୍ଗଲ କେଟେଗୋଟିକ ମାଡି ୩, ୪ ମାଇଲ ଭିତରେ ଗୋଟିଏ ଗୋଟିଏ କ୍ୱାର୍ଟର ଆଉ ଅଫିସ । ଭୀଷଣ restriction. ବାହାରକୁ ବାହାରିବା ନିଷେଧ । ତେଣୁ ମୁଁ ସବୁବେଳେ ଶ୍ୱାପଦଙ୍କ ଭୋଜି ଯାଉଛି ଅଫିସର

ସମସ୍ତେ ପ୍ରାୟ ବହାର ଅଉ U. P.ର ଲୋକ । ଯେଉଁ ମେସରେ ଅଛୁ ସେଟା ପ୍ରାୟ ଜଙ୍ଗଲ ଭିତରେ । ବର୍ତ୍ତମାନ ଏଠାରୁ 70 k.m. ଓ କଲିକତା ପ୍ରାୟ 200 k.m. ? ତେଣୁ ସମିଷ୍ଟ ଜଗତ, ସାହିତ୍ୟ ଜଗତ ଠାରୁ ସମ୍ପୂର୍ଣ୍ଣ ଯୋଗାଯୋଗ ବିଚ୍ଛିନ୍ନ । ସମିଷ୍ଟ ତ ଏଠାରେ ନାହିଁ କଥାବାର୍ତ୍ତା କରିବା ପାଇଁ । ମୁଁ ଏଠି ଅଦୌ ଚଳି ପାରୁ ନାହିଁ । ମୁଁ ଦୁଃସ୍ୱପ୍ନରେ ବି ଏମିତି ଜୀବନ କଥା ଭାବି ନଥିଲି । ତେଣୁ ସୁଇସାଇଡ ଟେଣ୍ଡେନ୍‌ସି ବଢ଼ୁଛି ଭୀଷଣ ଭାବେ । ପଢ଼ାପଢ଼ି କରିବାକୁ ବି ସମୟ ନାହିଁ । ଅଫିସ ଆଠଟାରୁ ସାଢ଼େ ପାଞ୍ଚଟା ପର୍ଯ୍ୟନ୍ତ । ରାତି ୯ ଟାରେ ଆଲୁଅ ଲିଭିଗଲାକୁ ବାଧ୍ୟ । A. G. ରୁ କିଛି ଖବର ଜାଣି ପାରୁ ନାହିଁ । କଟକ 'ଗ୍ରନ୍ଥସାଥୀ' ପାଖକୁ କିଛି ଲେଖି ପାରି ନାହିଁ । ଲେଖିବ ବୋଲି ଭାବୁଛି । ଏଠାରେ ଭୀଷଣ ନଷ୍ଟାଲଜିଆ ମୋତେ ଧ୍ୱଂସ କରି ଦେଉଛି । ଆଶା, ମୁଁ ଆଉ ଏ ଜୀବନରେ ଲେଖା ଲେଖି କରି ପାରିବ ନାହିଁ, ଏବଂ କ୍ରମେ ମୂକ ହୋଇଯିବି । ଅବଶ୍ୟ ଏସବୁ ମୋର ଦୁର୍ଭାଗ୍ୟ ଛଡ଼ା ଆଉ କିଛି ନୁହେଁ । ରାତିରେ ନିଦ ଆସୁନି । ମଶା ଭୀଷଣ । ପୁଣି ସବୁ ଭାଲୁ ମୁହଁ ଆସି ଆଗରେ ଚିତ୍କାର କରୁଛନ୍ତି । ତେଣୁ ମୁଁ ଭୀଷଣ ଭାବେ ମୃତ୍ୟୁ ପ୍ରେମରେ ପଡ଼ି ଆସୁଛି । ଆଉ ନିଜକୁ ମେନେଜ କରି ପାରୁନି । ପରେ ବଡ଼ କରି ଚିଠି ଲେଖିବି । ଆପଣଙ୍କ ଠାରୁ ଚିଠି ଗୋଟେ ଆଶା କରୁଛି । B.B.S.R. ଯାଇଥିଲେ କି ନା ଲେଖିବେ—ଇତି କମ୍ଳେଶ ···

ରାତି ପ୍ରାୟ ଏଗାର ହବାକୁ ଚଳିଲାଣି । ସହର କ୍ରମଶଃ ନିର୍ଜନ ହବାକୁ ବସିଛି—ଏବଂ ଏ ମଫସଲ ଟିକେ ବେଶୀ ନିର୍ଜନ ଲାଗୁଛି । ଦୁଇ ଜଣ ଲୋକ ଗୋଟାଏ କଲେଜ ଗାର୍ଲକୁ ଧରି ଅନ୍ଧାର ଧାଡ଼ିଆରେ ଉତ୍ତର ପ୍ରାନ୍ତ ପାଚେରି ଆଡ଼କୁ ଗଲେ । ମୁଁ ଅଗତ୍ୟା ରୁମ୍‌କୁ ଫେରି ଆସିଲି । ବଡ଼ ଗ୍ଲାନିରୁ ଆସିବାକୁ ବାହାରିଲି । ଚନ୍ଦ୍ରେଶ କହିଲା ଆଉ ପାଞ୍ଚ ମିନିଟ ବସନ୍ତୁ । ଆଚ୍ଛା ସାର୍‌ ସ୍କ୍ରିପ୍‌ଟ କଥା ତ ଗଲା, ଆମ ଓଡ଼ିଆ ଗଳ୍ପ ମାନଙ୍କରେ ଡାଇଲଗ ବା ସଂଳାପର ଅଂଶ ଏତେ କମ ଦେଖିବାକୁ ମିଳେ, କାହିଁକି ? ମୁଁ କହିଲି ବିଭୂତିବାବୁଙ୍କ ଉପନ୍ୟାସ ଓ ଗଳ୍ପରେ ଅବଶ୍ୟ ମିଳେ । ତମ ଗଳ୍ପ ଗୁଡ଼ାକ ପ୍ରାୟ ବର୍ଣ୍ଣନାପ୍ରଧାନ । ସେ କହିଲା କଥୋପକଥନ ଦେଇ ପାରିଲେ ଅବଶ୍ୟ ଗଳ୍ପ ଜମେ, କିନ୍ତୁ କେତେ ପରିମାଣ ବର୍ଣ୍ଣନା ଧର୍ମୀତା ଓ କେତେ ପରିମାଣ କଥୋପକଥନ ଦେବ ଜାଣିବ କିପରି ? ମୁଁ କହିଲି—ମୁଁ ଭାବୁଛି ସେଟା ତୁମକୁ ଟ୍ରାଏଲ ଏଣ୍ଡ ଏରର ଉପାୟରେ ସ୍ଥିର କରିବାକୁ ହବ । ଦେଖ, ସଂଳାପର ପରିମାଣ ମାତ୍ରାଧିକ ହେଲେ ସେଟା ନାଟକ ଆଡ଼କୁ ଚଳେଇ ଯିବ ଓ ବର୍ଣ୍ଣନାର ପରିମାଣ ସେଇଠାରୁ ବେଶୀ ହୋଇ ଗଲେ ପାଠକ ବୋର ହବ । ଫକୀରମୋହନଙ୍କ ହାତରେ ଅନେକ ଅସ୍ତ୍ର ଥିଲା—ଅଟ୍ଟ, ବ୍ୟଙ୍ଗ, ଚମତ୍କାର ଚରିତ୍ର, ପାତ୍ରମୁଖୀ ସଂଳାପ, ଆଉ ଥିଲା ତାଙ୍କ ନିଜସ୍ୱ ସଂଳାପ । ତମ ହାତରେ ମାତ୍ର ଗୋଟେ ଅସ୍ତ୍ର : ସେଟା ହେଲା ଟ୍ରାଜିକ୍‌ । — ସାର ଏଥର ଉଠନ୍ତୁ ।

ରାତ୍ରୀରେ କର୍ଣ୍ଣେଲ କହିଲେ—ସାର ମୋତେ ଜଣେ ତାନ୍ତ୍ରିକ ଚ୍ୟାଲେଞ୍ଜ ଦେଇଛି ପନ୍ଦର ଦିନ ଭିତରେ ମାରିଦେବ ।

— ବାଜେ ଚିନ୍ତା କରିବନି । ଏମିତି କିଏ ଦୁନିଆରେ ଅଛି ଯିଏ ଚ୍ୟାଲେଞ୍ଜ ଦେଇ ପନ୍ଦର ଦିନ ଭିତରେ ମଣିଷ ମାରି ଦେବ ? କିଛି ଅସୁବିଧା ହେଲେ ମୋତେ ଲେଖିବ ।

ନାଁ, ନାଁ ମୁଁ କିଛି ଭାବୁନି ଯେ, ଏମିତି କହୁଥିଲି । ଅଚ୍ଛା ସାର ଚାଲିଲି, କାଲି ସକାଳୁ ଆପଣଙ୍କ ବସାକୁ ଆସିବି ।

ତା ପର ଦିନ ସକାଳୁ ସକାଳୁ ସେ ଆସିଥିଲା ଏବଂ ଦିନ ବାରଟା ବେଳେ ମୋ ବସାରୁ ସେ ଗଲା । ମୃତ୍ୟୁର କୌଣସି ଚିହ୍ନ ନଥିଲା ତାର ଆଖି ବା କପାଳରେ । ନାଁ—କୌଣସି ଚିହ୍ନ ନଥିଲା ।

କର୍ଣ୍ଣେଲ ମରିଗଲା ? ମୋର ବିଶ୍ୱାସ ହେଉନି । ଅଜବ ।

ତା'ର ମୃତ୍ୟୁ ସମ୍ବାଦ ଶୁଣିବା ଦିନଠୁଁ ମୁଁ ଶାନ୍ତି କରି ପାରୁନି ଠିକ୍ ଭାବେ । ଜାଣେ ଏ ଅସ୍ୱାଭାବିକତା ସବୁ ଦିନେ ରହିବ ନି—କିନ୍ତୁ ସବୁ ଦିନ ପାଇଁ ମୁଁ ପ୍ରତି ମାସର ଦ୍ୱିତୀୟ ଶନିବାର ସନ୍ଧ୍ୟା ୭ଟା ବେଳେ ଜଣକର ଡାକ ଆଉ ଶୁଣିବିନି । ସକାଳ ଆଲୁଅ ଜନ୍ମ ଉଠିବା ପୂର୍ବରୁ ଜଣେ ମୋ କବାଟରେ ବାରି ବାର ଡାକ ମାରିବ—ଆଉ ଲକ୍ଷେ କାମ ପଛେଇ ଦେଇ ମୁଁ ସେଇ ସମ୍ପୃକ୍ତି ପାଇଁ ଚିନ୍ତି ବସିଥିବି—ଏ ଘଟଣା ଆଉ ମୋ ଜୀବନରେ ଘଟିବନି ।



# ମୁଁ ତାକୁ ଈର୍ଷା କରେ

• ନାରାୟଣ ପ୍ରସାଦ ପଟ୍ଟନାୟକ

ମୁଁ ତାକୁ ଈର୍ଷା କରୁଥିଲି, ଏବଂ ତାର ଉତ୍ତରୋତ୍ତର ଉନ୍ନତି କାମନା କରୁଥିଲି । ସେଇ ଈର୍ଷା ପାଇଁ ବୋଧହୁଏ ଗତ ପାଞ୍ଚବର୍ଷ ଭିତରେ ଯେତେବେଳେ କୌଣସି ପତ୍ରିକାର ଲେଖକ ସୂଚୀରେ 'କହ୍ନେଇଲାଲ ଦାସ' ନାମଟି ପାଇଛି ପ୍ରଥମେ ତା' ଲେଖା ହିଁ ପଢ଼ିଛି । ଥରେ ପଢ଼ି ନ ଥିଲି । ସେତେବେଳକୁ ତା' ପ୍ରତି ମୋ ମନରେ ଭକ୍ତି ଆସି ଯାଇଥିଲା । ଯେଉଁ କହ୍ନେଇ 'ତାଙ୍କ ଠିକଣା' ଭଳି ମର୍ମସ୍ପର୍ଶୀ, କଳାତ୍ମକ କଥା ଲେଖିପାରେ, ବଙ୍ଗୀୟ ସାହିତ୍ୟର ଶୀର୍ଷେନ୍ଦୁ ଭଳି ଜୀବନଧର୍ମୀ ଅଥଚ ସରସ କଥା-ସାହିତ୍ୟ ସୃଷ୍ଟି କରି ପାରେ, 'ଅନ୍ଧକାର ବୃତ୍ତ' ଭିତରେ ଜୀବନ ଓ ମୃତ୍ୟୁର ଦିଗ୍‌ବଳୟକୁ ସ୍ପର୍ଶ କରି ପାରେ, ସେ କାହିଁକି ତଥାକଥିତ ଆଧୁନିକତା ନାମରେ ସେଇଭଳି ନିଷ୍ପ୍ରାଣ ଟେକ୍‌ନିକ୍ ସର୍ବସ୍ୱ କାହାଣୀ ଲେଖିବ ଯାହାକୁ ଆମେ ଲଘୁ ପରିହାସ ଛଳରେ 'ହାରକିନ୍ ସାହିତ୍ୟ' ବୋଲି କହିବୁ ? ମୁଁ ଠିକ୍ ଏଇ ପ୍ରଶ୍ନ ଉତ୍‌ଥାପନ କରୁଥିଲି, ସେ ହଠାତ୍ ପଚାରିଲା 'ବନ୍ଧରେ' ମୋର ଯେଉଁ ଗଳ୍ପ ପ୍ରକାଶିତ ହୋଇଛି ତା' ସଂପର୍କରେ ଆପଣଙ୍କର ମତ କଣ ? ମୁଁ ଭାବିଲି ସେ ବୋଧହୁଏ ମୋ ପ୍ରଶ୍ନଟି ଏଡ଼ାଇ ଦେବା ପାଇଁ ଚାହୁଁଛି ।

କିନ୍ତୁ, ମୁଁ ସେଇ ଗପଟି ପଢ଼ି ନ ଥିଲି । ସେଇ ସଂକଳନରେ ମୋର ବି ଗୋଟିଏ ଲେଖା ପ୍ରକାଶିତ ହୋଇଥିଲା, ସଂକଳନଟି ମୋ ପାଖରେ ଥିଲା, ଅଥଚ ମୁଁ ଅଳ୍ପ କେତୋଟି ପୃଷ୍ଠା ଓଲଟାଇ ତା' ଲେଖାଟି ପଢ଼ିବା ପାଇଁ ଆଗ୍ରହୀ ହେଲିନି । କେବଳ ସେତିକି ନୁହେଁ, ଯେଉଁ ବିଶୁଶ୍ରୀ ପ୍ରେସରେ ତାହା ଛପା ହେଉଥିଲା, ସେଇଠି ମୁଁ ସନ୍ଧ୍ୟା ସମୟରେ ବସେଁ, 'ବନ୍ଧ' ପାଇଁ ସଂଗୃହୀତ ହୋଇଥିବା ଲେଖା ସବୁର ପାଣ୍ଡୁଲିପି ଟେବୁଲ ଉପରେ ରଖା ହୋଇଥିବା ଦେଖେଁ—କହ୍ନେଇର ଗପବି ସେଇ ଭିତରେ ଥିଲା,—ମୁଁ ତାକୁ ହାତରେ ଧରିଲି, ଦେଖିଲି କିନ୍ତୁ ନ ପଢ଼ି ରଖି ଦେଲି । ଭାବିଲି ବୋର୍ ଲାଗିବ । କିଛି ଦିନ ପରେ 'ବନ୍ଧ'ର ଏକ ସଂକ୍ଷିପ୍ତ ସମାଲୋଚନା ପଢ଼ିଥିଲି ଯେଉଁଥିରେ କହ୍ନେଇର ଗପକୁ ହିଁ ବେଶୀ ପ୍ରଶଂସା କରା ହୋଇଛି ।

ମନଭିତରେ ଅପମାନ ବୋଧ କଲି । ଯେଉଁ ଗଳ୍ପଟିକୁ ମୁଁ ପଢ଼ିବା ପାଇଁ ବି ଇଚ୍ଛା କଲିନି ସେଇଟା ପ୍ରଶଂସିତ ହେଲା ଅଥଚ ମୋର ଯେଉଁ ଲେଖାଟିକୁ ଅନ୍ୟମାନେ ପ୍ରଶଂସା କରୁଥିଲେ ଏଇ ସମାଲୋଚନାରେ ତାହା ଗୌଣ ହୋଇଗଲା ! ମୋ ମନୋଭାବ କାହାକୁ ନ ଜଣାଇ ସେଇ 'ବନ୍ଧ୍ୟ'ରୁ କହ୍ନେଇର 'ବ୍ଲମେଟ୍ରିଂ' ପଢ଼ିଲି । ପଢ଼ିସାରି ମୁଁ ଆଉ ସ୍ଥିର ହୋଇ ରହିପାରିଲି ନାହିଁ । ସଙ୍ଗେ ସଙ୍ଗେ ଯାଇ ବ୍ରଜନାଥ ରଥଙ୍କ ନିକଟରେ ପହଞ୍ଚି ତାଙ୍କୁ ପ୍ରଶ୍ନ କଲି, ସେ ଏଇ ଗଳ୍ପଟି ପଢ଼ିଛନ୍ତି କି ନାହିଁ ? ସେ ପ୍ରୁଫ୍ ସଂଶୋଧନ କରିଥିଲେ କିନ୍ତୁ ପାଠକ ଭାବେ ପଢ଼ି ନଥିଲେ । ମୋ ଅନୁରୋଧରେ ସେ ସେଇକ୍ଷଣି ପଢ଼ିଲେ । ଆମେ ଦୁହେଁ ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ପରସ୍ପରକୁ ଚାହିଁ ସେଇ ଲେଖାଟିର ପ୍ରଶଂସା କଲୁଁ । କହ୍ନେଇ ସଂପର୍କରେ ଆମ ମନରେ ଯେଉଁ ସାମାନ୍ୟ ନିରାଶା ଆସି ଯାଇଥିଲା, ତାହା ସଙ୍ଗେ ସଙ୍ଗେ ଦୂର ହୋଇଗଲା । ଗଳ୍ପଟିରେ କାବ୍ୟ ସୁଲଭ ଆବେଗ ଭରି ରହିଛି ଅଥଚ କାବ୍ୟର କୌଣସି ଜଞ୍ଜାଳ ନାହିଁ । ଚମତ୍କାର ଟେକ୍‌ନିକ୍, ଅଥଚ ଲେଖାଟି ଟେକ୍‌ନିକ୍ ସର୍ବସ୍ୱ ନୁହେଁ । ଭଲ ପାଇବାଟା ଏତେ ଚମତ୍କାର ଭାବେ ପ୍ରତିଧ୍ୱନିତ ହୋଇଛି ଯେ କେହି ରସଗ୍ରାହୀ ଥରେ ସେଇ ଗଳ୍ପଟି ପଢ଼ିବ, ପୁଣି ପୁଣି ସେଇ ପ୍ରତିଧ୍ୱନି ଶୁଣିବା ପାଇଁ ଇଚ୍ଛା କରିବ । ଏଭଳି ଯେ ଲେଖିପାରେ ତା' ପ୍ରତି ମୋ ମନରେ ଈର୍ଷା ନ ଜନ୍ମିବ କେମିତି !

ସେ ଏତେ ଶୀଘ୍ର ତା' ଜୀବନରେ ସମାପ୍ତିର ଗାର ଟାଣିଦେଲା; ତାର ସାହିତ୍ୟିକ ଜୀବନକୁ ବିଭିନ୍ନ ପର୍ଯ୍ୟାୟରେ ବିଭକ୍ତ କରି ଆଲୋଚନା କରିବାର ସୁଯୋଗ ସମାଲୋଚକମାନଙ୍କୁ ଆଉ ଦେଲା ନାହିଁ । ତାର ଲେଖାସବୁ ମାସିକ ପତ୍ରିକାମାନଙ୍କରେ ପ୍ରକାଶ ପାଇଲା କଲେଜରେ ପଢ଼ିବା ସମୟରୁ । ସେଇ ସମୟରେ ସେ ମୁଖ୍ୟତଃ ଯୌନ ଚେତନାକୁ ଅବଲମ୍ବନ କରି ଗଳ୍ପ ଲେଖୁଥିଲା । ହୁଏତ ବୟସର ତାରୁଣ୍ୟ ଦୃଷ୍ଟିରୁ, ହୁଏତ ଆର୍ଥିକ ଦୈନ୍ୟ ଏବଂ ପାରିବାରିକ ଦୁର୍ଦ୍ଦଶାରୁ ମନକୁ ଭୁଲାଇ ରଖିବା ପାଇଁ ଏଇ ମନଭୁଲାଣିଆ ରଙ୍ଗ ଆଡ଼କୁ ସେ ଚାହିଁ ରହିଥିଲା । କିନ୍ତୁ ଏଥିରେ ତାର ପ୍ରକୃତ ଆତ୍ମାର ଅଭିବ୍ୟକ୍ତି ନଥିଲା । ତାର ହୃଦୟ ଭିତରେ ଲୁଚି ରହିଥିଲା ଅନେକ କାରୁଣ୍ୟ, ଅନେକ ଅଭିମାନ ଯାହା ସେ ମୁହଁ ଖୋଲି କାହାରି ଆଗରେ ପ୍ରକାଶ କରି ପାରୁ ନ ଥିଲା । ବାପା ତାର ଖୁବ୍ ଶୀଘ୍ର ସଂସାରରୁ ଚାଲିଗଲେ, ସଂସାରର ବୋଝ କହ୍ନେଇ ମୁଣ୍ଡରେ ଥୋଇ ଦେଇ । ବଂଶୀର କହ୍ନେଇ ଓଠରେ ତାର ବଂଶୀ, ମନ ଯମୁନା କୂଳରେ, ପାଦ ଦୁଇଟି ସବୁବେଳେ ଚଞ୍ଚଳ, ଅଥଚ ତାକୁ ସଂସାରର ଗିରି ଗୋବର୍ଦ୍ଧନ ବହିବାକୁ ପଡ଼ିଲା ।

କହ୍ଲେଇ ଆମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା ଏବଂ ଆମ୍ଭମାନଙ୍କ ଦୃଷ୍ଟିରେ ଏକ ସମ୍ମାନିତ ଆସନ ଅଧିକାର କଲା "ତାଙ୍କ ଠିକଣା" ଲେଖା । ସେହି ଲେଖାରେ ତା' ପ୍ରାଣର ଅନେକ ଆବେଗକୁ ଅଜାଡ଼ି ଦେଇ ଏକ ସରସ ମୃଦଳ ବାଜିଲେ । ସେଇ ସମୟରେ ତାର ବ୍ୟକ୍ତିଗତ ଜୀବନରେ କିଛି ପରିବର୍ତ୍ତନ ଆସିଲା, କିଛି ଆତ୍ମ-ବିଶ୍ୱାସ ଆସିଲା ଅର୍ଥୋପାର୍ଜନ କରିପାରିବା ଯୋଗୁଁ କିଛି ଦୃଢ଼ତା ବି ଆସିଲା, ତଥାପି ତାର ସ୍ନେହ କାଙ୍ଗାଳ ପ୍ରାଣର ମାୟା ଏବଂ ଦୁଃଖ ଶୋକ ଦୂଷିତ ପରିବାରର ଜୀବନର ବାଦ ତାକୁ ନେଇ ଏକ ଅନ୍ଧକାର ବୃତ୍ତର ରହସ୍ୟ ଭିତରକୁ ଟାଣି ନେଉଥିଲା ଏବଂ ସେ ଏକ 'ଅସମ୍ଭବ ମୃତ୍ୟୁ'ର ଦୁଃସ୍ୱପ୍ନରେ ଉତ୍ପୀଡ଼ିତ ହେଉଥିଲା । ଏଇ ସମୟରେ ସନ୍ତୋଷ ଘୋଷ ଏବଂ ଶୀର୍ଷେନ୍ଦୁଙ୍କ ଲେଖା ପଢ଼ି ସେ ଯେପରି ଏକ ସାନ୍ତ୍ୱନା ପାଇଲା, ନିଜକୁ ଉପଯୁକ୍ତ ଭାବେ ପ୍ରକାଶ କରିବା ପାଇଁ ଏକ ନୂଆ ଶୈଳୀ, ନୂତନ ଅନ୍ତଃସ୍ୱରର ସନ୍ଧାନ ପାଇ ପାରିଲା । ଏଇ ପର୍ଯ୍ୟାୟରେ ହିଁ ସେ ଓଡ଼ିଆ କଥା ଜଗତରେ ସ୍ୱୀକୃତି ପାଇଲା କିନ୍ତୁ ହଠାତ୍ ତା' ମନରେ ଏକ ସନ୍ଦେହ ଦେଖା ଦେଲା । ସେ କଣ ବଙ୍ଗଳା କଥା-ସାହିତ୍ୟ ଦ୍ୱାରା ଅନ୍ଧ ମାତ୍ରାରେ ପ୍ରଭାବିତ ହେଉଛି ? ଏମିତି ପ୍ରଭାବିତ ହେବାଟା କଣ ଦୋଷାବହ ? ଏଇ ପ୍ରଭାବ ଯଦି ଦୋଷାବହ ହୁଏ ତା'ହେଲେ ମାଇକେଲ୍ ମଧୁସୂଦନ, ଜୀବନାନନ୍ଦ ଦାସ କିମ୍ବା ଏଇ ସମୟର ସୁନୀଲ ଗଙ୍ଗୋପାଧ୍ୟାୟଙ୍କ ଦ୍ୱାରା ପ୍ରଭାବିତ ହୋଇ ସାହିତ୍ୟ ସୃଷ୍ଟି କରିଥିବା ଆମ ରଥୀ-ମାନଙ୍କର ଦଶା କଣ ହେବ ? ତଥାପି ତା'ମନରେ ସନ୍ଦେହ ରହିଗଲା । ସେ ଅନ୍ୟପଥରେ ଚାଲିବା ପାଇଁ ଚାହିଁଲା । ଅନେକ ପରୀକ୍ଷା ନିରୀକ୍ଷା ଭିତରେ ପ୍ରବେଶ କଲା । କିନ୍ତୁ ପରୀକ୍ଷା କଣ କେବଳ ପରୀକ୍ଷା ପାଇଁ ? ଲେଖାଟି ଯଦି ପାଠକକୁ ଛୁଇଁ ନପାରିଲା, ପାଠକ ଯଦି ଲେଖାରେ ଅକୃତ ଆସ୍ୱାଦ ପାଇଲା, ତାହେଲେ ଲେଖକ ଲେଖିଲା କାହାପାଇଁ ?

ତାପରେ ହଠାତ୍ ସେ ଘୋଷଣା କଲା, "ଏଣିକି ମୋ ଲେଖାରେ ସାମାଜିକ ଚେତନା ଦେଖିବାକୁ ମିଳିବ ।" ଏବଂ ପ୍ରକୃତରେ ତାର କେତେକ ଗଳ୍ପରେ ଆମ ସମାଜର ସାଧାରଣ ଜୀବନର କେତୋଟି ଦୁଃଖଦ ଚିତ୍ର ଦେଖିବାକୁ ମିଳିଲା । ବ୍ୟକ୍ତିଗତ ଜୀବନରେ ସେ ଦାରିଦ୍ର୍ୟ ବିରୁଦ୍ଧରେ ଅନେକ ସଂଗ୍ରାମ କରିଛି, କିନ୍ତୁ ସାମାଜିକ ଜୀବନରେ ଜଣେ ଲେଖକ ଭାବରେ ସେ ଏକ ସ୍ୱର ଉତ୍ତୋଳନ କରିବା ବ୍ୟତୀତ ଏବଂ ଈଶ୍ୱରଙ୍କୁ ଈଶ୍ୱରବାବୁରେ ପରିଣତ କରି ଆର୍ଥିକ ଅନାଟନ ଏବଂ ଅନ୍ୟାୟ ସହୁଥିବା ତା'ଭଳି ଯୁବକମାନଙ୍କ ପାଖକୁ ଟାଣି ଆଣିବା ବ୍ୟତୀତ ଆଉ କଣ କରି ପାରିଥାନ୍ତା ।

ତା' ଲେଖଙ୍କର ଏଇ ବିଦ୍ରୋହର ସ୍ୱରକୁ ଶାଣିତ କରିବାର ସୁଯୋଗ ନ ଦେଇ ସମସ୍ତ ତାକୁ ଜୀବନ ପଥରୁ ଟାଣି ନେଲା । ଏ ଜନ୍ମର ଦୁଃଖ ଦୂର କରି ହେଲା ନାହିଁ । ସେଥିପାଇଁ ସେ ତାର ଏକ ଗଳ୍ପରେ ଏ ଜୀବନ ପ୍ରତି ବିମୁଖ ହୋଇ ଅନ୍ୟ ଏକ ଜୀବନର ସ୍ୱପ୍ନ ଦେଖିଛି— ଯେତେବେଳେ ଦୁଃଖ ନ ଥିବ, ଅଭାବ ନ ଥିବ, ପ୍ରାଚୁର୍ଯ୍ୟରେ ସୁଖ ଥିବ ।

ମୋ ସହିତ ତାର ବ୍ୟକ୍ତିଗତ ସଂପର୍କ କପରି ଥିଲା ତାହା ଲେଖିବି କାହିଁକି ? ସେତ ସମସ୍ତଙ୍କୁ ଆପଣାର କରି ପାରିଥିଲା । ମୁଁ କହିବି, ସେ ମୋର ଘନିଷ୍ଠ ଥିଲା ଅନ୍ୟମାନେ କଣ ଚୁପ୍ ରହିବେ ? ସେମାନେ ବି କହିବେ ସେ ଆମର ଅତି ଅନ୍ତରଙ୍ଗ ଥିଲା । ଆମେ ଦୁହେଁ ସମବୟସ୍କ ନୋହୁଁ, ତଥାପି ବନ୍ଧୁ । ସେ ମୋର ଛାତ୍ର ନଥିଲା ତଥାପି ସାର୍ ବୋଲି ସମ୍ବୋଧନ କରୁଥିଲା, 'ଆପଣ' ବୋଲି କହୁଥିଲା । ସଂଧ୍ୟାରେ ଯେତେବେଳେ ବ୍ରଜବାବୁଙ୍କ ପ୍ରେସ୍, ଅଲ୍ଟୋରିଅମ୍, ଶାନ୍ତିକାନନ କମ୍ବା ଆଉ କେଉଁଠୁ ବୁଲିଫେରୁଥିଲି ମୋ ଘରସାମ୍ନାରେ ଠିଆ ହୋଇ କିଛି ସମସ୍ତ କଥାବାର୍ତ୍ତା କଲାପରେ ସେ ହାତ ହଲାଇ କହୁଥିଲା—"ସାର୍, ଗୁଡ୍‌ନାଇଟ୍ ।"

ଅଥଚ ଶେଷଥର, ସବୁଦିନ ପାଇଁ ଯେତେବେଳେ ସେ ଚାଲିଗଲା, କିଛି କହିଲାନି ।



# ଆକାଶର ଛାଇ

• ସୀତାକାନ୍ତ ମହାପାତ୍ର

"ତୁମେ ଗୋଟିଏ ମଣିଷ ହୁଅନ୍ତ କି (ଈଶ୍ୱର) ! ଠିକ୍ ମୋ ଭଳି—ଗୋଟିଏ ମଣିଷ ହୁଅନ୍ତ କି ! ମଜା ବୁଝନ୍ତ । ତା' ନାହିଁ, ଅଦୃଶ୍ୟରେ କେଉଁଠି ଲୁଚିଛ । ମୁଁ ଆଜି ତୁମକୁ ଜୀବନ୍ୟାସ ଦେବି । ମଣିଷ କରି ଗଢ଼ିବି, ତହେଲେ ବୁଝିବ ମଣିଷର ଦୁଃଖ କେତେ, ଯନ୍ତ୍ରଣା କେତେ । ମଣିଷ କେତେ ନିଃସଙ୍ଗ ଆଉ କେତେ ଅସହାୟ । X X ଶୁଣିଛି ସ୍ୱର୍ଗରାଜ୍ୟ ଖୁବ୍ ନିଃସଙ୍ଗ । ତୁମେ ସେଠି ସେମିତି ଏକା ରାଜ୍ୟରେ ଥାଅ ତା' ହେଲେ ଖୁବ୍ ନିଃସଙ୍ଗ ହୋଇ ପଡୁଥିବ, ନୁହେଁ ? ତୁମେ କ'ଣ ଥରେ ଥରେ ନିର୍ଜନରେ ବସି କାନ୍ଦ ? ବେଶୀ ନିଃସଙ୍ଗ ହେଲେ ମୋ ଭଳି କ'ଣ ସିଗାରେଟ୍ ଟାଣ ?"

ଜାନୁଆରୀ ୧୯୭୫ 'ନବରବି' ପତ୍ରିକାରେ ତା'ର 'ସ୍ୱପ୍ନୋଜିଗୀଷୁ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର' ପଢ଼ି ବୁଝି ପାରିଥିଲି ସେ କାହିଁକି ମୋ 'ଖରବେଳ' କବିତାଟି ପଢ଼ି ଆତ୍ମବିଭୋର ହୋଇଥିଲା ବୋଲି ମତେ କହିଥିଲା ଓ ଆଲୋଚନାରେ ଅଧଘଣ୍ଟାଏ ନେଇଥିଲା । ସେ ଦିନ ଥିଲା ଡିସେମ୍ବର ୧୯୭୪ର କୌଣସି ଗୋଟିଏ ତାରିଖ । ଉପରୋକ୍ତ ଗଳ୍ପଟିର ଖସଡ଼ା ବୋଧହୁଏ ତା' ମନ ଭିତରେ ସେ ଦିନ ଖେଳୁଥିଲା । ଈଶ୍ୱର ଆସି ପହଞ୍ଚିଛନ୍ତି—"ଏକା ଏକା ବୋର୍ ହେଉଥିଲି । ଆସିଲେ ଯାହା ଭଲ ହେଲା ।" ଆଉ ଈଶ୍ୱର ? 'ଖରବେଳ' କବିତାର ମୃତ୍ୟୁ ପରେ । ନା ଈଶ୍ୱରଙ୍କ ମୃତ୍ୟୁ ? ଖାଟଲୋପି । ଅଶ୍ରୁନକ ପଦ୍ମଶ୍ରୀ । "ତୁମେ ମୋ ଖଟ ଉପରେ ବସନ୍ତ, ମୁଁ ଖଟ ଉପରେ ପଡ଼ିଥିବା ବସ୍ତ୍ର ଲୁଙ୍ଗି ଅଣ୍ଡରୱେୟାର ପୁଞ୍ଜାଇ ଦେଇ ତୁମର ବସିବା ପାଇଁ ଜାଗା କରି ଦିଅନ୍ତି । ତୁମେ ଟିକେ ଥକାମାରି ଭଙ୍ଗୀରେ ପଚାରନ୍ତ—ଆଉ ସବୁ କେମିତି ଚାଲିଛି । ସବୁ ଭଲ ତ !! ମୁଁ କହନ୍ତି—ଭଲ ଆଉ କ'ଣ । ଭଲ ମନ୍ଦ ମିଶାମିଶି ।" ପୁଣି ଈଶ୍ୱରଙ୍କ ପାଇଁ ଚା, ପାନ, ଚାରମିନାର ଆଣିବାକୁ ଟୋକାଟା ଚାଲେ ପଇସା ଅଣ୍ଟିଲା ଓ ଈଶ୍ୱର ନିଜେ ଦଶଟଙ୍କିଆ ନୋଟଟିଏ ବଢ଼େଇ ଦେବାର ସେ ଅଭୁଲା ଦୃଶ୍ୟ ।

ଈଶ୍ୱରଙ୍କ ଧାରଣା ସେ ଗଳ୍ପର ନାୟକ ପାଇଥିଲା ମନ୍ଦିରରୁ । "ଝୁଣା, ଧୂପ, ଫୁଲ, ଚନ୍ଦନର ସମ୍ମିଳିତ ଏକପ୍ରକାର ଥଣ୍ଡା ବାସ୍ନା । ମା'କୁ ପଚାରିଲି ସେ କହିଲେ ଭ୍ରମର ବାସ୍ନା । ସେଇଟା ପ୍ରଥମେ ମୋର ଭ୍ରମକୁ ଅନୁଭବ । ସେମିତି ଆଉଦିନେ ସଂଜର ନଈକୂଳେ, 'ରଙ୍ଗୀନ ଆକାଶ, ନଈ ପାଣିରେ ଆକାଶ, ଧାନ ବିଲରେ ଆକାଶ, ଘରଆଡ଼େ ଆକାଶଟା କେମିତି ମାଡ଼ି ମଡ଼ି ରହିଥିଲା । ଦୂର ଗାଁ ଉପରେ ଧୂଆଁର ରେଖା ଗୋଟିଏ ଲେପି ହୋଇ ଯାଇଥିଲା । ମୋ ମୁଣ୍ଡ ଉପରେ କଟର ମିଶିଛ ଚଢ଼େଇ କେତେଟା, ଉଡ଼ିଗଲେ । ମୁଁ କେମିତି ଆଚ୍ଛନ୍ନ ହୋଇ ଆସିଲି, ସେତେବେଳେ ଭ୍ରମ ବାସ୍ନା ପାଇଲି । ବୁଝିପାରିଲି ଭ୍ରମେ ସୁନ୍ଦର ନଦେଖା ସ୍ଥାନରେ ଘୂରିବୁଲି ।"

ଏତେକରୁ ବୁଝିଥିଲି ସେ ବଡ଼ର ଲେଖକଟିଏ, କବିଟିଏ ! ସବୁ କବିଙ୍କ ଭଳି ଖୋଲାମେଲା ଅଗଏ ବଳି । ତା'ଉପରେ ମେଘ ବରଷେ, କାକର ପଡ଼େ, ପାଣିଟିକେ ଜମିଲେ ଜହ୍ନ ଦିଶେ, ତାରା ହସେ, ଆକାଶର ଛାଇ ନାଚେ । ସବୁ ଅନୁଭବକୁ ସେ ଆଁ କରି ପିଇଯାଉଛି, ଅଗସ୍ତି ସମୁଦ୍ର ଚଳୁ କଲାପରି । ତା'ର ସବୁ ଇନ୍ଦ୍ରିୟ, ଚେତନା, ଆବେଗ—ମନ ଓ ହୃଦୟର ସବୁ ଦ୍ୱାର ଉନ୍ମୁକ୍ତ । କୋଳେଇ କାଖେଇ ନେଉଛି ପ୍ରତି ମୁହୂର୍ତ୍ତରେ ଅନୁଭବକୁ । ତାକୁ ଦେଖୁଛି ନିଜ ବାଗରେ, ରକ୍ତରେ, ସ୍ନାୟୁରେ, ଚେତନାରେ । ଉନ୍ମୋଚିତ ହେଉଛି, ଆଚ୍ଛନ୍ନ ହେଉଛି, ଦେଖୁଛି, ବୁଝୁଛି ନିଜକୁ, ନିଜର ଅନୁଭବକୁ ତଉଲୁଛି—ତଳେଇ । ଆହୁରି ତଳେଇ ନିରେଖି ଦେଖୁଛି, କାନ୍ଦୁଛି, ହସୁଛି, ବୁଝୁଛି ।

ଆଜି ହଠାତ୍ ସେ ଦିନ ସକାଳୁ ଶୁଣିଲି ବେଳକୁ ସେ ଚାଲିଗଲା ଭ୍ରମର ତାର ଆଉ କୋଉ ମନୋମତ ରାଜ୍ୟକୁ । ଡାଇରୀ ଲେଖା ଶେଷ ହୋଇ ସାରିଛି ଯେଉଁଥିରୁ ପୃଷ୍ଠାଏ 'ନବତରଂଗ'ର ସଂପାଦକ ଆମକୁ ବାଢ଼ି ଦେଇଥିଲେ । ତା'ର ଯେତିକ ଲେଖା ପ୍ରକାଶିତ ପ୍ରାୟ ସବୁକୁ ପଢ଼ିବାର ସୁଯୋଗ ପାଇଛି । ସେ ନିଜ ବାଗରେ ଖୁବ୍ ଆନ୍ତରିକତା ସହକାରେ, ଖୁବ୍ ଦୃଢ଼ ନିଷ୍ଠା ନେଇ କ'ଣ ଯେମିତି ଖୋଜୁଥିଲା କିଛି ହଜେଇଥିବା ଜିନିଷ ଯାହା ମିଳୁନି । କିଛୁ ଅର୍ଥ ଏଇ ଜୀବନରେ ଯାହା ଏଇନେ ଲାଗେ ମିଳିଗଲା— ପୁଣି ମୁହୂର୍ତ୍ତକରେ ଲାଗେ ନାଁ ଇଏ ନୁହେଁ, ଆଉ ଯୋଉ ଖୋଜା, ସବୁ କବିତା, ସବୁ କଳାର ଅନ୍ତର୍ନିହିତ ଶକ୍ତି, ମଣିରେ ଖୋଜା ଯନ୍ତ୍ରଣା, ଛାଇ ଆଲୁଅର ପୃଥିବୀ । ମନ୍ଦିରର ବାସ୍ନାଦେବା ପିଲା ଦିନରୁ ସେ ହୁଏତ ଉତ୍ତୀର୍ଣ୍ଣ ହୋଇ ଆସିଥିଲା କୈଶୋରର ନଗୁଣ୍ଠିଆ ସଞ୍ଜ ନଈକୂଳ ଓ ନୀରବ ଆକାଶର ସ୍ମୃତିକୁ ।

ତା' ପରେ ପୁଣି ସ୍ନେହ, ପ୍ରେମ, ପୃଥିବୀ । କୋଉ ଦେଶୀ—ରାଧା ନା ଧାରା, ଗୁଳକର, ସମସ୍ୟ, ଜୀବନ, ପ୍ରେମ, ଯନ୍ତ୍ରଣା ଓ ମୃତ୍ୟୁ—ଏ ସବୁକୁ ମିଳାଇ ଦେଖିବାକୁ କେତେ କାଳରୁ ସେ ଅଭ୍ୟାସ କରୁଥିଲା ! ଆଜ ବୁଝିପିବାକୁ କଣ ଏତେ ତରତର ଥିଲା କେଜାଣି ? ଖୁବ୍ ନବେଲାରେ, ଖୁବ୍ ନିର୍ଭୟରେ ସେ ବୋଧହୁଏ ଗଲା ଚାଲି ।

" ମଇଁଷି ପିଠିରେ କଏ ଚଢ଼ି ଆସେ ମୋ ଦୁଆରେ ଧକ୍କାମାରେ । ତଥାପି ମୋର ବା ଭୟ କାହାକୁ ? ମୁଁ ଏକ୍ଷଣ ସବେ ସୁରକ୍ଷିତ, କାରଣ ମୋ ବାଁରେ ତୁମ ନାଳ ଆଖିର ଅଭିଶାପ ଓ ଡ଼ାହାଣରେ ଗୋଲ ଆଖିର ଆଶୀର୍ବାଦ ।"

କେଇଟି ଖବର ବା ଘଟଣା । ରେଳ ଯାତ୍ରାରେ ପରବର୍ତ୍ତୀ ଷ୍ଟେସନରେ ଓହ୍ଲାଇ ଯାଉଥିବା ନାରବ ଗୋଟିଏ ସଂଧ୍ୟାରେ ପରିଚୟ ଦେଇଥିବା ଅଜଣାଟିଏ ପର । କିନ୍ତୁ ସେ ଗଲା । ଆଉ ଜୀବନକୁ ଚାହିଁବାରେ ଆମେ ଯିଏ ମାଟି ଆଉ ଆକାଶରେ ମୁହଁ ନେଇ ବସି ରହିଛୁ ଆମେ ଅନ୍ତରଙ୍ଗ ସମଧର୍ମୀଟିଏ ହରେଇଲୁଁ ।



# କାଦମ୍ବରୀ !

• ବିଭୂତି ପଟ୍ଟନାୟକ

ତମ ସହିତ ମୋର ଅବା କେତେ ଦିନର ପରିଚୟ ? ଦେଖା ହେବା ଆଗରୁ ତମକୁ ମୁଁ ଚିହ୍ନିଥିଲି ଫଟୋ ଦେଖି, କେତୋଟି ଗଳ୍ପ ପଢ଼ି । ତମ ଫଟୋରେ ପୁଣି ୨୫।୨୬ ବର୍ଷ ତାରୁଣ୍ୟର କୌଣସି ଅଭିଜ୍ଞତା ଲୁପ୍ତ ନଥିଲା ; ଥିଲା ୧୭।୧୮ ବର୍ଷ ବୟସ୍କ କିଶୋର ମନର ଚମତ୍କାର ମୁଦ୍ରାଙ୍କନ । ଆଜି ଏ ସହରରେ ତମ ସହିତ ଯେବେ ଦେଖା ହେଲା, ସେତେବେଳେ ତମେ ମୋ ପାଖରେ ଜଣେ ରିଜେକ୍‌ଟେଡ୍ ଗଳ୍ପ ଲେଖକ ! "ଗଳ୍ପ"ରେ ପ୍ରକାଶ ପାଇଁ ପଠାଇଥିବା ତମର ଦୁଇ ତିନିଟି ଗଳ୍ପ ମୁଁ ସେତେବେଳକୁ ନୃଶଂସ ଆତତାୟୀ ଭଳି ନାଲି କାଳିରେ କାଟି ଅମନୋନୀତ କରି ଦେଇଥିଲି । କିନ୍ତୁ ପ୍ରଥମ ସାକ୍ଷାତରେ ତମେ ସେଥିପାଇଁ କୌଣସି କ୍ଷୋଭର ଚିହ୍ନ ମୁହଁରେ ଫୁଟାଇ ନଥିଲ । ବରଂ ଏକ ନିସ୍ପୃହ ଉଦାସୀନତା ତମ ଅଲକ୍ଷ୍ୟରେ ମୁଁ ତମ ଠାରେ ଲକ୍ଷ୍ୟ କରିଥିଲି ।

ସେତେବେଳେ ତମ ଗଳ୍ପ ପ୍ରସଙ୍ଗ ଉଠିଲା, ତମେ ବଡ଼ ରହସ୍ୟମୟ ଭାବରେ ହସି ମନ୍ତବ୍ୟ କରିଥିଲ, "ଆପଣ କିନ୍ତୁ ମୋ ଗଳ୍ପ ଅମନୋନୀତ କରିବାର କଥା ନୁହେଁ । କାରଣ ଆପଣଙ୍କ ଗଳ୍ପ ଉପନ୍ୟାସ ଆକଣ୍ଠ ଗ୍ରାସ କରି ମୁଁ ଲେଖକ ହୋଇଛି । ଆପଣଙ୍କ ଦ୍ୱାରା ବେଶୀ ପ୍ରଭାବିତ ବୋଲି ମୋର ବନ୍ଧୁ ମହଲରେ ବଦନାମ ଅଛି । ଅଥଚ ମୋ ଗଳ୍ପ ଆପଣଙ୍କ ମନକୁ ପାଉ ନାହିଁ ।"

ମୁଁ ଉତ୍ତର ଦେଇଥିଲି, ତମେ ହୁଏତ ମୋ ଗଳ୍ପ, ଉପନ୍ୟାସ ପଢ଼ିଛ । କିନ୍ତୁ ମୋର କୌଣସି ପ୍ରଭାବ ତମ ଲେଖାରେ ପ୍ରତିଫଳିତ ହୋଇ ନାହିଁ । ବିଷୟବସ୍ତୁ ନିର୍ବାଚନରେ ନୁହେଁ ; କି ଭାଷାରେ ମଧ୍ୟ ନୁହେଁ ।

ତାପରେ ତମ ପ୍ରେରିତ ଗଳ୍ପର କେତୋଟି ଦୁର୍ବଳ ଦିଗ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରିଥିଲି । କିନ୍ତୁ ମୋ ଦ୍ୱାରା ଅମନୋନୀତ ଗଳ୍ପଗୁଡ଼ିକ ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟ ପତ୍ରରେ ପ୍ରକାଶ କରି ତମେ ମୋର ଯୁକ୍ତିର ଅସାରତା ପ୍ରମାଣ କରିବାକୁ ଲାଗିଲ ।

ସମସ୍ତ ନିଃଶବ୍ଦରେ ଗଡ଼ି ଯାଉଥିବା ଜଳ ଭଳି ବହି ଗଲା । ତମେ ଆସିଲ । ଯୂଥବଦ୍ଧ ଭାବରେ ଆଧୁନିକ ଗଳ୍ପ ସମ୍ପର୍କରେ ଆଲୋଚନା ଚାଲିଲା । ଚାହା ପିଆ ହେଲା । ତାପରେ ହଠାତ୍ ତମେ ପ୍ରସ୍ତାବ କଲ, ତମର ଗୋଟାଏ ଗଳ୍ପ ଶୀଘ୍ର 'ଗଳ୍ପ'ରେ ଛପା ହେବା ଦରକାର । କି କି ଉପାଦାନ ଥିଲେ ତମ ଗଳ୍ପ 'ଗଳ୍ପ'ରେ ଛପା ଯାଇ ପାରେ ମୁଁ ତାର ସର୍ତ୍ତ ଉପସ୍ଥାପିତ କଲି । ତାପରେ ତମେ ଦିନେ ବନ୍ୟାତ୍ରସ୍ତ ବାଲେଶ୍ବରରୁ ଫେରି "ଜୀବନ ଯାପନ" ଗଳ୍ପଟା ଦାଖଲ କରିଗଲ ।

ତାପରେ ମୁଁ ବିସ୍ମୟର ସହିତ ଲକ୍ଷ୍ୟ କରିଥିଲି, ତମ ଭିତରେ ଅସମ୍ଭବ ଧରଣର ଅଦଳ ବଦଳ ହୋଇ ଯାଉଛି । ତମେ ନିଜ ଲେଖା ଭିତରେ ନିଜକୁ ନୂଆ ଭାବରେ ଆବିଷ୍କାର କରି ଚାଲିଛ । ଆଗେ ତମ ମୁଣ୍ଡ ଉପରେ ଥିଲା କେବଳ ଏକ ଚନ୍ଦ୍ରକରିତ ଅନନ୍ତ ଆକାଶ । ତମ ଗଳ୍ପରେ ଥିଲା ଏକ ବିହ୍ୱଳିତ ଭାବ । ତାପରେ ତମେ ପାଦ ତଳେ ମାଟିର ସନ୍ଧାନ ପାଇଲ । ତମ ଗଳ୍ପରୁ ସେ ବିହ୍ୱଳ ଭାବ କଟି ଯାଇ କ୍ରମଶଃ ଏକ ବିଗ୍ରହର ରୂପ ଦେଖାଗଲା । ତମ ପୂର୍ବର ଗଳ୍ପ ସହିତ ଗତ ୭।୮ ମାସ ତଳେ ଲେଖିଥିବା ଗଳ୍ପର ତୁଳନା କଲେ ଯେ କୌଣସି ପରିଶ୍ରମୀ ପାଠକ ତମ ଗଳ୍ପରେ ସେଇ ବିଗ୍ରହ ଗଠନର ପ୍ରକ୍ରିୟା ସହଜରେ ଲକ୍ଷ୍ୟ କରି ପାରିବ ।

କିନ୍ତୁ ତମେ ଯେତେବେଳେ ସାହିତ୍ୟର ଦରବାରରେ ନିଜକୁ ଏକ ସୁଦୃଢ଼ ଭିତ୍ତିଭୂମି ଉପରେ ଠିଆ କରାଇବାକୁ ସକ୍ଷମ ହୋଇଥିଲ ; ଠିକ ସେତିକି ବେଳେ ନିଷ୍ଠୁର ନିୟତି ତାର କଳା କଳା ଲୋମଶ ହାତ ବଢ଼ାଇ ଆମ ପାଖରୁ ତମକୁ ଝାମ୍ପି ନେଲା !

ଗତ ଜୁଲାଇ ୨୭ ତାରିଖ ସକାଳୁ ସ୍ୱାଇଁଙ୍କ ଠାରୁ ଶୁଣିଲି, ତମେ ନାହଁ । ଭୁବନେଶ୍ବର ଡାକ୍ତରଖାନାରେ ଗତ ରାତିରେ ତମେ ଆମ ସମସ୍ତଙ୍କୁ ଛାଡ଼ି ଦେଇ ଚିରଦିନ ସ୍ୱର୍ଗକୁ ଚାଲି ଯାଇଛ ।

ବିଶ୍ୱାସ କରିବାକୁ କଷ୍ଟ ହୋଇଥିଲା ।

ତମକୁ ଛଅ ସାତ ଦିନ ଆଗରୁ ଦେଖିଥିଲି କୁଞ୍ଜ ରାଉଙ୍କ ସହିତ ରିକ୍ସାରେ ବସି ତମେ ରାସ୍ତାରେ ଯାଉଥିଲ । କୁଞ୍ଜବାବୁ କହୁଥିଲେ, ଖାଇ ବସିଲା ବେଳେ

ତମେ ଗଣ୍ଠିରେ ଯନ୍ତ୍ରଣା ଅନୁଭବ କଲ। ସେଥିପାଇଁ ଡାକ୍ତର ପାଖରୁ ଇଂଜେକ୍‌ସନ୍ ନେଇ ଫେରୁଛ।

ଗଣ୍ଠିରେ ଯନ୍ତ୍ରଣା !

ଘର ଇଚ୍ଛା ହେଉଥିଲା ପରିହାସ କରିବାକୁ ଯେ ତମେ ସବୁ ସପ୍ତମ ଦଶକର ଗାଳ୍ପିକମାନେ ଗଣ୍ଠିରେ ଯନ୍ତ୍ରଣାକୁ ପ୍ରେମିକାର ସ୍ମୃତିଭଳି ଆଦରରେ ସାଇତି ରଖିଥାଅ ! କିନ୍ତୁ ତମର ଶେତାଳିଆ, ଦୀପ୍ତିହୀନ ମୁହଁକୁ ଚାହିଁ ମନର କଥା ମୁହଁରେ ଅଟକି ଗଲା। ବସାକୁ ଯାଇ ବିଶ୍ରାମ କରିବାକୁ କହି ମୁଁ ତମ ରିକ୍‌ସାକୁ ପଛରେ ଛାଡ଼ି ଆସିଥିଲି। କିନ୍ତୁ ସେଦିନ କଅଣ ମୁଁ ଜାଣିଥିଲି ଯେ ମୋ ସହିତ ସେ ତମର ଶେଷ ଦେଖା ହେବ ବୋଲି ?

କହ୍ନେଇ ! ଏଇ ତ କାଲି ଭଳି ମନେ ହେଉଛି ମୁଁ ଯାଇଛି ତମ ରାଜଧାନୀ ପାଠାଗାରର ବାର୍ଷିକ ଉତ୍ସବର ପ୍ରଧାନ ଅତିଥି ହୋଇ। ଝିପି ଝିପି ବର୍ଷା ପଡ଼ୁଛି। ସଭା ମଞ୍ଚରେ ଫୁଲ ତୋଡ଼ା ଧରି ମୁଁ ବସି ରହିଛି ଉତ୍ସବର ପ୍ରଧାନ ଅତିଥି। ହଠାତ୍ ପ୍ରାରମ୍ଭିକ ସମ୍ମିଳିତ କଣ୍ଠ ସଙ୍ଗୀତର ଧ୍ୱନି ଅନୁରଣିତ ହୋଇ ଉଠିଲା। ପରିଚିତ କଣ୍ଠସ୍ୱର ଶୁଣି ପଛକୁ ଫେରି ଚାହିଁ ଦେଖେତ ସେ ପୁଅ ଝିଅମାନଙ୍କ ସହିତ ତମେ କୋରସ୍ ଗାଉଛ ! କି ଆଶ୍ଚର୍ଯ୍ୟ ! ତମେ ଗଳ୍ପ ଲେଖ, ପୁଣି ତାଳ ଛନ୍ଦ ମାନି ଗୀତ ବୋଲି ପାର ? ରାତି ଅନିଦ୍ରା ହୋଇ ଅପେରା ଦେଖିବାରେ ତମର ସେ କି ଆଗ୍ରହ ! ଭୁଡ଼ାକୁ ଭୁଡ଼ା ବର୍ଷା ଆସୁଛି, ତଥାପି 'ମହା ସମର' ଅପେରା ଦେଖିବା ପାଇଁ ତମେ ମତେ ଜୋର କରି ଅଟକାଇ ରଖିଛ। ଉଠିବା ପାଇଁ ଛଟପଟ ହେଲେ ଛୋଟ ପିଲାଙ୍କ ଭଳି ଅଳି କରୁଛ, କୁଞ୍ଜ ଭାଇ କୃଷ୍ଣ ହୋଇଛନ୍ତି, "ସେ ମଞ୍ଚକୁ ଆସିଲେ ଆପଣ ଯିବେ।"

ଦୁଃଶାସନ କୃଷ୍ଣାଙ୍କୁ ବିବସ୍ତ୍ର କରିବାକୁ ଉଦ୍ୟମ କଲାବେଳେ ତମ କୁଞ୍ଜ ଭାଇ କୃଷ୍ଣ ସାଜି ମଞ୍ଚକୁ ଆସିଲେ। ମୁଁ ଉଠିଲି। ବର୍ଷା କମି ଆସିଥିଲା। ବିନ୍ଦୁ ବିନ୍ଦୁ ମଧୁ ଚନ୍ଦ୍ରିକାରେ ଓଦା ହୋଇ ଯାଉଥିଲା ଏ. ଜି. କଲୋନୀର ପଥ ପ୍ରାନ୍ତର ! ରିକ୍‌ସାର ପଇସା ଅଗତୁରା ତୁଟାଇ ଦେଇ ତମେ ମତେ ବିଦାୟ ଦେଲ। କଥା ହେଲା, ମୁଁ ଆଉ ଥରେ ତମ କଲୋନୀକୁ ଆସିବି। ଦୁହେଁ ଯାକ ସାଙ୍ଗ ହୋଇ ଏଇ ନିଦ୍ରିତ ନଗରୀର ଖୋଲା ପଡ଼ିଆରେ ରାତି ସାରା ବୁଲି ଗପ କରିବା।

କେଉଁ ଗୋପନ ଛିଦ୍ର ପଥ ଦେଇ କଳସୀର ଜଳ ସବୁ ଗଡ଼ିଗଲା ଭଳି ସେ ଦିନ କେତେଟା ଗଡ଼ିଗଲା ତାଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିବା ଆଗରୁ । ମୁଁ ତାଙ୍କ କଲେଜକୁ ଆଜି ଥରେ ଗଲି । ତାଙ୍କ ସମ୍ବନ୍ଧରେ ସ୍ମୃତିସଭା ବସି ଗପ କରିବା ପାଇଁ ନୁହେଁ ; ତାଙ୍କ ଶ୍ରାଦ୍ଧ ସଭାରେ ଦୁଇ ମିନିଟ ଠିଆ ହୋଇ ନୀରବରେ ଶୋକ ପାଳନ କରିବା ପାଇଁ ।

ତାଙ୍କ ଯେ ଏଇ କେତେ ବର୍ଷ ମଧ୍ୟରେ ଶହେରୁ ଅଧିକ ଗଳ୍ପ ଲେଖି ସାରିଛନ୍ତି ଏକଥା ତାଙ୍କ ପାଠାଗାରର ବାର୍ଷିକ ଉତ୍ସବ ଦିନ କବି ହରିହର ମିଶ୍ରଙ୍କ ଠାରୁ ଶୁଣି ମୁଁ ଚକିତ ହୋଇଥିଲି । ତାଙ୍କ ଉପରେ ଅପ୍ରତିଭ ହୋଇ ପ୍ରଶ୍ନ କରିଥିଲି, କଣ କରିବ ? ମୋ ମନରେ ଏତେ ଆଇଡ଼ିଆ ସବୁ ଜମି ଯାଉଛନ୍ତି ଯେ ଯେତେ ଲେଖିଲେ ବି ଶେଷ ହେଉନାହିଁ ।

ତାଙ୍କ ଯେ ଖୁବ୍ ଶୀଘ୍ର ଚାଲିଯିବ ଏ କଥା ସେ ହୁଏତ ଜାଣି ଯାଇଥିଲେ । ସେଥିପାଇଁ ଶେଷ ଦିନ ଗୁଡ଼ିକରେ ତାଙ୍କ ଠାରେ ଏକ ଉଗ୍ର ଅସ୍ଥିରତା ମୁଁ ଲକ୍ଷ୍ୟ କରିଥିଲି । ତାଙ୍କର ଗଳ୍ପ ସବୁ ଦ୍ରୁତ ଗତିରେ ଲେଖା ହୋଇ ଯାଉଥିଲା । ଭାଷା, ଶୈଳୀ, କଥାବସ୍ତୁକୁ ନେଇ ଯେତେ ପ୍ରକାର ପରୀକ୍ଷା ନିରୀକ୍ଷା କରାଯାଇ ପାରେ, ସେ ଦିଗରେ ତାଙ୍କ ଚେଷ୍ଟା କରି ଯାଇଛନ୍ତି ।

ତାଙ୍କର ଅନେକ ଅତୃପ୍ତି, ଅନେକ ଅସନ୍ତୋଷ । ତାଙ୍କ ଚାହିଁଥିଲେ ଖୁବ୍ ଶୀଘ୍ର ତାଙ୍କର ଗୋଟିଏ ମୂଲ୍ୟବାନ ଗଳ୍ପ ସଂକଳନ ପ୍ରକାଶ ପାଉ । ତାଙ୍କ ଅଫିସ ରୁମ୍‌ରେ ସେଦିନ କହୁଥିଲେ, "ଗୋଟାଏ ସଂକଳନ ପ୍ରସ୍ତୁତ କରି ଆପଣଙ୍କୁ ଦେଇ ଦେବି । ଆପଣ ତାର ଗୋଟାଏ ଦୀର୍ଘ ଭୂମିକା ଲେଖି ଦେବେ । ବହି ବାହାର କରିବା ଦାୟିତ୍ୱ ଆପଣଙ୍କର । ମୋ ଦାବୀ କିଛି ହେବ ନାହିଁ ।"

ତାଙ୍କର ରାଗ, କ୍ରୋଧର ମଧ୍ୟ ସୀମା ନଥିଲା । ଗତ ବର୍ଷ କେଉଁ ସାହିତ୍ୟ ପତ୍ରିକାର ସମ୍ପାଦକ ପୂଜାସଂଖ୍ୟାରେ ଛାପିବେ ବୋଲି ଉପନ୍ୟାସଟିଏ ମାଗି ନେଇ ଛାପିଲେ ନାହିଁ । କେଉଁ ପ୍ରକାଶକଙ୍କୁ ଗଳ୍ପ ବହିଟିଏ ଛାପିବା ପାଇଁ ଅନୁରୋଧ କରି ଚିଠି ଲେଖିଥିଲେ । ସେ ଆଜି ନୂଆ ବହି ଛାପୁ ନାହାନ୍ତି ବୋଲି ତାଙ୍କୁ ଚିଠି ଲେଖି ପରେ ଅନେକ ବହି ପ୍ରକାଶ କରିଥିଲେ । ଏସବୁ ତାଙ୍କ ମନକୁ ପୃଥିବୀର ସୌନ୍ଦର୍ଯ୍ୟ ସମ୍ପର୍କରେ ହତାଶକରି ଦେଇଥିଲା । କିଛି ପରିମାଣରେ ନିଃସହାୟତା, କିଛି ପରିମାଣରେ ନିଜକୁ ପ୍ରକାଶ କରିବାର ଚଞ୍ଚଳତା ତାଙ୍କୁ ଶେଷ ଦିନ ଗୁଡ଼ିକରେ ଖୁବ୍ ବ୍ୟସ୍ତ କରି ରଖିଥିଲା । ତାଙ୍କ ଯେ

କ୍ରମଶଃ ନିଃଶେଷ ହୋଇ ଯାଉଛି। ଏକଥା ଆମ କାହାକୁ ଜାଣିବାକୁ ଦେଉଣି ନଥିଲେ ସୁଦ୍ଧା ତମ ଗଳ୍ପ, ତମ ଅନ୍ତରଙ୍ଗ କଥାବାର୍ତ୍ତା ଭିତରେ ତମେ ପ୍ରକାଶ କରି ପାଇଥିବା ଜାଣି ମୁଁ ସ୍ତମ୍ଭିତ ହୋଇଛି ।

ଶୁଣିଲି ଚନଚମ୍ପା, ଗୋଲାପ ଆଉ ଜ୍ୟୋତ୍ସ୍ନା ଥିଲା କୁଆଡ଼େ ତମର ଅତ୍ୟନ୍ତ ବଡ଼ ପ୍ରିୟ । କିନ୍ତୁ ବର୍ତ୍ତମାନ ତ ଭୁବନେଶ୍ୱରର ଅନେକ ବଗିଚାରେ ପ୍ରଚୁର ନାଲି ଗୋଲାପ ଫୁଟୁଛି । ମେଘ କଟିଗଲେ ଆକାଶରେ ପୂର୍ଣ୍ଣ ଶୁଭ୍ର ଜ୍ୟୋତ୍ସ୍ନାର ଜୁଆର ଆସିବ । ଭୁବନେଶ୍ୱରର ପଥୁରିଆ ପିଚଢଳା ରାସ୍ତା, ଶ୍ୟାମଳ ପ୍ରାନ୍ତର, ଉଦ୍ୟାନ ସେଇ ମଧୁ ଚନ୍ଦ୍ରିକାରେ । ତମେ ଏସବୁ ଛାଡ଼ି ଦେଇ ହଠାତ୍ ଚାଲିଗଲ କାହିଁକି ?

ତମକୁ ମାତ୍ର ଛବିଶ ବର୍ଷ ବୟସ ହୋଇଥିଲା । ଠିକ୍ ଏ ବୟସରେ କବି କୀଟସ୍‌ଙ୍କର ଦେହାନ୍ତ ହୋଇଥିଲା ବୋଲି ଶୁଣିଛି । ଆମ ଅପେକ୍ଷା କବି କୀଟସ୍‌ଙ୍କ ସହିତ ତମର କଅଣ ଅଧିକ ଅନ୍ତରଙ୍ଗତା ଥିଲା ? କେଜାଣି, କିଛି ବୁଝି ହେଉ ନାହିଁ । ସବୁ ଧୂଆଁଳିଆ, ସବୁ ଅସ୍ପଷ୍ଟ ଦେଖା ଯାଉଛନ୍ତି ।

ଭୁବନେଶ୍ୱରର "ଚାହା ଦୋକାନ" ବନ୍ଦ ହୋଇ ଗଲେ ଥରକୁ ଥରେ ତମେ ଆସୁଥିଲ ଆମ ବସାକୁ ଚାହା ପିଇବା ପାଇଁ । ଏବେ ଶୁଣିବି ସ୍ୱର୍ଗରେ କଅଣ ଚାହା ଦୋକାନ ଖୋଲୁଥାଏ ? ସେଠାରେ ମଧ୍ୟ କଅଣ ପିଣ୍ଟର, କୃଷ୍ଣଚନ୍ଦ୍ର, ବିମରେନ୍ଦ୍ର, କଣେଇ, ରାଧାବିନୋଦ, ଅଶ୍ୱିନୀ ଆଉ ପ୍ରସନ୍ନାଦଙ୍କ ଭଳି ତୁମର ସାଙ୍ଗ ଅଛନ୍ତି ? ସେମାନଙ୍କ ସହିତ ହାତ ଧରାଧରି ହୋଇ ତୁମେ ସନ୍ଧ୍ୟା ପରିକ୍ରମା କରୁଛ, ଆଉ ଆଧୁନିକ ଗଳ୍ପ, କବିତା ସମ୍ପର୍କରେ ଆଲୋଚନା କରି ସମୟ କଟାଇ ନେଉଛ ?

କହିଲ ! ତମ ଅଭାବ ମୋର କେତେବଡ଼ ଅଭାବ ଜାଣିଛ ? ରବି ପଟ୍ଟନାୟକ, ହରପ୍ରସାଦ ଦାସ, ପ୍ରସନ୍ନ ଭୁବନେଶ୍ୱରରୁ ଚାଲିଗଲା ପରେ ଏଠାରେ ସାହିତ୍ୟିକ ପରିବେଶ ଯେତେବେଳେ ନିସ୍ତବ୍ଧ ହୋଇ ଆସୁଥିଲା, ତମେ ଠିକ ସେତିକବେଳେ ଆସର ଜମାଇବାକୁ ଆସିଥିଲ । କିନ୍ତୁ ସେ ଆସର ଠିକ୍ ଜମି ଆସୁଥିବା ବେଳେ ତମେ ଛୁ ।

ତମେ ଚାଲି ଗଲା ପରେ, ଏ. ଜି. ଅଫିସ୍‌ର ଗୋଟିଏ ଚାକିରି ଖାଲି ହେବ, ଆଉ ଜଣେ ଯୋଗ୍ୟ ତରୁଣ ହୁଏତ ସେ ସ୍ଥାନ ପୂରଣ କରି ଦେବ । କିନ୍ତୁ ତମେ ଚାଲିଗଲା ପରେ ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟରେ ଯେଉଁ ଶୂନ୍ୟ ସ୍ଥାନ ସୃଷ୍ଟି ହେଲା, ତାକୁ ପୂରଣ କରିବ କିଏ ?

— ◆ ◆ ◆ —

# ସ୍ୱର୍ଗତ କହ୍ନେଇଲାଲ୍ ଦାସ : ଏକ ସ୍ମୃତି-ଚାରଣ

• ସୌଭାଗ୍ୟକୁମାର ମିଶ୍ର

ଗତ ନ'ଟା ବେଳେ ସରୋଜ ହଠାତ୍ ଆସି ପହଞ୍ଚିଲା ଏବଂ ଖବରଟା ଦେଲା । କ'ଣ ହୋଇଥିଲା ? କିଛି ନାହିଁ । ଛ' ସାତ ଦିନ ହେଲା ଜର ହେଉଥିଲା, ଛାତିରେ ଟିକିଏ ଯନ୍ତ୍ରଣା ହେଉଥିଲା । ସକାଳେ ରକ୍ତବାନ୍ତି ହେଲା । କହ୍ନେଇ ମରିଗଲା ।

ଭଗବାନ (ଯାଙ୍କୁ ଆମେ ଶ୍ରଦ୍ଧାରେ, ରାଗରେ 'ଭଗିଆ' ବୋଲି ଡାକୁଥିଲୁଁ, ମହାନଦୀ କୂଳେ ରାତିରେ ବସି ଆଧୁନିକ ଓଡ଼ିଆ ଗଳ୍ପର ଭବିଷ୍ୟତ ଆଲୋଚନା କଲାବେଳେ, ଏ. ଜି. ଅଫିସ୍ ସାମ୍ନା ଜଗା ଚା' ଦୋକାନରୁ ସିଙ୍ଗଲ୍ କପ୍ ଚା' ଖାଇଲାବେଳେ, ସଦ୍ୟ କିଣା ଅପଢ଼ା ଖବର କାଗଜ ଧରିକରି ଭୁବନେଶ୍ୱର ବସ୍‌ଷ୍ଟାଣ୍ଡ ପଛରେ ଖୋଲା ଜାଗାରେ ବସି ମାସିକ ପତ୍ର-ପତ୍ରିକାର ଲେଖା କଥା ଗପୁଥିଲା-ବେଳେ) ଯେଉଁମାନଙ୍କୁ ବେଶୀ ଭଲ ପାଆନ୍ତି ସେମାନଙ୍କୁ ଯେତେ ଶୀଘ୍ର ପାରନ୍ତି ତାଙ୍କ ପାଖକୁ ନେଇଯାଆନ୍ତି । ଘରେ ଗୁଲୁରୁ ଗୁଲୁରୁ କଥା କହି ଶିଖି ଆସୁଥିବା ଶିଶୁଟିଏ କିମ୍ବା ସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା କିଶୋରଟିଏ ମରିଗଲେ, ଏ କଥା କହି ଆମେ ମନକୁ ମନ ସାନ୍ତ୍ୱନା ଦେଇଥାଉଁ । ମୋ ପାଇଁ, କହ୍ନେଇର ହଜାରେ ସାଂଗମାନଙ୍କ ପାଇଁ, ତା ପରିବାର ବନ୍ଧୁବାନ୍ଧବ ସମସ୍ତଙ୍କ ପାଇଁ, ଏ ସାନ୍ତ୍ୱନା ଛଡ଼ା ଅନ୍ୟ ବାଟ ନାହିଁ ।

ଛବିଶ୍ ବର୍ଷର ହସ ହସ ମୁହାଁ ଯୁବକ କହ୍ନେଇଲାଲ୍ ଦାସ ହଠାତ୍ ଏମିତି ଚାଲିଯିବ କାହିଁକି ?

"ପୃଥିବୀର ସବୁ ଶବ୍ଦ କ୍ରମେ ମିଳେଇ ଆସିଲା । ମୋତେ ଆଉ କିଛି ଶୁଣାଗଲା ନାହିଁ । ମୁଁ ବଧିର ହୋଇଗଲି । ପୃଥିବୀର ଆଲୁଅ କ୍ରମେ ଫିକା ହୋଇ ଧୂଆଁଳିଆ ହୋଇଗଲା । କ୍ରମେ ସାରା ପୃଥିବୀରେ ଭୀଷଣ ଅନ୍ଧକାର ବ୍ୟାପିଗଲା ।"

( କହ୍ନେଇର ଗପ 'ପାତେଶ୍ୱ'ରୁ )

ଉତ୍ତର ମିଳୁନି ନାହିଁ । ଉତ୍ତର ମିଳେ ନାହିଁ ।

ପ୍ରାୟ ଦୁ'ମାସ ତଳେ କହ୍ନେଇ ସାଙ୍ଗେ ମୋର ଶେଷ ଦେଖାହୋଇଥିଲା, ଭୁବନେଶ୍ୱରରେ ; ଗୋଟେ ବାହାଘରେ । ବାହାଘରର ପାଖପଟର ଜଙ୍ଗଲରୁ ଖସିଯାଇ ହରି ଭାଇନା (ହରିହର ମିଶ୍ର, କୁଞ୍ଜ ବସୁ, କହ୍ନେଇ, ମୁଁ (ଆଉ ଜଣେ ଦୁ'ଜଣ ବି ଥିଲେ) ଗୋଟେ ବନ୍ଦ ହୋଇଥିବା କୀଟନାଶକ ଔଷଧ ଦୋକାନ ବାହାରେ ମୁଣ୍ଡିଆ ଉପରେ ବସି ଗପୁଥିଲୁ । କିଛି ସମୟ ପରେ ଅନ୍ୟ ସାଙ୍ଗମାନେ ଆସି ପହଞ୍ଚିଲେ । ହଠାତ୍ ଜଣେ ପ୍ରସ୍ତାବ ଦେଲା ଯେ ଗୋଟେ ନିର୍ଦ୍ଦିଷ୍ଟ କୀଟନାଶକ ଔଷଧ କିଣି ସମସ୍ତେ ବାଣ୍ଟି କୁଣ୍ଡି ଖାଇ ଦେବା ଚାଲ । ଔଷଧ ଦୋକାନର ମାଲିକ ହଠାତ୍ କହିଲେ ମୋତେ ଆଗ ପାଞ୍ଚ ଟଙ୍କା ପଚିଶ ପଇସା ଦେଇ ଦିଅ, [illegible] ଯାଅ, ତା'ପରେ ଯା କରୁଚ କର । ହସର ରୋଳ ଉଠିଲା । କହ୍ନେଇ ବି ହସିଲା । କିନ୍ତୁ ସେ ଭିତରେ କେତେବେଳେ ମୃତ୍ୟୁ ଆସି ପହଞ୍ଚି ସାରିଥିଲା ଆମେ ବୋକା କେହି ବୁଝି ପାରି ନଥିଲୁ ।

କହ୍ନେଇ କିନ୍ତୁ ବୁଝି ନେଇଥିଲା ବୋଧେ ତା'ର ଅନେକ ଆଗରୁ । ସେ ମୃତ୍ୟୁ-ଚିନ୍ତାକୁ ଏଡ଼େଇ ଯିବାକୁ ଚାହୁଁ ଥିଲା । କିଏ ନ ଚାହିଁବ ? "ମୁଁ ଜାଣେ ମୁଁ ଦିନେ ମରିବି ; କିନ୍ତୁ ଏତେ ଶୀଘ୍ର କେବେ ମରିବାକୁ ଚାହିଁ ନାହିଁ । ବର୍ତ୍ତମାନ ବି ପୃଥିବୀରେ ଅନେକ ସହଜ ସୁଲଭ ଅନୁଭୂତିକୁ ଅନୁଭବ କରି ନାହିଁ । ତଥାପି ମୋର ମନେହୁଏ ମୁଁ ଖୁବ୍ ବେଶୀଦିନ ବଞ୍ଚିବି ନାହିଁ ।"

( ତା'ର ଗପ "ଅସମ୍ଭବ ମୃତ୍ୟୁ", ୭୩ )

ତୋର ଆଶଙ୍କା ଏତେ ଶୀଘ୍ର ସତ ହୋଇଯିବ ବୋଲି ଆମେ କେହି ଭାବି ନଥିଲୁରେ କହ୍ନେଇ !

କହ୍ନେଇ ସାଙ୍ଗେ ମୋର ପରିଚୟ ବେଶୀ ଦିନର ହୋଇ ନଥିଲା । ତେବେ, ଘନିଷ୍ଠତା ହେଲା ଖୁବ୍ ବେଗରେ । ପ୍ରଥମେ ଦେଖା ହୋଇଥିଲା ବୋଧେ ମଙ୍ଗଳାବାଗରେ । ପରିଚୟର ଦୁ'ଘଣ୍ଟା ଭିତରେ ମୋର ତା'ପ୍ରତି 'ଆପଣ' ସମ୍ବୋଧନକୁ ସେ ଜବରଦସ୍ତ 'ତୁମେ'କୁ ଖସେଇ ଆଣିଲା । କହ୍ନେଇର କଥାବାର୍ତ୍ତା ଢଙ୍ଗ ଢାଙ୍ଗ ଭିତରେ ଏମିତି କୋଟିଏ ଅନ୍ତରଙ୍ଗ ଗୁଣ ଥିଲା ଯା ମୁଁ କ୍ୱଚିତ ଦେଖିଚି ।

ଏକା ଜାଗାରେ ଚାକିରି କରୁଥିଲେ ମଧ୍ୟ ଆମ ଦୁହିଁଙ୍କର ବେଶୀ ଥର ଦେଖା ହୋଇନ । ଯେତେଥର ହୋଇଚି ଦେଖା ଦୀର୍ଘ ହୋଇଚି, ଆମ୍ଭର ତାଡ଼ନାରେ

ପାରମ୍ପରିକ ଉତ୍ସାହରେ । ଏତେ ଅନ୍ତରଙ୍ଗ କଥାବାର୍ତ୍ତା ହେଲେ ମଧ୍ୟ କହ୍ନେଇ ତା’ ନିଜ ବିଷୟରେ ଗପିବା ମୁଁ ପ୍ରାୟ ଶୁଣି ନାହିଁ । ତେଣୁ ତା’ ବ୍ୟକ୍ତିଗତ, ପାରିବାରିକ ଜୀବନ ସଂପର୍କରେ ମୁଁ ଖୁବ୍ କମ୍ ଜାଣିଥିଲି । ସେ ସବୁବେଳେ ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ ଗପେ, ବିଶେଷ କରି ତାର ପ୍ରିୟ ଲେଖକମାନଙ୍କ ଲେଖା ସମ୍ବନ୍ଧରେ । ଓଡ଼ିଆ ସାହିତ୍ୟରେ ନୂଆ କିଛି ସୃଷ୍ଟି ହେଉ, ଗୁଣଞ୍ଜଲ୍ୟକର କିଛି ଘଟୁ — ଏ କଥା କହିଲାବେଳେ କହ୍ନେଇ ଭୀଷଣ ଉତ୍ସାହିତ ହେବାର ମୁଁ ଲକ୍ଷ୍ୟ କରିଛି । ‘ଗଳ୍ପ’ ରେ ମୋର ‘ଘରପୋଡ଼ିରୁ ରକ୍ଷା ପାଇବାର କେତେକ ଉପାୟ’ ବାହାରିବା ପରେ କହ୍ନେଇ ସାଙ୍ଗରେ ଦିନେ ସନ୍ଧ୍ୟାବେଳେ ଦେଖାହୁଏ ଭୁବନେଶ୍ୱର ବସ୍ଷ୍ଟାଣ୍ଡରେ । ମୋ ଗପର ପରିଣତି ତାକୁ ଭଲ ଲାଗି ନଥିଲା । ଘଣ୍ଟେ ଦି’ଘଣ୍ଟା ଚିନାବାଦାମ ଚୋବେଇ ଗପି ଗପି ପରିଣତି ଆଉ କ’ଣ ହୋଇ ପାରନ୍ତା ଆଲୋଚନା କଲୁଁ । କିନ୍ତୁ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲୁ ନାହିଁ । ପରେ ଦେଖିଲି ‘ନବ ତରଙ୍ଗ’ ପତ୍ରିକାରେ ‘ପାଟେଷ୍ଟ’ ଗପ ଯା ମୋତେ ସେ ଉତ୍ସର୍ଗ କରିଥିଲା ଏବଂ ସମ୍ପାଦକଙ୍କୁ ଲେଖିଥିଲା ଯେ ମୋର “ ଘରପୋଡ଼ି” ···ପଢ଼ି ସେ “ ବେଶ୍ ବିସ୍ଫୋରିତ” ହୋଇଥିଲା ଏବଂ ‘ପାଟେଷ୍ଟ’ ସେଇ ବିସ୍ଫୋରଣର ଏକ ସନ୍ତାନ ।

ପରୀକ୍ଷାମୂଳକ ଗଳ୍ପ ଲେଖୁଥିବା ଆମର ଅଳ୍ପ କେତେକ ଜଣ ଯୁବକମାନଙ୍କ ମଧ୍ୟରେ କହ୍ନେଇ ଥିଲା ଅନ୍ୟତମ [ ତା’ ସାଙ୍ଗ କୁଞ୍ଜବିହୁଙ୍କଠୁଁ ଶୁଣିଲି ସେ ସମୁଦାୟ ଅଠାନବେଟି ଗପ ଓ ଗୋଟିଏ ଉପନ୍ୟାସ ‘ଦୁର୍ଘଟଣା’ ଲେଖିଛି । ତା’ ଶେଷ ଗପର ନାଁ ‘ନିଃସଙ୍ଗ’ ।] ଏବଂ ତାର କୃତିତ୍ୱ ଏକ ସ୍ୱତନ୍ତ୍ର ଧରଣର ବୋଲି ମୋର ସବୁବେଳେ ମନେ ହେଇ ଆସିଛି । ସେ ଭାଷାକୁ ନେଇ ପରୀକ୍ଷା କରିଛି, ଶୈଳୀ ବଦଳେଇ ଦେବାକୁ ଚେଷ୍ଟା କରିଛି, ବେଳେ ବେଳେ ଲକ୍ଷ୍ୟହୀନ ଭାବରେ ଶବ୍ଦର ଜାଲ ବୁଣି ବୁଣି ତା’ ଭିତରେ ଛନ୍ଦି ହୋଇ ପଡ଼ିଛି । କିନ୍ତୁ ଏ ସମସ୍ତ ଚେଷ୍ଟା ଅପଚେଷ୍ଟା ଭିତରେ ମୁଁ ଲକ୍ଷ୍ୟ କରିଛି ଏକ ଘନିଷ୍ଠ କୋମଳତା, ମଣିଷ ଜୀବନ ପ୍ରତି ଏକ ସ୍ନେହୀ ଆକର୍ଷଣ । ଏଇ ଗୁଣଟି ଯୋଗୁଁ ବୋଧେ କହ୍ନେଇର ଲେଖା ଏତେ ଜନପ୍ରିୟ । ଯନ୍ତ୍ରଣା, ଦୁଃଖ, ମୃତ୍ୟୁ ବିଷୟରେ ଅନ୍ୟମାନଙ୍କ ପରି ସଚେତନ ହେଲେ ମଧ୍ୟ କହ୍ନେଇର ‘କର୍ଫ୍ୟୁ,’ ‘ଏକ ବିଗ୍ରହହୀନ ମନ୍ଦିର ସାମ୍ନାରେ ମାଲ୍ ବୋଝେଇ ଲରିଟାର କିଛି ସମୟ ଅଟକି ଯାଇଥିବାର ଦୃଶ୍ୟ’, ‘ଜୀବନ ଯାପନ’ ଭଳି ଗଳ୍ପ ଗୁଡ଼ିକରେ ଏଇ ଗୁଣଟି ସ୍ପଷ୍ଟ । ଏହାକୁ ହିଁ ବୋଧେ ସେ ‘ମଣିଷ ଭିତରର ଭାଷା’ ‘ମୋ ଭିତରେ ଫୁଲର ଚାଷ’ (ପେପରୱେଟ୍) ବୋଲି କହୁଛି । କହ୍ନେଇର ମୁହଁରେ ହତାଶା ମୁଁ କେବେ ଦେଖି ନାହିଁ । ସେ ନିଜେ ହସୁଥାଏ ସବୁବେଳେ ଏବଂ ବିଭିନ୍ନ

ଲେଖକ ଓ ଲେଖା ସମ୍ପର୍କରେ ସ୍ବଚ୍ଛଭୁସା ପୂର୍ଣ୍ଣ ମନ୍ତବ୍ୟ କରି ପାଖରେ ଥିବା ଲୋକଙ୍କୁ ହସାଏ । ମଣିଷ ଜୀବନ ପ୍ରତି ନିବଡ଼ ଆକର୍ଷଣ ଯୋଗୁ କଣ୍ଠହୀନ ବୋଧେ ଲୁଚେଇ ଲୁଚେଇ ତା'ର ଦୈହିକ ଯନ୍ତ୍ରଣା ସହି ଯାଉଥିଲା ।

ଆମେ ସମସ୍ତେ ଯେଉଁମାନେ ତତେ ଚିହ୍ନିଥିଲୁ, ଜାଣିଥିଲୁ, ଭଲପାଉଥିଲୁ, ତତେ ଆମର ଆୟୁଷ ଦେଇ ଦେଲେ ବି ଯଦି ଫେରି ଆସିପାରନ୍ତୁ ! ଅଥଚ ଆମେ ଏଇ ନିଷ୍ଠୁର ସତ୍ୟଟାକୁ ଜାଣୁ ଯେ ତା' ସମ୍ଭବ ନୁହେଁ ।

ଭଗବାନଙ୍କୁ ମୁଁ ପ୍ରାର୍ଥନା କରୁଚି ( ତୁ ବି ତାଙ୍କୁ କହ) ତତେ ପୁଣିଥରେ ସ୍ୱାସ୍ଥ୍ୟବାନ୍ ଦୀର୍ଘଜୀବୀ କରି ଏ ସୁନ୍ଦର ପୃଥିବୀକୁ ପଠାନ୍ତୁ । ଆଉ ତୋ ଜୀବନ କାଳ ମଧ୍ୟରେ ଯେତେ ସବୁ ଦୁଃଖ ଯନ୍ତ୍ରଣା ଅନୁଭୂତ ନ ହୋଇ ରହିଗଲା ତା' ସେ ଆମକୁ ଦେଇ ଦିଅନ୍ତୁ ।



# କଟେହ୍ନର ସ୍ମରଣେ

• ଜଗଦୀଶ ମହାନ୍ତି

କହ୍ନାଇରେ—କ୍ଷଣେ ନ ଦେଖିଲେ ତୋତେ ମୂର୍ଛି
ପିତା ଲାଗେ ଭୁଞ୍ଜିବା ଅନ୍ନ ମୋ ତୋହ ପାଇଁ ।
× ×
ଅକ୍ରୁର ଆଇଛି କଂସ ନେବ ତୋତେ ଧରି
ତୋ ବନ୍ଧୁନେ କପଟ ରଖିବ ପ୍ରାଣ ଧରି
ଧେନୁ ଯାହା ଦେଖି ଝଣ୍ଟେ ଫେରିବୁ କହ ଦେଉ ତୁହି ॥
( ପୁରାତନ କବିଙ୍କ ରଚନାରୁ )

ଚିଠି ନଂ ୧

ପ୍ରିୟ ଜଗଦୀଶ !

ନବ ବର୍ଷର ଶୁଭେଚ୍ଛା ନେବ । ମୋର ଆନ୍ତରିକ ଅଭିନନ୍ଦନ ଗ୍ରହଣ କରିବ 'ପ୍ଲାଟୋଙ୍କ ଆଟଲାଣ୍ଟିକ୍' ଆବିଷ୍କାର ପାଇଁ । ମୁଁ ଏବେ କଟକ ଯାଇ ତୁମକୁ ନ ପାଇ ଫେରି ଆସିଲି । ଶୁଣିଲି ଏଇ ଠିକଣାରେ ତମେ ଚିଠି ପାଇବ ।

ଜଗଦୀଶ, ଗଳ୍ପଟି ଚମତ୍କାର । ବ୍ୟକ୍ତିଗତ ଭାବରେ ମୁଁ ମୁଗ୍ଧ ଓ କ୍ଷତଗ୍ରସ୍ତ । କାରଣ ଏଇ ଧରଣର ବା ଏଇ ଗଳ୍ପର ପାଖାପାଖି ଗଳ୍ପଟିଏ ମୋ ଭିତରୁ ଉଠି ଆସୁଥିଲା, ମୁଁ ଅନୁଭବ କରୁଥିଲି । ପ୍ରକୃତରେ ମୋତେ ସେଇ ଗପ ଭଲ ଲାଗେ ଯେଉଁ ଗପ, ମୁଁ ଭାବେ, ମୁଁ ଲେଖି ପାରିଥାନ୍ତି । ତେଣୁ ଏଇ ଗପଟି ଯେମିତି ମୋର ଗପ । ମୋର ହୃଦୟର ସମସ୍ତ ଶ୍ରଦ୍ଧା ତୁମ ପାଇଁ । ସାକ୍ଷାତ ହେଲେ ପ୍ରେମିକା ଭଳି ଆଲିଙ୍ଗନ ଚୁମ୍ବନାଦି କରି ପକେଇ ଥାନ୍ତି ବୋଧହୁଏ ।

କେମିତି ଅଛ ? ପାଞ୍ଚ ତାରିଖ ମଧ୍ୟରେ ମୋ ଠିକଣାରେ ଗଳ୍ପ ଗୋଟିଏ ପଠାଅ । ନୂତନ ଓ ଭଲ ଗଳ୍ପ । ମିଠୁ ସମ୍ପାଦନାରେ ଗଳ୍ପ ସଂକଳନ 'ଅନୁଶୀଳନ' ପାଇଁ । ଆଉ ସବୁ ସାକ୍ଷାତରେ । ସିଂହଭୂମରେ ଯାଇ ରହୁଛ ବୋଲି ଦେଖିଲି ଓ ଶୁଣିଲି ।

ପ୍ରୀତ୍ୟନ୍ତେ—

କହ୍ନେଇ,
ଏ: ଜି: ଅଫିସ, ଭୁବନେଶ୍ୱର ।

ଏଇଟି କଟ୍କରୁ ମୋ ପାଖକୁ ପ୍ରଥମ ଚିଠି । ଚିଠିରେ କୌଣସି ତାରିଖ ନାହିଁ । ଚିଠିଟି '୪୭, ଆଇନ କଲେଜ ଗ୍ରାଣ୍ଡବାଗ' ଠିକଣାରେ କବି ସଦାଶିବ ଦାଶଙ୍କ ପାଖକୁ ଆସିଥିଲା । ଏ ଚିଠି ତେଣେ ତାଙ୍କୁ ଉଦ୍ଦେଶ୍ୟ କରି ଲେଖା ହୋଇଥିଲା—

ସଦାଶିବ ବାବୁ,

Congratulation ! କେମିତି ଅଛନ୍ତି ? ଯଦି ଜଗନ୍ନାଥ କଟକରେ ଥାଏ ତ ଦେବେ । ନ ହେଲେ ତା' ଠିକଣାରେ redirect କରି ଦେବେ । ପ୍ରସନ୍ନ ବାବୁଙ୍କୁ ଶୁଭେଚ୍ଛା—

କ. ଲ. ଦାସ

## ଚିଠି ନଂ ୨

ଜଗନ୍ନାଥ !

୧୭ । ୧୦ । ୭୪

ଆଜ ତୁମ ଚିଠି ପାଇଲି । ଆଗରୁ ବି ପାଇଥିଲି । ବିଶେଷ ସମ୍ବାଦ E. S. I. S. ରେ ତୁମର ଚାକିରି ହୋଇ ଯାଇଛି । ମାନେ, ତୁମର posting ରାଜଗାଙ୍ଗପୁରରେ ହୋଇଛି । ତେଣୁ ଅଭିନନ୍ଦନ ।

ତୁମ ଚିଠି ପାଇବା ମାତ୍ରେ ମୁଁ ଓ ମିହିର ତୁମ ନିର୍ଦ୍ଧାରିତ ଅଫିସ ଗଲୁ । ସେଠାରେ ଚିଠି ଗୁଡ଼ା issue ହେଉଥିଲା, ଏବଂ ତୁମକୁ ଲିଖିତ ଚିଠି ଆମ୍ଭେ ସ୍ୱଚକ୍ଷୁରେ ସନ୍ଦର୍ଶନ କରି ବେଶ୍ ମାନେ ବେଶ୍ ଉତ୍‌ଫୁଲ୍ଲ ହେଲୁ ।

ଚାକିରିଟି ହେଲା । କେବେ join ଇତ୍ୟାଦି କରୁଛ ଜଣେଇବ । ତା'ପରେ ଭୁବନେଶ୍ୱର କିଂବା ଅନ୍ୟ କୌଣସି township କୁ ଆସିବା ପାଇଁ ଚେଷ୍ଟା କର । ଅବଶ୍ୟ ରାଜଗାଙ୍ଗପୁରରେ ସାହିତ୍ୟ ଭଲ ହେବ । କିନ୍ତୁ ଏଇ ଓଡ଼ିଆ ସାହିତ୍ୟ ପାଇଁ 'ଯୋଗାଯୋଗ' ଜାଣିଛ ପଦାର୍ଥ ଦରକାର ।

ତମ ଚିଠି ଅବଶ୍ୟ ଆଉ ଗୋଟିଏ ଦିନ ତେଲରେ ପଡ଼ିଥିଲେ ମୋତେ ତୁଇଁ ପାରି ନଥାନ୍ତା । କାଳ ପ୍ରମାଣେ ମୁଁ ଖସି ଯାଇଥାନ୍ତି । ମାନେ,ଏଇ ସପ୍ତରେ ବାଲେଶ୍ୱର ମୁହାଁ ହେଉଛି । ଫେରିବ ୨୮ରେ । 'ଅରଣ୍ୟ'ଙ୍କୁ ଦେଖିଛି । ସେମାନେ ଅବଶ୍ୟ ତୁମପାଇଁ ଅପେକ୍ଷା କରିଥିଲେ । ମୁଁ ପୂଜା ସଂଖ୍ୟା ନବରବି, ଝଙ୍କାର, ମାନସ, ଆସନ୍ତାକାଲି ଇତ୍ୟାଦି ଆଖି

ଏନ୍ଲାର୍ଜମେଣ୍ଟ ମାତ୍ର । କେବଳ ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଆଉ କାହାର ଲେଖା ମନକୁ ପାଉନ । ମୁଁ ମୁକ୍ତାବେଳେ ଯାଇ ପାରୁନ । ମଝରେ କେବେ । 'ବୋଧହୁଏ ବର୍ଷନ୍ତରେ ଯିବ, ଯେବେ ସେ ଅଞ୍ଚଳରେ ଶାଳବଣ ଫୁଲ ଧରି ଅପେକ୍ଷା କରୁଥିବ । ପୂଜାରେ କିଛି ଅଂଶ 'କଟାଇବା' ଆଉ କିଛି 'ଛଡାଇବା' ନେଇ ଟଳବାକୁ ହେବ । ବାଲେଶ୍ୱର ଆଉ ଗାଁ । ଲେଖାଲେଖି କିଛି କିଛି ଖତ୍ରସ । ଏଇ ପାଖା ପାଖି ପତ୍ରିକାଙ୍କର ଗୁହ୍ଲଦା ମେଣ୍ଟାଇବା ପାଇଁ ଏକ ପ୍ରକାର ଅଙ୍କନ ପ୍ରବେଶରେ ବ୍ରମନୋଦ୍ୟୋଗ । 'ଯୌତୁକ' ଗ୍ରନ୍ଥଟା ଛାପିଇ ଦେଇଛି । ଖବର କିଛି ମିଳନି । ସେ ଗଦାରେ ଚଢ଼ିଛି କଷ୍ଟପ୍ଲ । ତମ ସେପାଖେ ତ ପ୍ରଫୁଲ୍ଲ ତ୍ରିପାଠୀ ଅଛନ୍ତି । ଯଦି ଦେଖା ହୁଏ କହିବ ଯେ ମୁଁ କ୍ଷମା ପ୍ରାର୍ଥୀ । ଗତ ପ୍ରଚେଷ୍ଟ ପାଣେନ୍ 'ଝଙ୍କାର'ରେ ତାଙ୍କ ଗଳ୍ପ ଅବଶ୍ୟ ଭଲ ହୋଇଛି । ଓ: ଯୁ: ଲେ: ସ: ଖବର କିଛି ନାହିଁ । କୁଞ୍ଜ ଘାଙ୍କ ତାଙ୍କ ଡ୍ରାମା ପାଇଁ ବ୍ୟସ୍ତ । ୩, ୪, ୫, ୬, ୭ ରୁ ଉତ୍କଳ ମଣ୍ଡପରେ । ଆସନ୍ତୁ ନାହିଁ ? ବୁଢ଼ିଆ ହୋଇଛୁ କାନ୍ତ । ମିତ୍ରର ପୂର୍ବପତ୍ର, ସ୍ନେହ ବ ଏଇଠି ଟିକଏ ନେଇଛି । ଖବର ଜଣାଇବ । ଆପାତତଃ ଭଲ । ଆସ କେବେ ।

ସ୍ନେହଧନ୍ୟ — କୃଷ୍ଣହେଲ

ଏ ଚିଠିଟି ଗଜରକେଲ ଠିକଣାରେ ମୋ ପାଖକୁ ଲେଖା ହୋଇଥିଲା । ଚିଠିରେ ଲେଖା ପାଇଥିବା ମିତ୍ରର ହୃଦୟଙ୍ଗମ ଏ· କ· ଅଫିସର ବନ୍ଧୁ ମିତ୍ରର ପଟ୍ଟନାୟକ । 'ଅରଣ୍ୟ' ନାଁରେ ସେତେବେଳେ ରୋଟେ କଟିଲ ମ୍ୟାଗାଜିନ ପ୍ରକାଶ ପାଉଥିଲା ବିଟ୍‌କରୁ । ମୁଁ ଲେଖା ନେଇ ପାରି ନଥିଲି, ତାଙ୍କ ଅନୁରୋଧ ସତ୍ତ୍ୱେ, ଭାର୍ଯ୍ୟ ବ୍ୟସ୍ତ ଥାଇ । କହ୍ନେଇର ବନ୍ଧୁ ଜଙ୍ଗଲ ଥିଲା ଧଳଭୂମି (ସିଂହଭୂମି) ଯିବା ପାଇଁ, ଆମ ଗାଁ ଆଡ଼େ । ଫଳେ ମୋର 'ନାସ୍ତିକା ଏକ ଅଶ୍ଳୀଳଗଳ୍ପ' ପଢ଼ି ତାଙ୍କ ଇଚ୍ଛା ଆହୁରି ବଢ଼ି ପାଇଥିଲା । ଏ ଚିଠିଟି ଅବଶ୍ୟ ମୋର ଗଳ୍ପ ପଢ଼ିବା ପୂର୍ବରୁ । କହ୍ନେଇ ସାଙ୍ଗରେ ଥରେ ଆଲୋଚନା ପ୍ରସଙ୍ଗରେ ଆମର କଥାବାର୍ତ୍ତା ପଡ଼ିଥିଲା, ସମସ୍ତ କଟାଇବା ପ୍ରକୃତ ଓଡ଼ିଆ ନା ସମସ୍ତ ଛଡାଇବା ? ସେଇ ଆଲୋଚନାର ସୂତ୍ର ଧରି ସେ ଚିଠିରେ ସେ ଲେଖିଥିଲେ । 'ଯୌତୁକ' ନାଁରେ ଉପନ୍ୟାସଟିଏ ଓଡ଼ିଶା ସରକାରଙ୍କ ଲୋକ-ସମ୍ପର୍କ ବିଭାଗକୁ ଦେଇଥିଲେ ପ୍ରକାଶ ପାଇଁ । ସରକାର ମଧ୍ୟ ନିର୍ବାଚିତ ଉପନ୍ୟାସର ଲେଖକଙ୍କୁ ୫୦୦ କିମ୍ବା ହଜାରେ ଟଙ୍କା (ଠିକ ମନେ ନାହିଁ) ଦେବେ ବୋଲି ଘୋଷଣା କରିଥିଲେ । ସେ ଘୋଷଣା କାର୍ଯ୍ୟକାରୀ ହୋଇଛି କି ନାହିଁ ମୋତେ ଜଣା ନାହିଁ । ପ୍ରଫୁଲ୍ଲ ତ୍ରିପାଠୀ 'ଝଙ୍କାର'ର ନୂତନ କଲେବର କରି ବାହାର କରିଥିଲେ । କହ୍ନେଇ ଗଳ୍ପ ପଢ଼ି ପାରି ନଥିଲେ — କୃଷ୍ଣ ଘାଇ, ଅର୍ଥାତ୍ କୃଷ୍ଣ ପ୍ରସାଦ

ସେତେବେଳେ ବ୍ୟସ୍ତ ଥିଲେ ତାଙ୍କର 'ବତାସ୍ ବଜାଦତ୍ୟ' ନାଟକକୁ ମଞ୍ଚସ୍ଥ କରିବାର ଝାମେଲାରେ ।

ଚିଠି ନଂ ୩

ଜଗପାଣ !                                                                        ୧୭ । ୧୨

ତୁମର ୮ । ୧୨ ର ଚିଠି ଆଜ ମାନେ ବର୍ତ୍ତମାନ ପାଇଲି । ଦେଖ ମୋତେ ଭୁଲ ବୁଝ ନାହିଁ । ଏଇ ଚିଠିର ଠିକଣା ଲେଖି ରଖିଛି ମାସେହେଲା । ଅଥଚ ଚିଠିରେ ଅକ୍ଷର ଲେଖି ନାହିଁ । ଅବଶ୍ୟ ସମସ୍ତ ସୁବିଧା ଅନୁସାରେ ମୁଁ ତମକୁ ମନେ ମନେ ହଜାରେ ଚିଠି ଲେଖିଛି । ସେ ଗୁଡ଼ା ତୁମେ କଣ ପାଇଥିବ ? ଆଗରୁ ମୁଁ ଅନେକ ଚିଠି ଲେଖୁଥିଲି । ବେଶୀ ଲେଖୁଥିଲି ସୁନ୍ଦରୀ ଝିଅମାନଙ୍କ ପାଖକୁ । ଏବେ ଆଶ୍ଚର୍ଯ୍ୟଜନକ ଭାବେ ସେ ଧନ୍ଦା ବନ୍ଦ ହେଇଗଲାଣି । ଏଇ ମନେକର ଗୋଟିଏ ପ୍ରେମିକାର ଲମ୍ବା ଚିଠି ଓ ଫଟୋ ପାଇଛି । ମାତ୍ର, ମାସେ ହେଇଗଲା ତାକୁ ଲେଖି ପାରିନ । ଉନ ଗତ ତା' ପାଇଁ ଲକ୍ଷ ଲକ୍ଷ ସଲିଲକ ବାୟୁ ମଣ୍ଡଳରେ ପଠାଇ ଦେଉଛି । ତୁମ ଚିଠିରୁ ବୁଝୁଛି ତୁମେ ସେଠାରେ ବହୁତ ନିଃସଙ୍ଗ ହେଇ ପଡ଼ୁଛ ।

× × ×

ତୁମ ଗପ ଭଲ ଲାଗିଲା । 'ଝଂକାର' ରେ । 'ଅକ୍ଷର' ପଢ଼ି ନାହିଁ । ଝଙ୍କାରରେ ସତ୍ୟ ମିଶ୍ର ଭଲ ଲେଖିଛି । ଆଉ କ'ଣ ଲେଖିଲ ? ମୁଁ ଦୁଇଟା ଗଳ୍ପ ଲେଖିଛି । କଟକ ଭୁବନେଶ୍ୱରରେ ଅନେକ ଖୁଚୁରା ସାହିତ୍ୟ ହେଉଛି, ଯେଉଁଥିରେ ମୁଁ ଖୁବ୍ ବଡ଼ଭୁକ୍ତ । ଏମିତି ସମରେନ୍ଦ୍ରପ୍ରସାଦ ଦାସ ଇତ୍ୟାଦି ଜଣେ ଦୁ'ଜଣଙ୍କ ସହ ଯାହା ସାହିତ୍ୟିକ ଗପ । ଏବେ ବାଲେଶ୍ୱର ମହିଳା କଲେଜ ବାର୍ଷିକୋତ୍ସବକୁ ଯାଇଥିଲି । ବେଶ ଜମିଲା ଅନେକ ସୁନ୍ଦରୀ ନାରୀ ଗହଣରେ । କୁଞ୍ଜ ଭାଇ ଅଡ୍ଡ଼ା ପାର୍ଟିରେ ବାହାରେ ବାହାରେ । ତୁମର ଅନ୍ୟ ଦୁ'ଜଣ ବନ୍ଧୁ ଯାଇଛନ୍ତି test ଦେଖିବା ପାଇଁ । ମିଛରେ ସପ୍ତାହେ ହେଲା କଲିକତା ବୁଲି ଯାଇଛି । ତେଣୁ ମୁଁ ତ ଭୀଷଣ ନିଃସଙ୍ଗ । ଏକା ଏକା ରାତି ୧୨ । ୧ଟା ଯାଏଁ ରାସ୍ତା ଉପରେ ଘୁରି ବୁଲୁଛି । କୌଣସି ଏକ ଶସ୍ତା ହୋଟେଲରେ ଗଣ୍ଡେ ଖାଇ ଦୁଃସ୍ୱପ୍ନର ବନ୍ଧଣାରେ ଘୋଟେଇ ଯାଉଛି । ଜୀବନ ତ ଏଇଆ । ପେଟ ରୋଗ ଚକ୍ଷୁବୃଦ୍ଧି ହାରରେ ମୁଣ୍ଡ ଟେକୁଛି । ସାଙ୍ଗ ସାଥୀ ପ୍ରେମିକା ଶୁଭେଚ୍ଛୁ ସବୁ ଦୂରର ସୂର୍ଯ୍ୟାସ୍ତ ପରି ସୁନ୍ଦର ଅଥଚ

ସ୍ଥାନ । ଅପ୍ରକାଶିତ । ଏ ଦୁନିଆରେ ସାହିତ୍ୟର ମାନେ କଣ୍ଟ ନାହିଁ ଜାଣିପୁ ଚନ୍ଦ୍ରା ମୋତେ ଯାନ ଦେଉଛି ନମେ । ମନ୍ଦିରେ ଟିକିଏ ନୂଆ ଧରଣର କଣ୍ଟ କାର୍ଯ୍ୟ ପାଇଁ ପ୍ରସ୍ତୁତ ହେଉଥିଲି । ଏବେ ତା ତ ନାହିଁ ।

ଆଚ୍ଛା, ମିତ୍ତିରର ତ ତୁମକୁ ଚିଠି ଲେଖି ଥିଲା । ବୋଧହୁଏ ପାଇଥିବ । ଚିଠି ଦେବ । ଏସବୁ ଆଳସ୍ୟ ଭାଂଗି ତୁମ ପାଇଁ ନଷ୍ଟମିତ ହେବ ।

ଶୁଭେଚ୍ଛାନ୍ତେ—
କନ୍ହେଇ

## ଚିଠି ନଂ ୪

ଜଗବନ୍ଧୁ !

ଅନେକ ଦିନ ତଳେ ତୁମଠାରୁ ଚିଠି ଖଣ୍ଡିକ ପାଇଥିଲି । ତାପରେ ତୁମେ ଆସିବ ବୋଲି ଅପେକ୍ଷା କରି କରି ଚିଠି ଲେଖିବା ଜଞ୍ଜାଳ ଏଡ଼ାଇ ଯାଇଥିଲି । ତୁମର ଗପ ସବୁ ପଢ଼ୁଛି ଏବଂ ସେଥିରୁ ତୁମ ସୁଖ ଦୁଃଖ, ନିଃସଙ୍ଗତା ଏବଂ ଅସହାୟତା ସବୁ ଚଢ଼େଇ ମାଟିରୁ ଖାଦ୍ୟ ଖୁଣ୍ଟି ନେଲା ଭଳି ମୁଁ ଖୁଣ୍ଟି ନେଉଥିଲି । ତୁମେ ବୋଧହୁଏ, ବୋଧହୁଏ କାହିଁକି ନିଶ୍ଚୟ କଟକକୁ ଆସୁଛ । ଆସିଲା ବେଳେ ତୁମ ପାଣ୍ଡୁଲିପି ଗୁଡ଼ା ନେଇ ଆସିବ । ଆସିଲେ ଭୁବନେଶ୍ୱରରେ ରହିବ । ଯଦ୍ଦୃତ ଏଥର ଆମେ ଦୁହେଁ ମିଶାଇ ଗୋଟିଏ ବହି କରିବା । ଗୋଟିଏ ପଟ ତୁମର ଆଉ ଗୋଟିଏ ପଟ ମୋର । ମୋର ଧାରଣା ଗଳ୍ପରେ ଏଇ ସମୟରେ କେବଳ ତୁମେ ଆଉ ମୁଁ ବେଶ୍ ଆଗରେ ମାଡ଼ି ଗଲେଛୁ । ଏ ଧାରଣା କେବଳ ମୋର ନୁହେଁ, ଅନ୍ୟ ମାନଙ୍କର ବି । ତେଣୁ ଆମ ଦୁହିଁଙ୍କ ଗଳ୍ପକୁ ନେଇ ବହିଟିଏ କଲେ ଏଇ ସମସ୍ୟାକୁ ଧରି ନେଇ ହେବ । ଆସିଲେ ଯୌଥ ଭାବରେ publisher ଚେଷ୍ଟା କରାଯିବ । ସେଥିପାଇଁ ମୋର ଏ ଚିଠିର ଅବତାରଣା । କୌଣସି ଏକ publisherକୁ ଏଇ ଅବକାଶରେ ପଶେଇବାକୁ ପଡ଼ିବ । ତୁମେ ଆସ । ବ୍ୟବସ୍ଥା କରାଯିବ । ଅପେକ୍ଷାରେ—

କନ୍ହେଇ

ମୋ ପାଖକୁ କନ୍ହେଇର ଏଇଟି ଶେଷ ଚିଠି । ଚିଠିରେ ଠିକଣା ଲେଖା ନଥିଲେ ମଧ୍ୟ, ୭୫ ର ବର୍ଷର ପୂର୍ବରୁ ଚିଠିଟି ଲେଖା ହୋଇଛି । ଏ ଚିଠି ସାଙ୍ଗରେ ମିତ୍ତିରଙ୍କର ବି ଗୋଟେ ଚିଠି ଆସିଥିଲା । ତା ୮ । ୧୨ ରେ ଲେଖା ହୋଇଥିଲା ।

ଏ ଚିଠି ରାଜଗାଙ୍ଗପୁରରେ ପହଞ୍ଚିବା ପୂର୍ବରୁ ମୁଁ ବମ୍ବେରେ ସାକ୍ଷାତ କରି ଦେଇ ଯାଇଥିଲି କଟକରେ । ସେଇଠି ସେ ମୋତେ ପୁଣି ଥରେ ଏ ପ୍ରସ୍ତାବ ଦେଇଥାନ୍ତି । କିନ୍ତୁ ପାଖରେ ପାଣ୍ଡୁଲିପି ନଥିବାରୁ ଆଉ ବେଶୀ ଚର୍ଚ୍ଚା କରିନ ସମ୍ଭବ ହେଲାନି । ମୁଁ କଥା ଦେଇଥିଲି କହ୍ନେଇଙ୍କୁ ଓ ମୋର ଏକାଠି ଗୋଟିଏ ଗଳ୍ପ ସଂକଳନ ବାହାରିବ । କଟକରୁ ଫେରି ଏ ଚିଠିଟି ପାଇଥିଲି । କହ୍ନେଇର ସେ ଇଚ୍ଛାଟି ଏଯାଏଁ ପୂରଣ ହୋଇ ପାରିଲାନି ।

ଏବେ ବି ସ୍ପଷ୍ଟ ମନେ ପଡ଼େ ଆମ୍ବୁଲାନ୍ସରୁ ଦେଖାଯାଇ ଆଣୁଥିବା କହ୍ନେଇର ବିଷାଦଭରା ହସ ଟିକକ । ଜଳନ ତା ୨୭ ତାରିଖରେ, ତା'ର ମାନେ ଶେଷ ସାକ୍ଷାତର ମୁହୂର୍ତ୍ତଗୁଡ଼ିକ । ସେଦିନ ମୁଁ ଭୁବନେଶ୍ୱର ପହଞ୍ଚିଥାଏ । ବମ୍ବେଷ୍ଟାଣ୍ଡରୁ ଓହ୍ଲାଇ ଏ. ଜି. କଲୋନିରେ କହ୍ନେଇର ମେସ୍‌କୁ ଯିବ ଭାବିଥିଲି । କିନ୍ତୁ ପରେ ଭାବିଲି, ତାକୁ ଦେଖା କରିବି ତା'ର ଅଫିସରେ । ତେଣୁ, ୧ ନମ୍ବର ୟୁନିଟ୍‌ର ଶୈଳଅପାଙ୍କ (ଶ୍ରୀମତୀ ଶୈଳବାଳା ମହାନ୍ତି, ସମ୍ପାଦିକା, ଚିତ୍ରକ) ପାଖକୁ ଗଲି । ତାଙ୍କ ଘରର ଗେଟ୍ ଖୋଲିଲି କି ନାହିଁ ଶୈଳ ଅପା ବାହାରି ଆସିଲେ ବ୍ୟସ୍ତ ଭାବରେ ! ଖୁବ୍ ବିଷଣ୍ଣ ଓ ଚିନ୍ତାଗ୍ରସ୍ତ ଦେଖା ଯାଉଥାଏ ତାଙ୍କ ମୁହଁ । କହିଲେ ଜଗଦୀଶବାବୁ, କହ୍ନେଇ ଦେହ ଖୁବ୍‌ଶୀ ଅସୁସ୍ଥ । ଆପଣ ଏ ମୁହୂର୍ତ୍ତରେ ଆସି ଖୁବ୍ ଭଲ କରିଛନ୍ତି ।

କହ୍ନେଇର ଦେହ ଖୁବ୍ ଅସୁସ୍ଥ ? କଣ ହୋଇଛି ? ଶୁଣିଲି ଦିଅ ଦିନ ତଳେ ସେ ଉଣେଇଶ ବେଳେ ଭାତ ଖାଇବାକୁ ଗଲାବେଳେ ତାର ଛାତିରେ ଟିକିଏ ଦରଜ ଅନୁଭବ କଲା । ପରେ ସେ ବ୍ୟଥାଟି ବଢ଼ି ଚାଲିଲା ଆଜ ଯାଏ (୨୭।୭) ପ୍ରାୟ ଓ ଛଅ ଦିନ ହେବ ତାର ଖୁବ୍ ଜ୍ୱର । କେବେ କେବେ ୧୦୪ ରୁ ୧୦୫ ଡିଗ୍ରୀ ଫାରେନ୍ ହାଇଟ୍ ପର୍ଯ୍ୟନ୍ତ ବଢ଼ିଯାଉଛି ।

ଶୁଣିଲି, ଏତେ ଦିନ ଯାଏ ପ୍ରାଇଭେଟ ଡାକ୍ତର ଓ ହୋମିଓ-ପ୍ୟାଥିରେ ଚିକିତ୍ସା ଚାଲିଥିଲା । ୧ ନମ୍ବର ୟୁନିଟ୍ ହସ୍ପିଟାଲରେ ଡାକ୍ତରମାନେ ଅବୋ କହ୍ନେଇର ଚିକିତ୍ସା ପ୍ରତି ଦୃଷ୍ଟି ଦେଲେନି କିମ୍ବା ଓ୍ୱାର୍ଡରେ ଭର୍ତ୍ତି କରାଇବାକୁ ମନା କରି ଦେଲେ, "ମାନସିକ ରୋଗୀ" ଆଖ୍ୟା ଦେଇ । ଶେଷରେ ଶୈଳ ଅପାଙ୍କ ସ୍ୱାମୀ ଉପର ମହଲରୁ ଧରାଧରି କରି, ସୁପ ପକାଇ, ସେଇ ହସ୍ପିଟାଲରେ ଅକ୍ସିଜେନ କରିବାର ବ୍ୟବସ୍ଥା କରିଛନ୍ତି ।

ଶୈଳ ଅପାଙ୍କ ସାଙ୍ଗରେ ଦୁହେଁ ଆସିଲୁ ଚତ୍ତରଞ୍ଜନ ୧ ନମ୍ବର ହସ୍ପିଟାଲକୁ । ଆମ ସାଙ୍ଗରେ ଗୋଟେ ଆମ୍ବୁଲାନ୍ସ ପଶିଲା ହସ୍ପିଟାଲ ହତାକୁ । ତା ଭିତରୁ ମିହିର ବାହାରି ଆସିଲା । ଜନ୍ଦେଇ ଶୋଇଥାଏ ଆମ୍ବୁଲାନ୍ସ ଭିତରେ ଦେହରେ ତାତି ଓ ଗୁଣ୍ଡରେ ବ୍ୟଥା ନେଇ । ମୋତେ ଦେଖି ହସିଲା, ଅଷ୍ଟାବକ୍ରୀ ହସ । ମୋ ହାତକୁ ମୁଠେଇ ଧରି କହିଲା "ଜଗନ୍ନାଥ ! ତୁମେ ସତରେ ଆସିଛ ? ମୁଁ ଭଲ ନହେଲା ପର୍ଯ୍ୟନ୍ତ ତୁମେ ମୋ ପାଖରେ ଥାଅ ।"

ଜନ୍ଦେଇର କ'ଣ ହୋଇଛି ଡାକ୍ତରମାନେ ଧରି ପାରିଲେ ନାହିଁ । ରକ୍ତରେ ମ୍ୟାଲେରିଆ ପ୍ୟାରାସାଇଟ୍ ନାହିଁ । ତେଣୁ ଅନୁମାନ କଲେ ଏଣ୍ଟେରିକ୍ ଜ୍ୱର ହୋଇ ଥିବ ହୁଏତ । ତାକୁ ଭର୍ତ୍ତି କରାଗଲା ମେଡିକାଲ ଓ୍ୱାର୍ଡରେ କିନ୍ତୁ ଖଟ ମିଳିଲାନି । ତଳେ ବିଛଣା କରାହେଲା । ପରେ, ହରପ୍ରସାଦର ଜଣେ ରୋଗୀ (ଯେ ସି. ଆର. ପି.ର ଲୋକ ଥିଲେ) ନିଜ ଖଟଟି ଛାଡ଼ି ଦେଲେ ଜନ୍ଦେଇ ପାଇଁ । ଡାକ୍ତର କହିଲେ reólar capsule କିଣି ଆଣିବା ପାଇଁ ବଜାରରୁ । କୃଷ୍ଣ ଗୁପ୍ତ କିଣି ଆଣିଲେ ସେ ଔଷଧ । ଗରମ ଦୁଧର ବ୍ୟବସ୍ଥା କରାଗଲା । ଦୁଧ ଓ କ୍ୟାପସୁଲ ଖାଇଲା ଜନ୍ଦେଇ ଦିନ ବାରଟାରେ ।

ତା'ପରେ ତା'ର ଗଳା ପଡ଼ିଗଲା । ପାଟିରୁ ଶବ୍ଦ ବାହାରିଲା ନାହିଁ । ଡାକ୍ତରଙ୍କୁ ଡାକିଲୁ । ସେ କହିଲେ—ଏ କିଛି ନୁହେଁ, କେବଳ ଲାରେଞ୍ଜାଇଟିସ୍ । ବେଞ୍ଜିନ ଇନ ହେଲେସନ ନେବା ପାଇଁ । ରାଜଧାନୀର ଡାକ୍ତରଖାନାର ମେଡିକାଲ ଓ୍ୱାର୍ଡରେ ଷ୍ଟୋଭ ଭଲ ନଥିବାରୁ କେରୋସିନ ଅଭାବରୁ ବେଞ୍ଜିନ ଇନ ହେଲେସନର ବ୍ୟବସ୍ଥା ହୋଇ ପାରିଲାନି । ବହୁତ ଦୃଢ଼ାବୃନ୍ଦରେ ୬ଟା ବେଳେ ଯଦି ଇନହେଲେସନର କୌଣସି ପ୍ରକାରେ ବ୍ୟବସ୍ଥା କରି ହେଲା, ପାଣି ଗରମ ନ ହେଉ ଥିବାରୁ ବାଷ୍ପ ବାହାରିଲାନି ଓ ଇନହେଲେସନ ନେବା ବ୍ୟବସ୍ଥା ହୋଇ ପାରିଲାନି ।

ଏଇ ସମୟରେ ପ୍ରକୃତ ପରିଶ୍ରମ କରିଛନ୍ତି ମିହିର ପଟ୍ଟନାୟକ, କୃଷ୍ଣ ଗୁପ୍ତ, ଶୈଳବାଳା ମହାନ୍ତି ଓ ଏ. ଜି. ଅଫିସରେ କାମ କରୁଥିବା ଦି'ଜଣ ଭଦ୍ର ମହିଳା—ଯାହାଙ୍କର ନାଁ ମୁଁ ଜାଣେନି । ଜନ୍ଦେଇ ପାଖରେ ବସି ଉକ୍ତ ସେମାନେ ନିଜ ଭାଇ ଭଉଣୀ, ମା ବାପ ଅପେକ୍ଷା ଅଧିକ ସେବା କରିଛନ୍ତି । ଶୈଳବାଳା ମହାନ୍ତିଙ୍କର ସ୍ୱାମୀଙ୍କର ସହଯୋଗ ମଧ୍ୟ ଅବିସ୍ମରଣୀୟ ।

ରାତି ଆଠଟା ବେଳେ ଜନ୍‌ହେଇକୁ ସେଇ କ୍ୟାପସୁଲ ଖୁଆଇ ଦେବାକୁ ଡାକ୍ତର କହିଲେ । କ୍ୟାପସୁଲ ଖାଇବା କଥା ଥିଲା ସନ୍ଧ୍ୟା ୬ଟା ବେଳେ । କିନ୍ତୁ ଜନ୍‌ହେଇର ଗଳା ଫୁଲିଗଲା ପରେ ପାଣି ପିଇବାକୁ ଯନ୍ତ୍ରଣା ହେଉଥିଲା ଓ କ୍ୟାପସୁଲ ଖାଇବାକୁ ସେ ଅମଙ୍ଗ ହେଉଥିଲା । ମୁଁ ତାକୁ ବହୁତ ବୁଝାଇ ସୁଝାଇ ପାଟିରେ କ୍ୟାପସୁଲ ଗୁଞ୍ଜି ଦେଇ ଗଳା ପାଖରେ ଜୋର କରି ମୁନ୍ଦେ ପାଣି ପିଆଇ ଦେଲି । କ୍ୟାପସୁଲ ଚାଲିଗଲା ପେଟ ଭିତରକୁ । ଜନ୍‌ହେଇ ହସିଲା, ବିଷାଦ ଅଥଚ ଅଦ୍ଭୁତ ଖୁସିରେ । ହାତ ମିଳାଇଲା ମୋ ସହ । କିଏ ଜାଣିଥିଲା ଯେ ଜନ୍‌ହେଇ ସହ ସେଇ ମୋର ଶେଷ ହାତ ମିଳାଇବା ହେବ ବୋଲି ? କହିଲି, ଜଟକକୁ ଶେଷ ବସ୍ ଯିବାର ସମୟ ହେଇ ଆସୁଚି ଜନ୍‌ହେଇ, ମୋତେ ଯିବାକୁ ଦିଅ ।

ଜନ୍‌ହେଇ ମୋର ହାତକୁ ମୁଠା କରି ଧରି ରଖିଲା । କହିଲି : ମୁଁ ପୁଣି କାଲି ଆସିବ । ଏଠି ରହିବାର ଅସୁବିଧା ହେବ । ଜନ୍‌ହେଇ, ମୋତେ ଏଥର ବିଦାୟ ଦିଅ ।

ଇଙ୍ଗିତରେ ଜନ୍‌ହେଇ କହିଲା ଆଉ ଦଣ୍ଡେ ବସିବା ପାଇଁ । ପ୍ରାୟ ଅଧ ଘଣ୍ଟାକ ପରେ ମୁଁ ହସ୍ପିଟାଲରୁ ବାହାରି ଆସିଥିଲି । ସେତେବେଳେ କିଏ ଅନୁମାନ କରି ପାରିଥିଲା ଯେ ଜନ୍‌ହେଇ ସହ ସେଇ ମୋର ଶେଷ ସାକ୍ଷାତ ବୋଲି । ତା'ପରେ ଜଟକରୁ ଫେରି ମୁଁ ଆଉ ଜନ୍‌ହେଇକୁ ଦେଖିନି । ସେଇ ରାତିରେହିଁ ଜନ୍‌ହେଇ ଆମକୁ ନକହି ନ ବୋଲି ଫାଙ୍କି ଦେଇ ଚାଲିଗଲା । ୨୬ ବର୍ଷିଆ ଗୋଟେ ଫୁଲ ହଠାତ୍ ଲିଭିଗଲା । ଓଡ଼ିଆ ଗଳ୍ପ ସାହିତ୍ୟର ଅନ୍ୟତମ ସାରଥି ଗଡ଼ି ପଡ଼ିଲା ରଥରୁ । ସେ ଲେଖିଥିଲା ମୋ ପାଖକୁ "ସାଙ୍ଗ ସାଥି ପ୍ରେମିକା ଶୁଭେଚ୍ଛୁ ସବୁ ଦୂରର ସୂର୍ଯ୍ୟାସ୍ତ ପରି ସୁନ୍ଦର ଅଥଚ ମ୍ଳାନ । ଅପ୍ରଭାବିତ । ଏ ଦୁନିଆରେ ସାହିତ୍ୟର ମାନେ କିଛି ନାହିଁ ଜାଣିପୁ ତନ୍ଦ୍ରା ମୋତେ ଘାରି ଆସୁଛି କ୍ରମେ ।" ତେବେ କ'ଣ ଜନ୍‌ହେଇ ଅପେକ୍ଷା କରି ରହିଥିଲା ଏହି ଦିନଟିକୁ, କେବେ ସେ ଫାଙ୍କି ଦେଇ ପଳେଇବ ବୋଲି ?

ଜନ୍‌ହେଇର ଥିଲେ ଅସଂଖ୍ୟ ଗୁଣମୁଗ୍ଧ ପାଠିକା ଓ ଥିଲେ ମଧ୍ୟ କେତେକ ଗୁଡ଼ାଏ ପ୍ରେମିକା । କିନ୍ତୁ ଜନ୍‌ହେଇର ଥିଲା ଜଣେ ଧରାବନ୍ଧା ପ୍ରେମିକା ଓ ଅନ୍ୟମାନେ ମୁହୂର୍ତ୍ତିକର । ଜନ୍‌ହେଇ ମୋତେ ତା'ର ସବୁ ବ୍ୟକ୍ତିଗତ କଥା କହିଛି ଏବଂ ପ୍ରେମ ଭିତରେ ପରସ୍ପରକୁ ବୁଝିବାର ଗୋଟେ ପ୍ରବଣତା ମଧ୍ୟ ଥିଲା । ଜନ୍‌ହେଇର ସ୍ମୃତି ସବୁ

କଳାହାଣ୍ଡି ଗଞ୍ଜାମରେ ତାର କନ୍‌ଫେଶନ ଗୋଟେ ପୁରୁଣା ଡାଇରୀରେ ଲେଖି ରଖିଥିଲା ଓ ମୋତେ କହିଥିଲା ।

କନ୍‌ହେଇ ସାଙ୍ଗରେ ମୋର ପରିଚୟ "ଆସନ୍ତାକାଲିର" ପୃଷ୍ଠାରୁ । ତା'ର ଗୋଟେ ଗଳ୍ପର ଖୁବ୍ ସମାଲୋଚନା କରି ଚିଠି ଲେଖିଥିଲି ସମ୍ପାଦକଙ୍କ ପାଖକୁ । ଚିଠିଟାକୁ ସମ୍ପାଦକ ଛାପି ଦେଲେ 'ପାଠକଙ୍କ ନିଜ ପୃଷ୍ଠା' ସ୍ତମ୍ଭରେ । ସେଇ ଚିଠିର ଗୋଟେ ଲାଇନ ଥିଲା : ଏଭଳି ଗଳ୍ପ ଦ୍ୱାରା କନ୍ହେଇଲାଲ ଦାସ ନିଜର 'ଇମେଜ'କୁ ନଷ୍ଟ କରି ପକାଉଛନ୍ତି ।

କନ୍‌ହେଇର ଖୁବ୍ ଅଭିମାନ ହୋଇଥିଲା । ସେତେବେଳେ ୪୭ ଆଇନ ଛାତ୍ରାବାସର ସୁବୋଧ ଦାସଙ୍କ ସହ ତା'ର ସମ୍ପର୍କ ଥିଲା ଓ ପାନ୍ଥଶାଳାରେ ଡିଫେନ୍ସରେ ଥିବା ଶୁକଦେବ ଗୁଡ଼ କନ୍‌ହେଇ ଭୁବନେଶ୍ୱର ଚାଲି ଆସିଥିଲା । ମୋ ସାଙ୍ଗରେ ପ୍ରଥମ ଦେଖା କଲେଜ ଛକରେ । ପରିଚୟ ହେଲା ପରେ ଝଗଡ଼ାଟେ ହୋଇଥିଲା ପ୍ରଥମ ଥରରେ ହିଁ । ଅଭିମାନରେ କନ୍‌ହେଇ କହି ଥିଲା ଯା ହେଉ ମୋର ଯେ କୌଣସି 'ଇମେଜ' ଅଛି, ସେତିକ ତ ତମେ ମାନିଛ ।

କନ୍‌ହେଇ ମୋର ଗଳ୍ପର କେମିତି ଭକ୍ତ ହୋଇଗଲା ଜାଣେନି । କିନ୍ତୁ "ଅଲଗା ଅଲଗା ବୈତରଣୀ," "ପ୍ଲାଟୋଙ୍କ ଆଟଲାଣ୍ଟିକ୍ ଆବିଷ୍କାର," "ଆହତ ଅର୍ଜୁନ" ଇତ୍ୟାଦି ଗଳ୍ପଗୁଡ଼ିକର ପ୍ରଶଂସାରେ ସେ ପଞ୍ଚମୁଖ ଥିଲା । କନ୍‌ହେଇ 'କାର୍ଯ୍ୟ' ଇତ୍ୟାଦି ଗଳ୍ପଗୁଡ଼ିକ ମୋ ଉପରେ ପ୍ରଭାବ ପକାଇଥିଲା । କନ୍‌ହେଇ ସାଙ୍ଗରେ ଆମେ ଭୁବନେଶ୍ୱରରେ ବେଶ ଆଡ୍‌ଡା ମାରୁଥିଲୁ । ମୁଁ ଭୁବନେଶ୍ୱର ଗଲେ ହିଁ କନ୍‌ହେଇର ମେସ୍‌ରେ ଉଠୁଥିଲି ।

ବହୁ ଅଧଘଣ୍ଟା ଭୁବନେଶ୍ୱର ପ୍ୟାରେଡ ଗ୍ରାଉଣ୍ଡ, ବସ୍‌ଷ୍ଟାଣ୍ଡ, ଗ୍ରନ୍ଥାଳୟ ଇତ୍ୟାଦିରେ ବୁଲି ବୁଲି କଟାଇ ଦେଉଥିଲୁ, ନହେଲେ ଫରେଷ୍ଟ ପାର୍କରେ । ମୋର 'ନୀଳଦାସ' ଗଳ୍ପରେ ପ୍ୟାରେଡ୍ ଗ୍ରାଉଣ୍ଡ, ଗ୍ରନ୍ଥାଳୟ ଇତ୍ୟାଦିର ବିବରଣ ସବୁ କନ୍ହେଇ ସାଙ୍ଗରେ ଥିବା ଅନୁଭୂତି ସହିତ ଜଡ଼ିତ । କନ୍ହେଇ ମୋତେ ବହୁତ ଥର କହୁଚି, ମୁଁ ଗଳ୍ପରେ କନ୍ହେଇର ନାଁ କାହିଁକି ଲେଖି ଦିଏନି ବୋଲି । ମୁଁ ହସି

ଦେଉଥିଲି । ସେତେବେଳେ କ'ଣ ଜାଣିଥିଲି ଯେ କନ୍ହେଇଙ୍କୁ ନେଇ ପ୍ରଥମ ଲେଖା ଲେଖିବାକୁ ପଡ଼ିବ ସେତେବେଳେ, ଯେତେବେଳେ ଆମକୁ ଫାଙ୍କି ଦେଇ ଚାଲିଯାଇଥିବ ସେ ।

କନ୍ହେଇ ଥିଲା ଗୋଟେ ମଜାଳିଆ ପିଲା । 'ଜମେଇବା' ଥିଲା ତା'ର ପ୍ରିୟ । ଦିନେ ମୁଁ ଭୁବନେଶ୍ୱର ପହଞ୍ଚି ଏ: ଜି: ଅଫିସରେ ତାଙ୍କୁ ଦେଖା କଲି । ଦେଖା କରିବା ମାତ୍ରେ କହିଲେ ସେ : ଜଗନ୍ନାଥ, ତମ ପାଖରେ କେତେ ଟଙ୍କା ଅଛି ? ଚାଲ ଆଜି ସିନେମା ଯିବା ।

କିନ୍ତୁ ପରକ୍ଷଣରେ କହିଲେ : ତମେ ଏତେ ବାଟରୁ ଆସିଛ । ପୁଣି ବିଦେଶ ଜାଗା । ଆଜି, ତମକୁ ଖର୍ଚ୍ଚ କରିବାକୁ ଦେବିନି । ମୁଁ ଦେଖୁଛି କ'ଣ କରିଯାଇ ପାରେ ।

କନ୍ହେଇ ଦଶଟଙ୍କା ସାଙ୍ଗେ ସାଙ୍ଗେ ଧାର କରି ପକେଇଲେ ଏବଂ 'କଳ୍ପନା'ରେ ଜ୍ୱେଲଥିଫ ଦେଖି ପକାଇଲୁ । ଏଇ ଅଳ୍ପ ଦିନର କଥା, ହୁଏତ ଛଅ ମାସର ଘଟଣା ହୋଇ ପାରେ । ଆଉ ଥରେ ଭୁବନେଶ୍ୱର ପହଞ୍ଚି ତାଙ୍କୁ ଦେଖା କରିଥିଲି । ଯାଇ ପହଞ୍ଚିଲା ମାତ୍ରେ ସେ କହିଲେ : ଜଗନ୍ନାଥ ! ହିଲୋଚନ ମହାକୁଳ (ଯୁବଲେଖକ) ବାହା ହେଉଛନ୍ତି । ଆମେ ସବୁ ବରଯାତ୍ରୀ ହୋଇଯିବା । ତୁ ସଜ ହେଇନେ । ବର୍ତ୍ତମାନ ବାହାରିବା ।

ବିନା ନିମନ୍ତ୍ରଣରେ ବାହାଘର ଭୋଜିକୁ ଯିବା ଅସମ୍ମାନ-ଜନକ, ମୋ ପାଖରେ । ସେ ଯେତେ ବଡ଼ ବନ୍ଧୁ ହେଉନା କାହିଁକି, ଠିକଏ ମନ ଦୁଃଖ ହୁଏ ବିନା ନିମନ୍ତ୍ରଣରେ ଯିବା ପାଇଁ । ମୁଁ ବି ରାଜି ହେଉ ନଥିଲି । କିନ୍ତୁ କନ୍ହେଇ ଜବରଦସ୍ତି କଲେ । ବାଧ୍ୟ ହୋଇ ମୁଁ ଶେଷ ଅସ୍ତ୍ର ଛାଡ଼ିଲି : ମୋର ସାର୍ଟ ପେଣ୍ଟ ମଇଳା ହୋଇ ଗଲାଣି, ଏଇ ବେଶରେ ବରଯାତ୍ରୀ ଯିବା ସମ୍ଭବ ହେବନି ।

କନ୍ହେଇ ଚାହିଁଛି କେତେକେ । ନେତ୍ରାନନ୍ଦ ସାମନ୍ତରାୟଙ୍କୁ (ଯୁବକବି) ଫୋନ୍ କଲେ । ସେ କଟକରେ ତାଙ୍କର ସର୍ଟୁଙ୍କ ସାର୍ଟ ଆଣିବାର ପ୍ରତିଶ୍ରୁତି ଦେଲେ । ଆମେ ବସ୍‌ଷ୍ଟାଣ୍ଡରେ ପହଞ୍ଚିଛୁ ଅଶୋକ ସିଂଙ୍କୁ (ଯୁବ ଲେଖକ) ସାଙ୍ଗରେ ଦେଖା ହେଲା । କନ୍ହେଇ ତାଙ୍କୁ ମଧ୍ୟ ଟାଣି ନେଇଗଲେ ଆମ ସଙ୍ଗରେ । କଟକର ଏଲ୍. ଆଇ. ସି.

ଭଲୋଜରେ ସୁବୋଧବାବୁଙ୍କ କ୍ୱାର୍ଟରରେ ଗୋଟେ ଆସର ଜମିଲା । କିନ୍ତୁ ଠିକ୍ ବରଯାତ୍ରୀ ବାହାରିବା ସମୟରେ କନ୍ହେଇର ଆରମ୍ଭ ହେଲା ଝାଡ଼ା । ସେ ଝାଡ଼ା ବନ୍ଦ ହେଲାନି ସୁବୋଧ ବାବୁଙ୍କର ହୋମିଓପ୍ୟାଥି ଔଷଧରେ । ଶେଷରେ ମୁଁ ତାକୁ ଇଣ୍ଟେଷ୍ଟୋପାନଫୋର୍ଟ କ୍ୟାପସୁଲ ଖାଇବାକୁ କହିଲି । କନ୍ହେଇ ଆଉ ବରଯାତ୍ରୀଙ୍କ ସହ ଗଲାନି । କେମିତି ଯିବ, ସବୁ କନ୍ୟା ଘରେ ତାକୁ ଝାଡ଼ା ଲାଗେ, ତେବେ ? କନ୍ହେଇ କଟକର ବସ୍ଷ୍ଟାଣ୍ଡରୁ ଫେରିଗଲା ଭୁବନେଶ୍ୱର ।

ପରେ କନ୍ହେଇ ମୋତେ କହିଥିଲା, ସେଦିନ କିଛି ହୋଇ ନଥିଲା, ସ୍ରେଫ୍ ସମସ୍ତଙ୍କୁ ଠକିଦେଲା । କାରଣ କଟକରେ ପହଞ୍ଚି ତା'ର ମୁଡ୍ ଚେଞ୍ଜ ହୋଇ ଯାଇଥିଲା । କନ୍ହେଇର ଥିଲା ଏମିତି ଜମେଇ ଦେବାର ଗୁଣ ।

ଶେଷ ଆଡ଼କୁ ଅର୍ଥାତ୍ ୭୫ର ବର୍ଷକ ବେଳକୁ କନ୍ହେଇ ଅନାମଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲା ଓ ଗୋଟେ କବିତାର 'ଅନାମ'ରେ ବାହାରିଥିଲା । ନିଜର ପ୍ରେମ— ନିଃସଙ୍ଗତା—ଅସହାୟତା ସବୁ ଭୁଲି କନ୍ହେଇ ପ୍ରତିଶୋଧ ନେବା ପାଇଁ ବାହାରି ପଡ଼ିଥିଲା । କିନ୍ତୁ କା' ବିରୁଦ୍ଧରେ ପ୍ରତିଶୋଧ ? କନ୍ହେଇ ନିଜେ ବି ଜାଣି ନଥିଲା । ହ୍ୟାମଲେଟ ଭଳି ଖୁଣ୍ଟିରେ ନେଇ ନିଆଁ, ସେ ଖୋଜି ବୁଲୁଥିଲା ତା' ବାପାଙ୍କ ହତ୍ୟାକାରୀ କି ନୁହଁ, ତାଙ୍କର ଆଭିଜାତ୍ୟ ଓ ସୌହାର୍ଦ୍ୟର ହତ୍ୟାକାରୀକି । କନ୍ହେଇ ଥିଲା ତା'ଙ୍କ ବଂଶର ଏକମାତ୍ର ଓ ଗୁଣଶିଆ ପୁଅ । ଘରେ ବୁଢ଼ୀ ମା' । ତା'ର ଥିଲା ଅନେକ ପାରିବାରିକ ହତାଶା ଓ ଅସହାୟତା । ତେଣୁ ସେ ଗାଁକୁ ଯିବା ବନ୍ଦ କରି ଦେଇଥିଲା ଏବଂ ଆର୍ଥିକ ଅବସ୍ଥା ବି ତାର ଖୁବ୍ ଭଲ ନଥିଲା । ସେ ସନ୍ଧ୍ୟାଓଳିଆ ଜଳଖିଆ ବନ୍ଦ କରି ଦେଇଥିଲା, ସିଗାରେଟ ବନ୍ଦ କରି ଦେଇଥିଲା ଏବଂ ବେଳେ ବେଳେ ଦୁଃଖରେ କହୁଥିଲା : ମୋର ଛୁଆ ହେବା ପାଇଁ ନିଜର ବୋଲି ଜାଗାଟିକିଏ ବି ନାହିଁ । ଯାହା ଥିଲା ସବୁ ଯାଇଛି ।

କନ୍ହେଇ ଭିତରେ ବଞ୍ଚି ରହିଥିଲା ଗୋଟେ ଅସହାୟ କନ୍ହେଇ । ତା'ର ଚିନ୍ତା ଭୁଲିବା ପାଇଁ କ'ଣ ସେ ମଦ ଓ ଗଞ୍ଜେଇ ଧରିଥିଲା ? ମଦ ଗଞ୍ଜେଇ ହିଁ ତା'କୁ ଖାଇଗଲା । ମୁଁ କେତେଥର ମନା କରିଛି ତାକୁ, ଯୁକ୍ତି କରିଛି—କିନ୍ତୁ ସେ ମାନି ନଥିଲା । ଫାଙ୍କ ପାଇଲେ ସେମିତି ହେଉ କି କଲି ଗଞ୍ଜେଇ ଟାଣି ପକାଉଥିଲା, ସଂଧ୍ୟା ବେଳେ । କିନ୍ତୁ ସବୁ ଠାରୁ ଦୁଃଖର କଥାଟିଏ ହେଉଛି—କନ୍ହେଇ ରୋଗ

ଶଯ୍ୟାରେ ଥିଲାବେଳେ, ଆଜ ଯେଉଁ ମାନେ 'ଗଞ୍ଜେଳ ଖୋରାକାହର' ସେମାନଙ୍କର ଦେଖା ଶୁଣା ନଥିଲା । ଶୈଳ ଅପା ବାରମ୍ବାର ସମ୍ବାଦ-ପତ୍ର ଅଫିସକୁ ଫୋନ କରି କନ୍ହେଇର ଅସୁସ୍ଥତାର ଖବର ନ ପ୍ରକାଶ କରି ପାରିଲେନ । ଜଣେ ସାହିତ୍ୟିକଙ୍କୁ ଶୈଳଅପା କହିଥିଲେ : କହ୍ନେଇ ଅସୁସ୍ଥ । ଆପଣ ଟିକଏ ଦେଖା କରିବାକୁ ଯାଆନ୍ତେ ନାହିଁ ?

ଲେଖକଟି ଉତ୍ତର ଦେଲେ : ମଦ ଓ ଗଞ୍ଜେଇର ନିଶାରେ ରାସ୍ତାରେ ଗଡ଼ୁଥିବା ଲୋକ ସହ ମୋର କୌଣସି ସମ୍ପର୍କ ନାହିଁ ।

କହ୍ନେଇ ବଞ୍ଚି ରହିଥିଲା ବେଳେ ହେଲା ମଦୁଆ ଓ ଗଞ୍ଜେଡ଼ି । ମରିଗଲା ପରେ ହେଲା ପ୍ରତିଭାବାନ ଗାଳ୍ପିକ । ବାଃରେ ଏ ଦୁନିଆର ହିସାବ ।



# ସ୍ୱର୍ଗକୁ ଖଣ୍ଡିଏ ଚିଠି

● ଅଧ୍ୟାପିକା ଶାନ୍ତ ମହାପାତ୍ର

ସ୍ନେହର କନ୍ହେଇ !

ରକ୍ଷୀ ପୂର୍ଣ୍ଣିମା, ୧୯୭୫

ହଠାତ୍ ଶୁଣିଲି, ଏ ଭିତରେ ତୋର ଠିକଣା ବଦଳି ଯାଇଛି । ଖବର କାଗଜରୁ ପଢ଼ିଲି, ତୋ ବନ୍ଧୁମାନଙ୍କ ଚିଠିରୁ ଜାଣିଲି ଯେ, ତୁ କୁଆଡ଼େ ଆମ ଭିତରେ ଆଉ ନାହୁଁ । ମାନେ, ତୋତେ ଆଉ ଦେଖିବା ପାଇଁ ପାଇବି ନାହିଁ, ତୋ ଡାକ ଶୁଣିବି ନାହିଁ କି ଏ ଚିଠିର ଉତ୍ତର ଫେରି ପାଇବି ନାହିଁ । କିନ୍ତୁ ସମସ୍ତଙ୍କ ଅଜଣାରେ ବହୁ ଆଖିର ଅନ୍ତରାଳରେ, ମୁଁ ନୀରବରେ ତୋତେ ଖୋଜିବି ; ଫକୀରମୋହନ ଜୟନ୍ତୀ ଉତ୍ସବରେ ଶାନ୍ତି କାନନରେ, ଟାଉନ୍ ହଲ୍‌ର ସାହିତ୍ୟ ଆସରରେ, ବାଲେଶ୍ୱରର ରାସ୍ତା ଘାଟରେ କିମ୍ବା ଏ. ଜି. ଅଫିସ୍ ସାମନାରେ । ଠିକ୍ ଆଜି ଯେମିତି ମନେ ମନେ ତୋତେ ଖୋଜୁଛି, ମୋ ଭିତରେ, ଆକାଶ ବତାସରେ । ଶୂନ୍ୟରେ ମୋର ସେଇ ପ୍ରଶ୍ନ —'କନ୍ହେଇ ! ତୁ କୁଆଡ଼େ ଗଲୁରେ ?' ର ପ୍ରତିଧ୍ୱନି ସେଇ ଶୂନ୍ୟର ଭିତରରେ କୁଆଡ଼େ ମିଳେଇ-ଯାଉଛି ଅବଶ୍ୟ । ତଥାପି ତୋତେ ମୁଁ ଖୋଜୁଛି । ଖୋଜିବି ।

ସମସ୍ତେ କହୁଚନ୍ତି, ତୁ ମରିଗଲୁ । ସମସ୍ତେ ମରିବେ— ମରୁଚନ୍ତି, ନୂଆ କିଛି ନୁହେଁ । କିନ୍ତୁ ତୋ ମରଣ ଖବରଟା ଏକଦମ ନୂଆ, ବଡ଼ ଚମକ । ତେଣୁ ଅସମ୍ଭବ ଅବିଶ୍ୱାସ୍ୟ ମନେ ହଉଚି । ମୃତ୍ୟୁ ପରି ନଶ୍ୱର ନଗ୍ନ ସତ୍ୟକୁ ମୁଁ ତୋର କ୍ଷେତ୍ରରେ, ଜୀବନରେ ପ୍ରଥମ ଥର ପାଇଁ ଅସ୍ୱୀକାର କରୁଚି । ଅଗ୍ରାହ୍ୟ କରୁଛି ।

ତୋ ମୃତ୍ୟୁ ପାଇଁ ସାରା ଓଡ଼ିଶାରେ ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ତରଫରୁ ଶୋକସଭା ହଉଚି । ତୋ ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ହଉଚି । ମୁଁ କିନ୍ତୁ ଏ 'ଆତ୍ମା' 'ସଦ୍‌ଗତି' 'ପରଜନ୍ମ' – କିଛି ବୁଝେ ନାହିଁ । ଯେଉଁ ଠାକୁର ଆମ ଆଗରେ ଆତଯାତ ହେଉଥିବା, ହସିଖେଳ କେତେ ମଜା କଥା

କହୁଥିବା ଆମର ଏକାନ୍ତ ଆପଣାର କନ୍‌ହେଇକୁ ଆମ ପାଖରୁ ନେଇ ଗଲେ, ମୁଁ ସେ ଠାକୁରଙ୍କୁ ଗାଳି ଦେଉଛି ତାଙ୍କର ଅନ୍ୟାୟ, ଅବିଚାର, ସମୟଜ୍ଞାନରହିତ ଏ ପକ୍ଷପାତ କାମ ପାଇଁ । ପ୍ରତି ମାସ ପହିଲିବେଳକୁ ମନିଅର୍ଡରକୁ ଅପେକ୍ଷା କରି ରହୁଥିବା ମା, ଭଉଣୀ, ଭାଇଙ୍କର ଏକାଗ୍ର ଆଶା ଭରସାର କେନ୍ଦ୍ରବିନ୍ଦୁ ସେଇ କନ୍‌ହେଇକୁ ଯେଉଁ ଠାକୁର ଛଡ଼େଇ ନେଇ ଗଲେ, ତାଙ୍କୁ କେମିତି ମଙ୍ଗଳମୟ ବୋଲି କହିବ କୁହ ? ମୁଁ ଜାଣେ ଜୀବନକୁ ତୋର ଭାରି ଲୋଭ । ନିକଟରେ ତୋତେ ଲେଖିଥିଲୁ—"ମୋ ଆଖି ପାଇଁ ପରମ ଠାକୁରଙ୍କ ପାଖରେ ମାନସିକ କରିଛି । ସତ କହୁଛି ଅପା ଏଇମିତି ଟିକିଏ ସ୍ନେହ ପାଇଁ ଏ ପୃଥିବୀରେ ଅନେକ ଦିନ ଧରି ବଞ୍ଚି ରହିବାକୁ ଇଚ୍ଛା ହେଉଛି ।" କେତେ ଆଶା, କେତେ ସ୍ୱପ୍ନ ତୋର ! ମରିବାକୁ ତୋର ଟିକିଏ ବି ଇଚ୍ଛା ନଥିଲା, ଅଥଚ ନିଷ୍ଠୁର ଜୋର-ଜବର କରି ଏମିତି ଅସମୟରେ ତୋତେ ନେଇଯିବା କ'ଣ ଦରକାର ଥିଲା ? ଉଚିତ ହେଲା କି ?

ମୁଁ ଜାଣେ, ତୁ ଭାରି ସ୍ନେହ-କାଙ୍ଗାଳ । ଟିକିଏ ସ୍ନେହ ପାଇଲେ ଗୋଟାପଣେ ହୋଇଯାଉ । ସ୍ନେହୀ ଅକପଟ ଲୋକଙ୍କର ତୁ ଜହ୍ନମାମୁଁ ହୋଇଛୁ । 'ନନ୍ଦଘର କନ୍‌ହେଇ' ହୋଇ କେଉଁଠି ମାଣ୍ଡ, କଂକଡ଼ା ତରକାରି, ଶୁଖୁଆ ପଖାଳ ଖାଇଛୁ । ସବୁ ସ୍ତରରେ ଯେଉଁଠିକୁ ଯାଇଛୁ, ସେଠି ଜମେଇଛୁ । ହୋ-ହୋ ହେଉଛୁ, ସତେ ଯିମିତି ଜୀବନକୁ ଆକଣ୍ଠ ଉପଭୋଗ କରିବାକୁ ତୋର ପ୍ରବଳ ଉଦ୍ୟମ । ଜୀବନର ବହୁ ସମସ୍ୟା ପରିବାରର ବୋଝ, ଅଭାବ ଅସୁବିଧାକୁ ତୁ ଫୁତ୍ କରି ଉଡ଼େଇ ଦଉ । ତୋ ହସ ତଳେ ଲୁଚା ସେଇ ଦୁଃଖ ଭାବର ସୂଚନା କେହି ବାହାରେ ପାଇ ପାରନ୍ତି ନାହିଁ ।

କନ୍‌ହେଇ । ଦାରିଦ୍ର୍ୟ, ଦୁଃଖ ପାଇଁ ତୁ ଅନ୍ୟ ଠାରୁ ନିଜକୁ ଶ୍ରେଷ୍ଠ ମନେ କରିନୁ କେବେ । ତୁ ନିର୍ଭୀକ । ଅନ୍ୟାୟ ବିରୁଦ୍ଧରେ ମହା ମହା ରଥୀଙ୍କ ସାଙ୍ଗରେ କୁରୁକ୍ଷେତ୍ର ଯୁଦ୍ଧ ଲଗେଇ ଦଉ । ତୋ ସାହିତ୍ୟ କୃତି ସମ୍ପର୍କରେ ମୁଁ ବା କ'ଣ ଲେଖିବି ?'ଯନ୍ତ୍ରଣାରୁ ଉତ୍କୃଷ୍ଟ ସାହିତ୍ୟର ସୃଷ୍ଟି' ତୁ ଏକଥା ମୋତେ ସବୁବେଳେ କହୁଥିଲୁ । ତୋ ସାହିତ୍ୟ ତୋ ନିଜସ୍ୱ ଯନ୍ତ୍ରଣାର ପ୍ରତୀକ । ଜୀବନ-ଯନ୍ତ୍ରଣା, ମନସ୍ତତ୍ତ୍ୱ ଉପରେ ତୋର ବ୍ୟଞ୍ଜନାଧର୍ମୀ suggestive ଗଳ୍ପଗୁଡ଼ିକ ଓଡ଼ିଆ ସାହିତ୍ୟରେ ଅନେକ ଜାଗା ମାଡ଼ି ବସିବେ । ତୋ ଗଳ୍ପର Technique (ଗଠନଶୈଳୀ) ଓଡ଼ିଆ ସାହିତ୍ୟରେ ଚହଳ ପକେଇଥିଲା । ଗାଳ୍ପିକ ଭାବରେ ତୋର ସୁନାମ ଜନପ୍ରିୟତା ପାଇଁ ତୁ କେତେକ ଈର୍ଷକ ଲୋକଙ୍କର ଚକ୍ଷୁଶୂଳ ହୋଇଥିଲୁ । ହେଲେ, ସେ ସବୁକୁ ତୋର କ'ଣ ଖାତିର ଥାଏ ?

ତୋ ସ୍ମୃତିକୁ ବଞ୍ଚେଇ ରଖିବା ପାଇଁ ବହୁ ଉଦ୍ୟମ ହେଉଛି । 'ସ୍ମରଣିକା' ପ୍ରକାଶ ପାଉଛି । କିନ୍ତୁ ମୋ ପରି ତୋର ଜଣେ ଗରିବ ଭଉଣୀ ଅସରି ଅସରି ଲୁହ ଢାଳି, ତୋର ସ୍ମୃତି-ତର୍ପଣ କରୁଛି ସିନା ! ଜୀବନ ସାରା ଝୁରି ହେବା ଲାଗି ବହୁ ସ୍ମୃତି ରଖି ଦେଇଗଲୁ । ତୋ ବଗଲା ଦୁଷ୍ଟାମି କଥା ପିଲାଳିଆ ହସ, କେତେ ଗାଲୁ ପୁଣି ମଜାଳିଆ ସତ ଗପ ମୋର ସବୁ ଦିନେ ମନେ ରହିବ । ପୁଣି ଷାଠିଏ ବରଷର ପୋଖତ ବୁଢ଼ା ଭଳି କେତେ ଉପଦେଶ ଦେଇଛୁ, ବଳ ଦେଇଛୁ । ମୋ ଆତ୍ମାର ଜଣେ ଏକାନ୍ତ ନିକଟତମ ପ୍ରତିବେଶୀ, ଯୋଗାଣ୍ଡାଇ, ଦରଘାବନ୍ଧୁ ଆଉ ଦିନମୁ ସ୍ନେହ ଭାବରେ ମୋ ଦୁର୍ଦ୍ଦିନରେ ଦମ୍ଭ ଦେଇଛୁ, ପାଖରେ ଠିଆ ହେଇଛୁ । ମୋ ଡାହାଣ ହାତ ଭାଙ୍ଗିଗଲାପରି ଲାଗୁଛି ।

କେତେ ଅଳି-ଅର୍ଦ୍ଦଳି ସହୁଛି । ପୁଣି ଗାଳି ଦେଉଛି, ଶାସନ କରୁଛି ତୋତେ । ଉମା ପାଖରେ ତୋର ପର ଆପଣାର ଭେଦ ନଥିଲା । କିନ୍ତୁ ଶେଷରେ କପଟକଲୁ । ତୋ ମନରେ ଯଦି ଏତେ କଥା ଥିଲା, ଗୁଚ୍ଛିପିବୁ ବୋଲି ଯଦି ଜାଣିଥିଲୁ, ଏତେ ମାୟା ଲଗେଇଥିଲୁ କାହିଁକି ? ସାତ ଆଠ ଦିନ ଧରି କଷ୍ଟ ପାଇଲୁ । ଟିକିଏ ବି ଜଣେଇଲୁ ନାହିଁ ? କ'ଣ ଅଭିମାନ ? ନିଜ କଷ୍ଟକୁ ଭିତରେ ଭିତରେ ଚାପି ରଖି ନୀରବରେ ଚାଲିଗଲୁ ଆମକୁ କନ୍ଦେଇବା ପାଇଁ ନା, ନିଜର ଭାର ବଢ଼େଇବା ଲାଗି ? ପତ୍ର-ପତ୍ରିକା ସମ୍ପାଦକୀୟରେ ତୋ ଖବର ଆସ୍ଥାନ ମାଡ଼ି ବସିଛି । ତୁ ସତରେ, କେତେ କମ୍ ଦିନରେ କେତେ ବଡ଼ ହେଇଗଲୁରେ ! ମୋତେ ଲାଗୁଛି, ଯେମିତି ସେଇ ଫାଜିଲାମି ହସ ହସି, ସରୁ ନିଶ ମୋଡ଼ି, ଓଠ ଉପରେ ଜିଭଟା ବୁଲେଇ ନେଇ ତୁ କହୁଛୁ— ଦେଖିଲ ଅପା ! କେମିତି ନାଁ ମାରି ନେଲି ?

କହ୍ନେଇରେ ତୁ ଆଲୁଅରେ କି ଅନ୍ଧାରରେ ମୁଁ ଜାଣେ ନାହିଁ । ଆଜି ରାକ୍ଷୀ ପୂର୍ଣ୍ଣିମୀ ତୋ ହାତରେ ତ ରାକ୍ଷୀ ପିନ୍ଧେଇ ପାରିଲି ନାହିଁ । କ'ଣ ଲେଖି ମୋ ଯନ୍ତ୍ରଣାର ରୂପରେଖ ଦେଇ ପାରିବ ? ତୋ ସହିତ ଦେଖା ହେବା ଦିନର ଅପେକ୍ଷାରେ ରହୁଛି । କିନ୍ତୁ ଅନନୁଭୂତ ସେଇ ଅଜଣା ଅନୁଭୂତି ନେଇ ତୋ ସହିତ ଦେଖା ହେବା ବେଳକୁ ହୁଏତ ସାଳନ୍ଧୀ ଓ ବଳଙ୍ଗରେ ବହୁ ବନ୍ୟା ଆସିଥିବ । କିନ୍ତୁ ମୋର ଧୈର୍ଯ୍ୟଚ୍ୟୁତି ଘଟୁଛି ଯେ ! ତୁ ଯେଉଁଠି ଥା, ମୋର ସ୍ନେହ ଶୁଭେଚ୍ଛା ଜାଣିବୁ । ରହିଲି ! ଇତି

ପ୍ରାପ୍ତେଷୁ—
କହ୍ନେଇଲାଲ ଦାସ
ସ୍ୱର୍ଗଦ୍ୱାର, ଶୂନ୍ୟପୃଷ୍ଠ

ତୋର
ଅପା

# ତାଙ୍କ ଠିକଣା

• ସରୋଜରଞ୍ଜନ ମହାନ୍ତି

ଅନୁଜପ୍ରତିମ ତରୁଣ କଥାକାର କନ୍‌ହେଇଲାଲଙ୍କ ଅକାଳ ବିୟୋଗ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ-ଜଗତ ପକ୍ଷରେ ଏକ ଦାରୁଣ ଆଘାତ ଓ କ୍ଷତିର ଫର୍ଦ୍ଦ ଏବଂ ମୋ ନିଜ ପାଇଁ ଏକ ବ୍ୟକ୍ତିଗତ ଶୋକର ଏଲିଜି, ଯାହାକୁ ବ୍ୟକ୍ତ କରିବା ମଧ୍ୟ ଅନ୍ୟ ଏକ ଯନ୍ତ୍ରଣା-ବିଦଗ୍ଧ ମୃତ୍ୟୁ-ଚେତନାର ଅନୁଭବ ଦେବାକୁ ବାଧ୍ୟ ।

କନ୍‌ହେଇ ଥିଲା ଜଣେ ପ୍ରତିଭାଧର କଥାଶିଳ୍ପୀ । ସେ ବହନ କରିଥିଲା ବହୁ ଉଜ୍ଜ୍ୱଳ ପ୍ରତିଶ୍ରୁତି । ଅତି ତରୁଣ ବୟସରୁ ଜଣେ ସଫଳ କଥାକାର ଭାବରେ ସେ ଏଇ ପୃଥିବୀ ଏବଂ ତା'ର ଚରିତ୍ରମାନଙ୍କୁ ଓ ସେମାନଙ୍କ ଜୀବନର ସୁଖ ଦୁଃଖ, ହସ ଅଶ୍ରୁ ଓ ଯନ୍ତ୍ରଣାକୁ ଯେଉଁଭଳି ନିଖୁଣ ଭାବରେ ଚିହ୍ନି ଥିଲା ଓ ଆହୁରି ଚିହ୍ନିବାକୁ ଆନ୍ତରିକ ସାଧନା କରୁଥିଲା ତାହା ଥିଲା ଅନନ୍ୟ । ଏତେ କମ୍, ମାତ୍ର ଛବିଶ ବର୍ଷ ବୟସରେ ତା'ର 'ବିଦାୟ' ଏ ସବୁଥିରେ ଅତି ନିଷ୍ଠୁର ଭାବରେ ପୂର୍ଣ୍ଣଚ୍ଛେଦ ପକାଇ ଦେଲା !

କନ୍‌ହେଇ ସହ ମୋର ପରିଚୟ ବେଶି ଦିନର ନୁହେଁ—ମାତ୍ର ଦୁଇ ତିନି ବର୍ଷର । ଏ ହେଉଛି ବ୍ୟକ୍ତିଗତ ଘନିଷ୍ଠ ପରିଚୟର କଥା । ତା ପୂର୍ବରୁ ତା'ର ଗଳ୍ପ ''ତାଙ୍କ ଠିକଣା''କୁ 'ଝଙ୍କାର' (ଜାନୁୟାରୀ ୧୯୭୧)ରେ ପ୍ରକାଶ କରିବା ଅବକାଶରେ ତା' ସହ ମୋର ବିନା ସାକ୍ଷାତରେ ପରୋକ୍ଷ, କିନ୍ତୁ ଆନ୍ତରିକ, ପରିଚୟ ହୋଇ ସାରିଥିଲା । ତା' ପରେ ତା'ର 'କର୍ଫ୍ୟୁ' ଓ ''ଭଗ୍ନ ମନ୍ଦିର ସାମ୍ନାରେ ଏକ ମାଲ ବୋଝେଇ ଲରି ଠିଆ ହୋଇଥିବା ଦୃଶ୍ୟ'' ପ୍ରଭୃତି ଗଳ୍ପର ସମ୍ପାଦକ ରୂପେ ସେଗୁଡ଼ିକୁ ଝଙ୍କାର ପୃଷ୍ଠାରେ ପରସ୍ତ କରିବାକୁ ମୁଁ ଯତ୍ନ କରିଥିଲି । 'ଝଙ୍କାର'ରେ ମାତ୍ର ୨୧ ବର୍ଷ ବୟସରେ ତା'ର ପ୍ରଥମ ଗଳ୍ପ 'ତାଙ୍କ ଠିକଣା' ପ୍ରକାଶ ପାଇବାର ପ୍ରାୟ ଦୁଇ ବର୍ଷ ପରେ ତା' ସହ ମୋର ବ୍ୟକ୍ତିଗତ ପରିଚୟ ହୋଇଥିଲା ଏକ ଗ୍ରୀଷ୍ମଦଗ୍ଧ ମଧ୍ୟାହ୍ନରେ—କବି ଅନନ୍ତ ପଟ୍ଟନାୟକଙ୍କ ଘରେ ଏବଂ ପରିଚୟ କରାଇ ଦେଇ ଥିଲେ ଅନ୍ୟତମ ତରୁଣ କବି ଅମରେଶ ପଟ୍ଟନାୟକ ।

ସେଦିନ କହ୍ନେଇର ସାଂଘାତିକ ଅସୁସ୍ଥତାର ସମ୍ବାଦ ପାଇ ଭୁବନେଶ୍ୱର ରାଜଧାନୀ ଡାକ୍ତରଖାନାରେ ୨୭ ତାରିଖ ଭୋର ପାଞ୍ଚଟା ବେଳେ ପହଞ୍ଚିଲା ବେଳକୁ ସେ ଦଣ୍ଡାଏ ପୂର୍ବରୁ ଅନ୍ୟ "ଠିକଣା"କୁ ଚାଲି ଯାଇ ସାରିଥିଲା ।

ଏବେ ତା' ଠିକଣା ଆମେ ଖୋଜି ହେଉଛୁ ! କିନ୍ତୁ 'କର୍ଫ୍ୟୁ'କୁ ପାରି ହୋଇ ତା' "ଠିକଣା" ପାଇବା ବଡ଼ କଷ୍ଟକର, ବଡ଼ ଯନ୍ତ୍ରଣାଦାୟକ ଅସମ୍ଭବ ବ୍ୟାପାର ! ଏବେ କହ୍ନେଇକୁ ଖୋଜୁଛନ୍ତି ମା' 'ଯଶୋଦା', 'ବଳରାମ' ଓ ଆହୁରି ଅନେକ ଅନେକ ଚରିତ୍ରମାନେ, କିନ୍ତୁ କିଏ ଜାଣିଛି ତା' ଠିକଣା ? ତା'ର ସାମ୍ପ୍ରତିକ ଠିକଣାରେ ସେମାନଙ୍କ ବିଳାପ କ'ଣ ତା' ପାଖରେ ପହଞ୍ଚି ପାରିବ !



# କଥାକାର କହ୍ନେଇଲାଲ

• ଶୁଭେନ୍ଦ୍ର ବର୍ମା

ଓଡ଼ିଆ ସାହିତ୍ୟର କ୍ଷୁଦ୍ର ଗଳ୍ପ ରଚନା କ୍ଷେତ୍ରରେ ଯେଉଁ କେତେକ ଯୁବ କଥାକାର ସୁନାମ ଅର୍ଜନ କରିଛନ୍ତି ସେମାନଙ୍କ ମଧ୍ୟରେ ସ୍ୱର୍ଗତ କହ୍ନେଇଲାଲ ଦାସ ଅନ୍ୟତମ ଥିଲେ। ମାତ୍ର ଏ ଦିଗରେ ଓଡ଼ିଆ ସାହିତ୍ୟକୁ ଅଧିକ ସମୃଦ୍ଧ କରିବା ଆଗରୁ ମାତ୍ର ଛବିଶ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଗଲା ॥

ସମ୍ବାଦପତ୍ରରୁ କହ୍ନେଇବାବୁ ଚାଲିଗଲେ ସମ୍ବାଦ ପଢ଼ିବାକୁ ମିଳିଲା। ମାତ୍ର ଛବିଶ ବର୍ଷର ତରୁଣ ସେ। ଏଭଳି ନିଃଶବ୍ଦ ଓ ନିଃସହାୟଙ୍କ ପରି ସେ ଆମ୍ଭମାନଙ୍କୁ ଛାଡ଼ି ଚାଲିଯିବେ ଏ ବିଶ୍ୱାସ କାହାରି ନଥିଲା।

ଓଡ଼ିଶାର ବିଭିନ୍ନ ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ତାଙ୍କୁ ଦେଖିବାକୁ ମିଳୁଥିଲା। ଚାକିରି ଜୀବନ କାଳରେ ମଧ୍ୟ ସେ ଏଥିପାଇଁ ଯଥେଷ୍ଟ ସମୟ ଓ ଆଗ୍ରହ ଦେଖାଉ ଥିଲେ। ସାହିତ୍ୟ ସାଧନା ତାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା। ଛାତ୍ର ଜୀବନ ତାଙ୍କର ଅତି ଦୈନ୍ୟ ଓ ଦୁଃଖ ମଧ୍ୟରେ ଅତିବାହିତ ହୋଇଥିଲା। ରେଲ୍ ଷ୍ଟେସନର ବିଶ୍ରାମାଗାରରେ ରହି, ଏଠି ସେଠି ଟିଉସନ କରି ନିଜର ଅଧ୍ୟବସାୟ ବଳରେ ସେ ବି. ଏ. ପାଶ କରିଥିଲେ। ଏ ସବୁ ସଙ୍କଟ ଓ ଅର୍ଥ ଚିନ୍ତା ମଧ୍ୟରେ ବି ସେ ସାହିତ୍ୟ ସାଧନାରୁ ତିଳେ ହେଲେ ହଟି ନଥିଲେ। ବିଭିନ୍ନ ଉତ୍ସବ ଓ ସାହିତ୍ୟିକ ସମାବେଶରେ ତାଙ୍କର ତଥ୍ୟପୂର୍ଣ୍ଣ ଆଲୋଚନା, ଗଳ୍ପପାଠ, କବିତା ଆବୃତ୍ତି ସମସ୍ତଙ୍କୁ ଗଭୀର ବିଶ୍ୱାସ ଦେଇଥିଲା। କହ୍ନେଇବାବୁ ନିଶ୍ଚୟ ଓଡ଼ିଆ କଥା ସାହିତ୍ୟରେ ନୂତନ ଦିଗ୍‌ଦର୍ଶନ ଭବିଷ୍ୟତରେ ଦେଇ ପାରିବେ। କିନ୍ତୁ ହାୟ ସମସ୍ତ ଆଶା ଆଶାରେହିଁ ରହିଗଲା। ତେବେ କଥା-ସାହିତ୍ୟ କ୍ଷେତ୍ରରେ ତରୁଣ କଥାକାର କହ୍ନେଇ ଦାସଙ୍କୁ କେଉଁ ପାଠକ ନ ଜାଣିଛି? ଅତି ତରୁଣ ବୟସରେ ଗଳ୍ପ ରାଜ୍ୟରେ ମୋଡ଼ ପରିବର୍ତ୍ତନ ପାଇଁ ସେ ଯେଉଁ ଉଦ୍ୟମ ଚଳାଇ ଥିଲେ ତାହା ଚମକ ସୃଷ୍ଟି କରିଥିଲା।

ତାଙ୍କର ବିଭିନ୍ନ ଗଳ୍ପ କବିତା ଅଧିକାଂଶ ପତ୍ର-ପତ୍ରିକାରେ ସ୍ଥାନ ପାଉଥିଲା । ସମସ୍ତେ ତାଙ୍କ ଠାରୁ ଅନେକ କିଛି ଆଶା କରୁଥିଲେ । ଦେଶ ସରସ୍ୱତୀଙ୍କ ଅଶେଷ କରୁଣାରୁ ସେ ତରୁଣ ବୟସରେ ମଧ୍ୟ ଶହ ଶହ ଗଳ୍ପ କବିତା ଲେଖି ଯାଇଛନ୍ତି । ଅନେକ ପ୍ରକାଶିତ ଓ ଅନେକ ଅପ୍ରକାଶିତ ମଧ୍ୟ ରହିଛି । ସାହିତ୍ୟ ସାଧନା ଓ ସୃଷ୍ଟି ତାଙ୍କ ଜୀବନର ଏକ ବ୍ରତ ଥିଲା । କାହାରି ସହିତ ଦେଖା ହେଲେ ବାଜେ ଗପ ନ କରି ସେ ସାହିତ୍ୟ ସମ୍ପର୍କରେ ଆଲୋଚନା କରୁଥିଲେ । କାହାରିକୁ ସେ ସମାଲୋଚନା କରୁ ନଥିଲେ । ସମସ୍ତଙ୍କୁ ସେଇ ଗୋଟିଏ ଅନୁରୋଧ "ଲେଖ" ଅଭ୍ୟାସ ବନ୍ଦ କରି ନାହିଁ ।

କେବଳ ସେ ଯେ ଜଣେ ଲେଖକ ଥିଲେ ତାହା ନୁହେଁ ଜଣେ ଉଚ୍ଚକୋଟୀର ପାଠକ ଭାବେ ସେ ମଧ୍ୟ ସୁପରିଚିତ ଥିଲେ । ଯେଉଁ ଲେଖା ତାଙ୍କ ମନ ଛୁଇଁଥିଲା ସଙ୍ଗେ ସଙ୍ଗେ ସେ ପତ୍ର ଲେଖି ଲେଖକ ଲେଖିକାଙ୍କୁ ବଧେଇ ଜଣାଉଥିଲେ । ବିଭିନ୍ନ ସାହିତ୍ୟିକଙ୍କ ସହ ସାହିତ୍ୟିକ ଯୋଗସୂତ୍ର ସ୍ଥାପନ ପାଇଁ ଚିଠି ଲେଖା ଜାରି ରଖିଥିଲେ । ପ୍ରତ୍ୟହ ପାଞ୍ଚ ଛଅ ଖଣ୍ଡ ପତ୍ର ବିଭିନ୍ନ ସ୍ଥାନକୁ ଓ ପତ୍ର-ପତ୍ରିକାକୁ ଦେଉଥିଲେ । ଏଭଳି ଏକ ଯୁବ ପ୍ରତିଭା ଅତି ଅବେଳରେ ଚାଲି ଗଲା ଭାବିଲେ ଦୁଃଖ ଲାଗେ ।

ସେ କେବେ ହେଲେ କାହାକୁ ନିଜର ଦାରିଦ୍ର୍ୟ ଓ ଦୁଃଖ କାହାଣୀ ଶୁଣିବାକୁ ଦେଇ ନାହାନ୍ତି । ସବୁବେଳେ ହସ ହସ ଓ ନମ୍ର ବ୍ୟବହାରରେ ସମସ୍ତଙ୍କୁ ନିଜର କରି ନେଉଥିଲେ । ତାଙ୍କ ମୃତ୍ୟୁରେ ଓଡ଼ିଆ ସାହିତ୍ୟର ଅନେକ କିଛି କ୍ଷତି ହେଲା । କନ୍ହେଇଲାଲଙ୍କ ସାହିତ୍ୟର ମୂଲ୍ୟାଙ୍କନ ହେବା ଦରକାର । ଅପ୍ରକାଶିତ ରଚନା ପ୍ରକାଶିତ ହେବା ଉଚିତ । ଏ ଦିଗରେ ସାହିତ୍ୟିକ ବନ୍ଧୁମାନେ ତାଙ୍କର ଉଦ୍ୟମ କରୁଛନ୍ତି । ମୁଁ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛି ।



# କହ୍ନେଇ ରେ !

• ଅଶୋକକୁମାର ସିଂ

ତୋର କଥା ରଖି ଅସଂଖ୍ୟ ସହରର କେଉଁ ଅନାମିକା କନ୍ୟା ସହ ହୃଦୟ ବଦଳ କଲି । ତୋର କଥା ଅନୁସାରେ ଦୁନିଆର ସମସ୍ତଙ୍କୁ ନଜର କଲି । ରାଜଧାନୀର ନଂ ୮୪ ଡାକ-ତାର କଲୋନୀରୁ Type II. Q.R. 129କୁ ରାସ୍ତା ବା କେତେ ? କେତେ ବା ହୃଦୟ, ସ୍ନେହ ପ୍ରୀତି ଦେଇ ତୁ ବ୍ରଜ ରଥଙ୍କ ପ୍ରେସରେ ବସି ରହୁ । ମେସିନର ଖଟ୍ ଖାଟ୍ ଶବ୍ଦ ଭିତରେ ଧଳା ସାର୍ଟ ଉପରେ କଳାର ଛୋପା ଛୋପା ଚିହ୍ନ । କହ୍ନେଇ, ଏମିତି ବି ମଣିଷ ବଞ୍ଚେ, ବଞ୍ଚିବାର ଅଭିନୟ କରେ । ଜନ୍ମ ଶତାବ୍ଦୀ ଲେଖକ ସମ୍ମିଳନୀରୁ ଫକୀରମୋହନ ଜୟନ୍ତୀ । ପ୍ରଥମଥର ଏ. ଜି. ଅଫିସରୁ ଛୁଟି ନେଇ ଫେରି ଗଲାବେଳେ, ତୋର ଦୁଃଖ ନଥିଲା ମନରେ, ଭାରି ପଥର ନଥିଲା ହୃଦୟରେ । କହୁ ଗଲୁ ନିଜ କଥା, ଅତୀତର କଥା । ତୁ କ'ଣ ସତରେ ମୋ ଆଗରେ ଅତୀତର କାହାଣୀ କହି ସବୁ ଭୁଲି ଗଲୁ ।

କହ୍ନେଇ, ତୋର ସ୍ମରଣିକା ପାଇଁ କ'ଣ ଲେଖିବି ? ତୋ'-ମୋ' ସମ୍ପର୍କର ଲିପି ଅବା ତୋର ଅତୀତର କାହାଣୀ ? କିଛି ଦରକାର ନାହିଁ । ଗତ ଦିନଟାରେ ଚାଲି ଗଲୁ । ତୁ ଚାଲି ଗଲୁ ।

ବାଲେଶ୍ୱରରୁ ଚାଲି ଆସିଲିଣି । ରାଜା ତ ଚାଲି ଗଲେ, ରାଣୀକୁ ମୁଁ କ'ଣ ସମ୍ବାଦ ଦେବି !

ମୁଁ ଗୋଟେ ଭଙ୍ଗା ଖେଳନାର ମାଲିକ । ଖେଳ ଭାଙ୍ଗିଲା—ଖେଳନା ବି ଭାଙ୍ଗି ଯିବ । ଇତି ।

ତୋର
ଅଶୋକ ସିଂ

# ତା' ଠିକଣା

• ଯାଯାବର

ବୟସର ଘରରେ ନଇଁ ଯାଇଥିବା ଏଇ ବୁଢ଼ୀଟି ; ଆହା ବିଚାରୀ ; ସମୟର ଚଟାଣରେ ଖୋଜୁଥିଲା ତାର ଯୌବନକୁ ! କେଉଁଠି ହଜିଗଲା ସତେ !

ସମସ୍ତଙ୍କର କିଛି ନା' କିଛି ହଜି ଯାଏନା ? ହେଲେ ସମସ୍ତେ କ'ଣ ଖୋଜିବାର ମୌକା ପାଇ ପାରନ୍ତି ! କେତେକ ହୁଏତ 'ତାଙ୍କ ଠିକଣା'ଟା ଖୋଜୁ ଖୋଜୁ, ହଠାତ୍ ଖୋଜିବା ବନ୍ଦ ହୋଇଯାଏ । ଠିକଣା ମିଳିଯାଏ । ତାପରେ—

ଯୌବନରେ 'ତାଙ୍କ ଠିକଣା' ଖୋଜିବାଟା କ'ଣ ବେ-ସ୍ୱଭାବ କାମଟାଏ !

ଈଶ୍ୱରଙ୍କୁ ସେ ନିମନ୍ତ୍ରଣ କରିଥିଲା : "ତମେ ଓହ୍ଲାଇ ଆସନା । ମୁଁ ତୁମକୁ ମଣିଷ କରି ଦେବି । ସାଙ୍ଗ ହୋଇ ବୁଲିମିଳି ଚାଲିବା ।" ଆଜି—

ଈଶ୍ୱର ବଡ଼ ବ୍ୟସ୍ତ ଲୋକ କି'ନା, ସେଇଥିପାଇଁ ନିଜେ ନ ଆସି, ତାକୁ ପାଖକୁ ଡାକି ନେଲେ :

"ତୁ ଏଇଠିକୁ ଚାଲିଆ । ସାଙ୍ଗ ହୋଇ ତାମସା ଦେଖିବା । ତୋତେ ଆଉ ଯୌବନକୁ ଖୋଜିବାକୁ ପଡ଼ିବନି ।"

ତାଙ୍କର ପାଓ୍ୱାର ଅଛି । ସେ ନେଇଗଲେ । ନିଜର ସୁଖ ପାଇଁ, ଖାମଖିଆଲି ପାଇଁ, ଏମିତି ସେ କେତେ କ'ଣ କରିଛନ୍ତି । ତା'ର ନଜିର ଅନେକ । କିନ୍ତୁ କିଏ ତାଙ୍କୁ ଜେରା କରି ପାରିବ !

ସେଇଥିପାଇଁ ସେ ଇଚ୍ଛା କରିଥିଲା ତାଙ୍କୁ ମଣିଷଟିଏ କରି ଦେବାକୁ । ଯନ୍ତ୍ରଣାଟା କ'ଣ ତାହା ତାଙ୍କୁ ବୁଝାଇ ଦେବାକୁ ।

× × ×

ଏ ଅବସ୍ଥାରେ କି ସ୍ମୃତି-ଚାରଣ ବା ଆଉ କରାଯାଇ ପାରେ । ବାଲେଶ୍ୱରର ପଥ କଡରେ ତା' ସ୍ମୃତି ଆଜି ଉବୁ ଜୁବୁ । ବାଲିଘାଟରୁ ବାଲିଆ । ସବୁଠି ।

ଅନେକ ସ୍ମୃତିର ତା' ସହ କଟିଛି ବାରବାଟି ବା ମାଣିଖମ୍ବର ଗଳି ଉପ-ଗଳିରେ ଘୂରି ଘୂରି । ବ୍ରଜବାବୁଙ୍କ ଖଟିରେ ଅନେକ ମଧ୍ୟ-ରାତି ବିତିଯାଇଛି ଚିନାବାଦାମ ବା ଚେନାଚୂର ଚୋବାଇ ଚୋବାଇ । ଆଉ ଅଗ୍ରଜ ଓ ଅନୁଜମାନଙ୍କୁ ବାଣ୍ଟେଇ ଦେଇ ଅନେକ ଘାଟରେ ଓ ଅନେକ ହାଟରେ ବି ଘୂରି ଆସିଛି ଆପେ ଦୁହେଁ । ଏବେ ବି ହୁଏତ ରାଜବାଟି ସାମନାର ସେଇ ଏକଣା କୋଠରୀର ଅନ୍ଧକାର ଭିତରେ ତା' ସ୍ମୃତିର କେଇଟି ପୃଷ୍ଠା ଖୋଲା ହୋଇ ପଡ଼ିଛି । କେଇଟି ଅଧ୍ୟାୟ ଏବେବି ପବନରେ ଫର ଫର ଉଡ଼ୁଥିବ ବସନ୍ତର ବସାରେ ; ସେଇ କେନ୍ଦୁ-ନଥିବା ବୁଢ଼ୀଟିର ନୁଆଁଣିଆ ଚାଳ ଘରେ ଏବଂ ଦେଖାର ଅଧା ଖରା ଅଗଣାରେ ।

ସେଇ ନୁଆଁଣିଆ ଚାଳ ଘର । ତା'ର ସନ୍ତସନ୍ତିଆ ଅଗଣା । ଜରଜା ପିଣ୍ଡା । ଅନ୍ଧାରିଆ ବଖରାଏ ଘର । ତା' ଭିତରେ ଲମ୍ବି ଯାଇଥିବା କଟିଅଟିଏ, ଖଣ୍ଡେ ବେଡ୍‌ସିଟ୍ । ବଗୁଡ଼ ହୋଇ ପଡ଼ିଥିବା ଗୁଡ଼ାଏ ବହି ଓ ପତ୍ରିକା । ଆଉ ଦେଖାର ତରଙ୍ଗ ତରଙ୍ଗ ସ୍ମୃତି । ତାରି ଭିତରେ କନ୍ହେଇ ।

ଏବଂ ଦେଖା ! ତା'ର ଖାକି-କଳା-କବଚର ହନୁମନ୍ତ ପେଡ଼ି । ବାଦଲ ଭଙ୍ଗା ବୃଦାଣୀ । ଝିଲ ମିଲ ଚଣତର ଲହରୀ । ଆଉ ଇସାରା ଭରା ପଦାପାତ — ଏ ସବୁର ଭିତରେ ବି ସେଇ କନ୍ହେଇ ।

କେତେ ତାକୁ ସେ ନ ଖୋଜିଛି ସତେ !

ରେଳରେ ଘୂରି ଘୂରି ପ୍ରତି ଷ୍ଟେସନରେ । କଲେଜ, ସ୍କୁଲ, ସିନେମା ଏବଂ ସେକ୍ରେଟେରିଏଟ୍ ସାମନାରେ ପ୍ରହର ପ୍ରହର । ପତ୍ର-ପତ୍ରିକାର ପ୍ରତି ପୃଷ୍ଠାରେ ଏବଂ ଅଗଣିତ ତରୁଣୀଙ୍କର ବିଦ୍ୟୁତ୍-ଚଳନ୍ତର ସମଗ୍ର ବ୍ୟାପ୍ତିରେ । ବାଲିଘାଟର ମଣିଷରେ ଷ୍ଟେସନ ସେକଡ଼ ଆନନ୍ଦ ବଜାରର ଫିସ୍ ଫିସ୍ ଅନ୍ଧାରରେ । ଦାନାପୁରର ଜଙ୍ଗଲିଆ ରାସ୍ତାରେ । ଅଥବା ରାଜଧାନୀର ଝିମ୍ ଝିମ୍ ଆବହାଓ୍ୱାରେ । ସବୁଠି ସେ ଖୋଜୁଥିଲା ଦେଖାକୁ । ଦେଖା, ଦେଖା, ଏବଂ ଦେଖା ।

ସେତ କାହାକୁ ଡରୁ ନଥିଲା । 'ମଣିଷ ପିଠିରେ ଚଢ଼ି' ଯିଏ ଆସୁ ନା କାହିଁକି ? 'ଧକ୍କା ମାରି ମାରି ଦୁଆରଟା' ଲାଗି ଦେଲେ ବା କ'ଣ ହୋଇଗଲା ? ସେ ଯେ 'ଗ୍ରହଣ ଘରେ ସୁରକ୍ଷିତ' । 'ବାଁରେ ତୁମ ବାମ ଆଖିର ଅଭିଶାପ' ଥିଲେ ଥାଉ ; 'ଡାହାଣରେ ଖୋଲା ଆଖିର ଆଶୀର୍ବାଦ' ମୋ । ତେବେ ତା'ର ଭୟ କାହାକୁ !

× × ×

ଏ ସହରେ ବି ଖୋଜି ଖୋଜି ସେ ହଜିଗଲା । ବା ତମର ପାଓ୍ୱାର ଅଛି । ଏମିତି କାର୍ତ୍ତିର ଅନେକ ନଜର ବି ଅଛି । ତମେ ତାକୁ ନେଇ ଗଲ ।

କିନ୍ତୁ କାହିଁକି ? ଯୌବନରେ ଠିକଣା ଖୋଜିବାଟା କ'ଣ ବେ-ହିସାବ କାମଟାଏ !

ସେ ତୁମକୁ ନିମନ୍ତ୍ରଣ କରିଥିଲା । କିନ୍ତୁ ତୁମେ ତାକୁ ବରଗି ନେଲ ।

ବଡ଼ ଅବାଗିଆ କାମଟାଏ କରି ଦେଲ ପ୍ରଭୁ ହେ ! ଅସମୟରେ ଅକାମଟାଏ କରି ପକାଇଲ ।



# ମନେ ପଡ଼େ

ପୁରୁଷୋତ୍ତମ ଭୂୟାଁ

ବୁଦ୍ଧପୁର ।

ସାଗରବେଳା ।

୧୫ ଜାନୁୟାରୀ ୧୯୭୫

ଏକ ପାର୍ଶ୍ୱରେ ଅସୀମ ଜଳରାଶି ଓ ଅନ୍ୟ ପାର୍ଶ୍ୱରେ ସୁବିସ୍ତୀର୍ଣ୍ଣ ଝାଉଁବଣ ।

ମଧ୍ୟାହ୍ନ ସୂର୍ଯ୍ୟାଲୋକର ଉତ୍ତରଦକ୍ଷିଣମୁଖୀ ହୋଇ ବାଲିର ମୁହାଣ ଆଡ଼କୁ ମୁହାଁଇ ଥିଲୁ ଆମେ କେତୋଟି ମଣିଷ । ଆମେ ଥିଲୁ—ଫକୀରମୋହନ ସାହିତ୍ୟରେ ଡକ୍ଟରେଟ୍ କରିଥିବା ଲଣ୍ଡନ ବିଶ୍ୱବିଦ୍ୟାଳୟର ସୁନାମଧନ୍ୟ ଅଧ୍ୟାପକ ଡାଃ ଜନ୍ ବୋଲ୍ଟନ, ତାଙ୍କର ପ୍ରିୟତମା ପତ୍ନୀ ସୁଶ୍ରୀ ମିସେସ୍ ବୋଲ୍ଟନ, କବି ବ୍ରଜନାଥ ରଥ, ସାହିତ୍ୟିକ ଚନ୍ଦ୍ରଭୂଷଣ କର, କବି ଶୁଭେନ୍ଦୁମୋହନ ଦାସ ତରୁଣ ସାହିତ୍ୟିକ କନ୍ହେଇଲାଲ ଦାସ, ଗବେଷକ ଭରତ ପାଢ଼, ଅଶୋକ ସିଂ ଏବଂ ମୁଁ ନିଜେ—ବୁଦ୍ଧପୁର ସାଗର ବେଳାର ଦିଗନ୍ତ ବ୍ୟାପୀ ପ୍ରାକୃତିକ ଉତ୍ସବ ଫସଲ ଭିତରେ ନଅଟି ସାହିତ୍ୟ ରସିକ ।

ଏକ ସୁନ୍ଦର ସମାବେଶ ।

ଆମେ ଗପୁ ଥିଲୁ ଅନେକ କଥା ଏବଂ ସବୁ ଗୁଡ଼ିକ ସାହିତ୍ୟକୁ ନେଇ । ଆମ ଠାରୁ ବିଚ୍ଛିନ୍ନ ହେଲେ ମିସେସ୍ ବୋଲ୍ଟନ୍ । ସ୍ୱାମୀଙ୍କ ଅଣ୍ଟାରେ ଜୋତା ହଳକ ଝୁଲାଇ, ପେଣ୍ଟକୁ ଆଣୁ ଉପରକୁ ଟେକି ଫୁଙ୍ଗୁଳା ଗୋଡ଼ ଚକ ଚକ ଗୋଡ଼ ଦୁଇଟିକୁ ଦଉଡ଼ାଇ ନେଲେ କିଛି ଦୂର ଆଗକୁ, ଜଳରାଶି ଆଡ଼କୁ । ହସି ହସି ସେ ଡ଼ୁଥା ମାରୁ ଥିଲେ ସବୁଜ ଅରଣ୍ୟର ଝରଣା କୂଳରେ ଏକ ହରିଣୀ ପରି । ହଠାତ୍ ଆମ ଭିତରୁ ଅଲଗା ହୋଇ ତାଙ୍କ ସହିତ ଯୋଗ ଦେଲା କନ୍ହେଇ – ତାଙ୍କ ପରି ଡେଇଁ ଚାଲିଲା ଆଗୁଏ ପାଣିରେ ।

ସେ ହସୁ ଥିଲା, ଗପୁ ଥିଲା ଓ ବେଳେ ବେଳେ ସେଇ ଭଦ୍ର ମହିଳାଙ୍କ ଅଦ୍ଭୁତ ଶାମୁକା ଗୋଟାଉ ଥିଲା ଏକାନ୍ତ ନିବିଡ଼ ଭାବରେ ।

ଅପରିଚିତ ବ୍ୟକ୍ତି ସହିତ ପ୍ରଥମ ସାକ୍ଷାତରେ ମଧ୍ୟ ଏକାନ୍ତ ଆତ୍ମୀୟ ଭଳି ବ୍ୟବହାର କରି ପାରିବାର ଦକ୍ଷତା ଜନ୍‌ହେଇର ଥିଲା । ଆପତ୍ତି ବା ସଙ୍କୋଚ ନଥିଲା । ମୁହାଣ ନିକଟ ବେଳକୁ ଜନ୍‌ହେଇ ଆମ ନିକଟକୁ ଫେରି ଆସିଥିଲା । ଆମ ରାଜ୍ୟର ଝିଅଙ୍କ ସହିତ ମେମ୍ ସାହେବଙ୍କୁ ତୁଳନା କରି ଦୁଃଖ କଲା ଓ ମୋ କାନରେ ମିସେସ୍‌ଙ୍କର ପ୍ରଚୁର ପ୍ରଶଂସା ଗାଇଲା । ହଠାତ୍ ଦୂରରୁ ଖୁବ୍ ଜୋରରେ ମିସେସ୍ ନେଲ୍‌ଟନ୍ ଡାକି ଉଠିଲେ, "ଜନ୍ ! ଜନ୍ ... ... ..." । ଜନ୍‌ହେଇର ମୁହଁ ଶୁଖିଗଲା । ଆଉ ସେ କହି ଉଠିଲା, "ଆଃ କି ସୁନ୍ଦର ଡାକ । କିନ୍ତୁ ମୋର ପ୍ରେମିକା ମତେ ଡାକେ ଜନ୍‌ହେଇ "... ହ୍ଲା ...।" ସେ ଦିନର ସେ ମଧୁମୟ ମୁହୂର୍ତ୍ତ ଗୁଡ଼ିକ ମଧ୍ୟରେ ଜନ୍‌ହେଇ ଆମ ଭିତରେ ସର୍କସର କ୍ଲାଉନ୍ ଭଳି ଅନେକ ରଙ୍ଗ ରସ ସୃଷ୍ଟି କରିଥିଲା ।

ଜନ୍‌ହେଇ 'ଜମେଇ'ବାରେ ଓସ୍ତାଦ ଥିଲା । ଏ ପୃଥିବୀଟା 'ଜମେଇବା'ର ଏକ ଯଥାର୍ଥ କ୍ଷେତ୍ର ବୋଲି ସେ କହୁଥିଲା ।

ଆମେ କେତେ ଜଣ ବାଲେଶ୍ୱରର ସାହିତ୍ୟ ରସିକ ଅନେକ ଥର ବାଲେଶ୍ୱର ବାହାରକୁ ଆମୋଦ ପ୍ରମୋଦ ଉଦ୍ଦେଶ୍ୟରେ ଯାଇ ଥାଉଁ । କେବେ ପାହାଡ଼ର ଉପରି ଭାଗରେ ଅବସ୍ଥିତ ସବୁଜ ଘନ ଅରଣ୍ୟ ବେଷ୍ଟିତ କୁଲଡ଼ିହା ଡାକ ବଙ୍ଗଳାକୁ, ବା କେବେ ପାହାଡ଼ିଆ ଶୁଷ୍କ ଭୂଇଁରେ ବହି ଯାଉଥିବା ଚିର-ସ୍ରୋତା ନିର୍ଝରିଣୀ ମଧ୍ୟରେ ବିଦ୍ୟମାନ ପ୍ରତ୍ୟକ୍ଷ ଦେବତା ପଞ୍ଚଲିଙ୍ଗେଶ୍ୱରଙ୍କର ପବିତ୍ର ପୀଠସ୍ଥଳୀକୁ ବା କେବେ ଚାନ୍ଦିପୁରର ସାଗର ବେଳାକୁ ବା ଆଉ କେବେ ଅନ୍ୟତ୍ର । ଏହି ସବୁ ସମାବେଶରେ ଜନ୍‌ହେଇ ପ୍ରାୟ ଆମ ଗହଣରେ ଥାଏ ଏବଂ ଖୁବ୍ 'ଜମାଏ' ।

ଜନ୍‌ହେଇ ଉପରେ ମୁଁ ଅନେକବାର ରାଗିଛି । କିନ୍ତୁ ସେ କେବେ ରାଗି ନାହିଁ । ବରଂ ହସି ହସି ମୋର ସମସ୍ତ ରାଗକୁ ଉଡ଼ାଇ ଦେଇଛି । ଆଲୋକ ଓ ଅନ୍ଧକାରର କୌଣସି ବ୍ୟବଧାନ ନରଖି ସେ ତାର ସ୍ୱଳ୍ପ-ଜୀବନଟାକୁ ଅତି ଖାମ୍ ଖିଆଲି ଭାବେ କଟାଇ ଦେଲା—ହସି ହସି । କିନ୍ତୁ ସେଇ ହସର ନେପଥ୍ୟରେ ଯେ ପ୍ରଚ୍ଛନ୍ନ ଭାବରେ ଲୁଚି ରହିଥିଲା ତାର ଅନେକ ଦୁଃଖ ଓ ବ୍ୟଥାର କାହାଣୀ—ଏ କଥା ଆମେ ବୁଝି ପାରି ନଥିଲୁ । ସେଥିପାଇଁ ତାର ପ୍ରତିଟି ଗଳ୍ପର ଅନ୍ତରାଳରେ ଗୋଟାଏ ବେଦନାର ଲୁଚି ଆତ୍ମ ପ୍ରକାଶ କରୁଥିଲା ।

କାନ୍ହେଇର ସାହିତ୍ୟ-କୃତି ବିଷୟରେ ମୋର କିଛି କହିବାର ନାହିଁ । କିନ୍ତୁ ତାର ତତ୍ତ୍ୱାବଧାନରେ ଓଡ଼ିଶାରେ ସାହିତ୍ୟ ରାଜ୍ୟରେ ଯେପରି ଭାବରେ ଏକ ଗମ୍ଭୀର ଶୋକର ଛାୟା ଖେଳିଗଲା ; ସେଥିରୁ ତା'ର ସାହିତ୍ୟ ପ୍ରତିଭାର ସ୍ପଷ୍ଟ ସ୍ୱୀକୃତି ମିଳେ ।

ଗୋଟାଏ ଘଟଣା ମୋର ଖୁବ୍ ମନେ ଅଛି । କାନ୍ହେଇ ଥରେ ଏକ ଗ୍ରେଟ ନାଟକ ଲେଖି ମତେ ପଢ଼ାଇଲା ଓ ମୋର ମତାମତ ଚାହିଁଲା ।

ମୁଁ କହିଲି, "ତୁମେ ଗଳ୍ପ ଲେଖୁଛ, ଲେଖ । ଗଳ୍ପ ଲେଖିବାକୁ ତୁମେ ଭଲ ହାତ ପାଇଛ । ନାଟକ ରଚନା ଏକ ଜଟିଳ ବ୍ୟାପାର ।" ବାରମ୍ବାରରେ ମୁଁ ତାକୁ କହିଥିଲି ଯେ ନାଟକ ଲେଖୁଁ ଲେଖୁଁ ସେ ଗଳ୍ପଟିଏ ଲେଖି ପକାଇଛି, ସୁନ୍ଦର ଗପଟିଏ । ଫଳରେ ନାଟକର ସାଧାରଣ ଧର୍ମ ହିଁ ନଷ୍ଟ ହୋଇ ଯାଇଛି ।

କିନ୍ତୁ ନାଟ୍ୟକାର ହେବାକୁ କାନ୍ହେଇର ପ୍ରବଳ ଇଚ୍ଛା ଥିଲା । ଏକଥା ସେ ବାରମ୍ବାର ମୋତେ କହି ଥିଲା ।

ସେ ମୋର କେତୋଟି ନାଟକ ପଢ଼ିଥିଲା । ମୋର ଅପ୍ରକାଶିତ ନାଟକ ଗୁଡ଼ିକର ପ୍ରକାଶନ ପାଇଁ ସେ ଖୁବ୍ ଆଗ୍ରହୀ ଥିଲା । ଥରେ ସେ ମତେ କହିଥିଲା, "ଆପଣ ଥରେ ଲୋକଙ୍କୁ ଚିହ୍ନା ଦିଅନ୍ତୁ ।" ମୁଁ କହିଥିଲି, "ମୋର ଏବେ ବି ବୟସ ହୋଇନି ।" ସେ ଖୁବ୍ ହସି କହିଥିଲା, "ସାହିତ୍ୟିକ ହେବାକୁ ବୟସର ଆବଶ୍ୟକତା ପଡ଼େ ନାହିଁ, ସାର୍ ।"

ଏବେ ମୁଁ ଠିକ୍ ବୁଝି ପାରୁଛି ସାହିତ୍ୟିକ ହେବା ପାଇଁ ବୟସର ଆବଶ୍ୟକତା ପଡ଼େ ନା । କାରଣ, ତିରୋଧାନ ସମୟରେ କାନ୍ହେଇର ବୟସ ହୋଇ ଥିଲା ମାତ୍ର ଛବିଶ ।



# କନ୍‌ହେଇର ଶେଷ ଚିଠିର ଉତ୍ତର

• ଇନ୍ଦୁଭୂଷଣ କର

ସ୍ନେହର କନ୍‌ହେଇ !  ବାଲେଶ୍ୱର, ୭।୮।୭୫—ରାତି

ତୁମେ ଯେ ଏତେ ଶୀଘ୍ର, ଆମ ସଭିଙ୍କୁ ଦୁଃଖରେ ମ୍ରିୟମାଣ କରି ଚିରଦିନ ପାଇଁ ଆମକୁ ଭୁଲି, ଅଭିମାନ କରି, ଛାଡ଼ି ଚାଲିଯିବ, ସେ କଥା ମୁଁ କଳ୍ପନା ମଧ୍ୟ କରି ପାରୁନ ।

ତୁମକୁ ମୋର ଜଣେ ଆଦରର ସାନଭାଇଟି ଭାବି, କେତେ ଯେ ଦୁଃଖ ସୁଖ ହୋଇଛୁ–ସେ ସ୍ମୃତି ଆଜି ମୋ ହୃଦୟକୁ ଉଦ୍‌ବେଳିତ କରି ତୋଳୁଛି । ଯୁବ-ସାହିତ୍ୟିକ ମାନଙ୍କ ମଧ୍ୟରେ ତୁମେ ଜଣେ ଏକନିଷ୍ଠ ଗାଳ୍ପିକ ଥିଲ । ତୁମେ ଯେ ଏକ ପ୍ରେରଣାର ସାରସ୍ୱତ ଉତ୍ସ ଥିଲ, ତା' ତୁମର ଗଳ୍ପ, କଥାବାର୍ତ୍ତା, ଆଳାପ ଆଲୋଚନା ଓ ବନ୍ଧୁ ବାନ୍ଧବଙ୍କୁ ଲେଖିଥିବା ଅସରନ୍ତି ଚିଠିରୁ ହିଁ ଜଣା ପଡ଼େ ।

ଅନେକ ଦିନ ତୁମେ ମୋ' ପାଖକୁ ଆସିଛ କୁନି ସାନ ଭାଇଟି ପରି । ମୋ' ପାଖକୁ ବସି ଅଳି କରିଛ "ଆଜି ଗୋଟିଏ ସାହିତ୍ୟ ଆସର" ହେଉ । ଆପଣ କାର୍ତ୍ତିକ 'ଚନ୍ଦ୍‌'ର ଗଳ୍ପ ବିଶେଷାଙ୍କ ଶୀଘ୍ର ବାହାର କରୁନାହାନ୍ତି । 'Image' ପାଇଁ ଆୟୋଜନ କରନ୍ତୁ ।" ତୁମର ହସ ହସ ମୁହଁ, ମିଠା କଥା, ମନେ ପଡ଼ିଲେ ଦୁଃଖ ଲାଗୁଛି । ତୁମେ ଆଉ ମୋ' ଘରକୁ ଆସିବନି । ମୁଁ ଘରେ ନ ଥିଲେ କୁନି ଚିଠିଟିଏ କିଏ ଲେଖି ଦେବ । "ଆସିଲୁ, ବସିଲୁ ; ଭାଉଜଙ୍କଠାରୁ ରସଗୋଲା ଖାଇଲୁ । ଏମିତି ଆସୁଥିବୁ ଖାଉଥିବୁ । ସନ୍ଧ୍ୟାରେ ସାହିତ୍ୟ ଆସର ଜମିବ ।" ତୁମର ସେଇ ଗୋଟିଏ କଥା "ସାହିତ୍ୟ ବେଶ୍ ଜମିବ ।" ଯେପରି ସାହିତ୍ୟ ଥିଲା ତୁମର ଜୀବନ, ତୁମର ପ୍ରାଣ, ତୁମର ଅକୁହା ପ୍ରେମ, ତୁମ ଜୀବନର ସବୁ କିଛି ।

ତୁମର ୭।୫।୭୫ର ଚିଠିଟି ସାଇତି ରଖିଛୁ ଏକ ପ୍ରାଣ ସ୍ପର୍ଶୀ ସାହିତ୍ୟାନୁରାଗର ସ୍ମୃତି ସ୍ୱରୂପ ।

ନେଇ ଶଠିରୁ ତୁମର ଗଭୀର ସାହିତ୍ୟାନୁରାଗର ଏକ ଜ୍ୱଳନ୍ତ ଉଦାହରଣ ମିଳେ। ତୁମେ ଲେଖି ଥିଲ – "ଏବେ ସାହିତ୍ୟ ଏକାଡେମୀ ତରଫରୁ ନାଟକୋତ୍ସବ ହେଉଛି। ସପ୍ତାହେକାଳ ହେବ। ସେଥିରେ ଓଡ଼ିଶାର ଅନେକ ପ୍ରସିଦ୍ଧ ଲେଖକ ଭାଗନେଇବାର ଯିବେ। ସେଇ ସୁଯୋଗରେ ଫକୀରମୋହନ ସାହିତ୍ୟ ପରିଷଦ ତରଫରୁ ଗୋଟିଏ "ସାହିତ୍ୟ ସପ୍ତାହ" କଲେ ଭଲ ହୁଅନ୍ତା। ସମସ୍ତେ Utilised ହୋଇ ପାରନ୍ତେ। ତା' ଛଡ଼ା ଗୁଡ଼ାଏ ଆଲୋଚନା ହୋଇ ପାରନ୍ତା। ଆପଣ ବ୍ରଜବାବୁ, ପୁରୁଷୋତ୍ତମ ବାବୁ, ପଞ୍ଚାନନ ବାବୁଙ୍କୁ କହି କରିବେ। ଏଇ ସୁଯୋଗରେ ସାହିତ୍ୟ ବେଶ ଜମିବ। ମୁଁ ସପ୍ତାହେ ଛୁଟି ନେଇ ଯିବ।"

କନ୍‌ହେଇ, ତୁମର ଗୋଟିଏ କଥା ଆଜ ମୁଁ ଭୁଲି ପାରୁନ। ମୁଁ ଥରେ ତୁମକୁ ପ୍ରଶ୍ନ କରିଥିଲି –"କନ୍‌ହେଇ, ତୁମ୍ ଗଳ୍ପରେ ଏତେ ନିଃସଂଗତା, ଏତେ ବିଷର୍ଣ୍ଣତାର ସ୍ତୂପ କାହିଁକି ?" ତୁମେ ତା' ଉତ୍ତରରେ କହିଥିଲ—"ବିଶ୍ୱାସ କରନ୍ତୁ, ସାହିତ୍ୟରେ ସ୍ଥିତିବାଦ, ଧ୍ୱନିବାଦ ବା ଅନ୍ୟ କୌଣସି ତତ୍ତ୍ୱ କଥା ମୁଁ ବୁଝେନା। ମୋର ଅନୁଭୂତି, ମୋର ଅଙ୍ଗେ ନିଭେଇଲା ଯନ୍ତ୍ରଣା ସୁଖ ଦୁଃଖହିଁ ମୋର ଗଳ୍ପ, ମୋର ଜୀବନ, ମୋର ପ୍ରେମ, ମୋର ସବୁ କିଛି।" ବାସ୍ତବିକ. ତୁମର ଉତ୍ତର ଯଥାର୍ଥ। ତୁମର ଗଳ୍ପ 'ଜାରଫିଡ୍,' 'ବୁମେରାଂ,' 'ପାଚେଶ୍'ରେ ଅନୁଭୂତିର ତୀବ୍ରତା, ଜୀବନର ନିଃସଂଗତା ଏତେ ମର୍ମସ୍ପର୍ଶୀ ଯେ ସ୍ଥିତିବାଦୀ ସାହିତ୍ୟିକ ଆଲବେୟାର କାମ୍ୟୁଙ୍କ Out sideରେ ମିଓରସଲ ଚରିତ୍ରର ଯନ୍ତ୍ରଣାରୁ ଅଧିକ ପ୍ରାଣସ୍ପର୍ଶୀ ଓ ମର୍ମନ୍ତୁଦ।

ସୁବର୍ଣ୍ଣରେଖା ନଈ ଡେଇଁଲେ ଭୋଗରାଇ ଥାନାର ସେ ଏକ ଅଖ୍ୟାତ ପୁରପଲ୍ଲୀର ନୁଆଣିଆ ଘରକୁଡ଼ିଆରେ ବସି ତୁମର ଦୁଃଖିନୀ ବୁଢ଼ୀମା ଓ ନିଃସହାୟ ହତଭାଗିନୀ ଭଉଣୀ କାନ୍ଦୁଥିବେ। ଆଉ ଦି'ଦିନ ପରେ ବଢ଼ି ଆସିବ। ପ୍ରବଳ ବଢ଼ି, ଗାଁ-ଗଣ୍ଡା ମଧ୍ୟ ବନ୍ୟା ପାଣିରେ ବୁଡ଼ି ଉବୁଟୁବୁ ହେବ। ତୁମ ନୁଆଣିଆ ଘରକୁଡ଼ିଆର ଯିଦ ଖସିପଡ଼ିବ ତେବେ ତୁମର ବୁଢ଼ୀମା' ଓ ହତଭାଗିନୀ ଭଉଣୀ ତୁମର ମୃତ୍ୟୁକୁ ବାହୁନି ବାହୁନି କେତେ ଯେ କାନ୍ଦିବେ "କୁଆଡ଼େ ଗଲୁ ଆମ କାହ୍ନୁ-କନ୍‌ହେଇ। ଆଜି ଆମର କିଏ ଅଛି। କିଏ ଆମକୁ ଏ ବଢ଼ିରୁ ଏ ମହାରଣରୁ ରକ୍ଷା କରିବ କାହାକୁ ଆଶା କରି ବଞ୍ଚି ରହିବୁ।

ସାହିତ୍ୟର ତୀବ୍ର ଗୋଷ୍ଠୀ ବିବାଦର ବନ୍ୟାରେ ଆମେ ସମସ୍ତେ ଭାସିଲା ବେଳେ ମୁଁ ତୁମର ମା'ଙ୍କ ପରି କାନ୍ଦୁଛି। ଗା'ଲ୍ଟିକ ଘରଟି ଥିଲା, ମନକୁ ଛୁଇଁଲା ଭଳି କେତେ

ଗଳ୍ପ ଲେଖୁଥିଲ । କେତେ ଆଦରର କଥା କହୁଥିଲ । ମୁହଁରେ ସବୁବେଳେ ହସ ଫୁଟୁଥିଲ । ବାବୁରି ବାଳ ମଧ୍ୟରେ ଦୁଇଟି ଉଜ୍ଜ୍ୱଳ ଆଖି ମିଟି ମିଟି କରି ଚାହିଁ ରହୁଥିଲା । ଅଭିମାନୀ ଝିଅଟି, ପୁଅ, ଅତି ସ୍ୱାର୍ଥପର୍ଣ୍ଣୀ ଗୃହିଣୀ ଥିଲେ ତୁମର ।

ଜୀବନର ବୋଝ-ଜଞ୍ଜାଳ ତୁମ ଠିକ ଦେହ ସହି ପାରିଲାନି । ସତ କଥା ତୁମେ ଦିନେ ମୋତେ କହିଥିଲ ; ବର୍ତ୍ତମାନ ବାହା ହୋଇ ପାରୁନି । ଏ ବୋଝ ସହି ହେବନି । ଯେବେ ବାହା ହେବି ଆପଣଙ୍କୁ ନିଶ୍ଚୟ କହିବି । ପ୍ରକୃତରେ, ଛବିଶ ବର୍ଷ କାଳ କେତେ ଅସହନ୍ତ ଦୁଃଖର ବୋଝ ତୁମେ ନ ବହିଛ । ଦୁଇ ବର୍ଷର ହୋଇ ଥିଲ ବାପା ତୁମର କଲିକତାର ହଣାକଟାରେ ମଲେ । ବାପାଙ୍କ ସ୍ନେହ ପାଇ ପାରିଲନି, କୈଶୋରରେ ମୁଠେ ଭଲ ଖାଇ ପାରିଲନି । ମୁଣ୍ଡ ଖାଲ ତୁଣ୍ଡରେ ମାଡ଼, ଦିନ ରାତି ଟିଉସନ କରି, ବାଉବୁଲା ଜୀବନ ଯୋଗାଡ଼ କରି କେତେ କଷ୍ଟ କରି ବି. ଏ. ପାଶ କଲ । କରାଣୀ ଚାକିରିର ଦରମା ରାଜଧାନୀରେ ସୁସ୍ଥ ଜୀବନ ପାଇଁ ନଅଣ୍ଟ । ସେଥିରେ ପୁଣି କଲିଜ୍ ରୋଗ । ପଇସା ଏତେ ନାହିଁ ଯେ ବଡ଼ ଡାକ୍ତରଙ୍କୁ ଦେଖାଇବ । ହୋମିଓପ୍ୟାଥିର ଆଶ୍ରୟ ନେଇ ଥିଲ, ବେଶ୍ ଭଲ ଥିଲ । କିନ୍ତୁ ଶେଷ କେତେ ଦିନ ପାଇଁ କାହିଁକି ସେ ବଡ଼ ଡାକ୍ତରଖାନାକୁ ଗଲ ? ଜୀବନର ସବୁ ପୁଞ୍ଜିଭୂତ ଯନ୍ତ୍ରଣାର ଶେଷ ଶିକାର ହୋଇ ଶେଷରେ ଜୁଲାଇ ଛବିଶ ତାରିଖ ନିଶାର୍ଦ୍ଧରେ ଏକାକୀ ରାଜଧାନୀର ହସ୍ପିଟାଲର ଏକ ନିର୍ଜ୍ଜନ ଅନ୍ଧାରୁଆ ପରିବେଶ ମଧ୍ୟରେ ଏ ପୃଥିବୀର ମାୟା ତୁଟିଗଲ । ପ୍ରକୃତରେ ଏତେ ଦୁଃଖ, ଏତେ କଷ୍ଟ, ଏତେ ଯନ୍ତ୍ରଣା ତୁମେ କେମିତି ସହୁଥିଲ । ପୁଣି ସେଇ ଯନ୍ତ୍ରଣା, ସେଇ ଅସହନ୍ତ ଲୁହକୁ ନେଇ କେମିତି ସାହିତ୍ୟ ଆକାଶକୁ ଅଗଣିତ ଗଳ୍ପ-ମାଳାର ତାରକାରେ ସଜାଇ ନେଇ ଥିଲ ।

ଏବେ ମୋର ସାନ ଭଉଣୀ ମୋତେ କହୁଥିଲେ—"ଭାଇ, ଆପଣମାନଙ୍କ ଜଣେ ଓଡ଼ିଆ ଝିଅ ମୋର ଜଣେ ସାଙ୍ଗ ଭଉଣୀ ପାଖକୁ ଲେଖିଥିଲେ — କନ୍ଦେଇ ମରିଗଲେ ପରା ଭାବି ହେଉନି । ତାଙ୍କ ଲେଖା ପଢ଼ିବାକୁ ଭାରି ଭଲ ଲାଗେ । ତାଙ୍କୁ ଭାରି ଭଲ ଲାଗେ ।"

ସତେ, ସେଦିନ ତୁମର ମୃତ୍ୟୁ ଖବର ଶୁଣି ମୋ ଆଖିରେ ଅଶ୍ରୁ ଭରି ଆସିଥିଲା । ଆଜି ତୁମକୁ ସ୍ମରଣ କଲା ବେଳେ ମଧ୍ୟ ମୋ ଆଖି ଲୋତକ ପୂର୍ଣ୍ଣ ହୋଇ ଆସୁଛି ।

କନ୍ଦେଇ, ତୁମେ ଶକ୍ତିମାନ୍ କଥାଶିଳ୍ପୀ ଥିଲ । ତୁମର ଆତ୍ମାର ସଦ୍‌ଗତି କାମନା କରି ମୁଁ ସ୍ମୃତି ତର୍ପଣ କରୁଛି ନିର୍ଜନରେ ବସି ।

# କନ୍‌ହେଇ

• ଶୈଳବାଳା ମହାନ୍ତି

କନ୍‌ହେଇ ଦେହରେ ଜ୍ୱର ଥାଏ ଶହେ ଚାରି । ପାଖରେ ବସିଥା'ନ୍ତି ତା' ପ୍ରାଣର ବନ୍ଧୁ କୁଞ୍ଜ, ଅଣିମା, ମିହିର ଆଉ ସୁରଭାଇ । ଆଖି ବୁଜି ଶୋଇଥିଲା କନ୍‌ହେଇ । ଖଟର ଧାରକୁ ଟିକିଏ ଘୁଞ୍ଚି ଆସିଲା—କହିଲା- "ଅପା, କିଏ ଗୋଟାଏ ମୋ' ପାଖକୁ ମାଡ଼ି ମାଡ଼ି ଆସୁଛି, ଚାବିଟା ପାଉନି, ଗୋଟାଏ ଦୁଆର ଖୋଲିବାକୁ ବହୁତ କଷ୍ଟ କରୁଛି, ବହୁତ ରହସ୍ୟ ଉଦ୍‌ଘାଟନ ହୁଅନ୍ତା ।' କଥା ନୁହେଁ ପ୍ରଳାପ । ଚମକି ପଡ଼ିଲି, ଏ କଅଣ କହୁଛି କନ୍‌ହେଇ ? କେଉଁ ଦୁଆର ଖୋଲି କରି ସେ ଯିବ ?"

କେଉଁ ଦୁଆର ଖୋଲି କରି ସେ ଗଲା ? ହାୟ ! ସେଦିନ ଜୁଲାଇ ମାସ ଛବିଶ ତାରିଖ, ରାତି ଦଶଟା । ଅଣିମା କନ୍‌ହେଇକୁ କୋଳରେ ଆଉଜାଇ ଧରି ଥିଲେ । ମୁଁ ତାକୁ ଗରମ କ୍ଷୀର ଟିକିଏ ପିଆଇ ଦେଲି । ଟିକିଏ କାଶ ହେଉଥିଲା, ଉଠି ଟିକିଏ ବସି ଥିଲା । ସେ ରାତି ବାରଟାରେ ନିଜେ ଉଠିଲା, ଚାଲିଲା ବି ଟିକିଏ, ପାଣି ପିଇବାକୁ ମାଗିଲା । ବାରଟା ସତଚାଳିଶ ମିନିଟ୍‌ରେ କନ୍‌ହେଇ ଆମକୁ ଛାଡ଼ି ଦେଇ ଚାଲି ଗଲା, କିଏ ବା ଏକଥା ଭାବି ଥିଲା ? କେଉଁଠୁଁ କି ଚାବି ସେ ପାଇଲା ? କେଉଁ ରହସ୍ୟ ଉଦ୍‌ଘାଟନ କରିବାକୁ କେଉଁ ଦୁଆର ବାଟେ ସେ କୁଆଡେ ଚାଲିଗଲା ? ଏତେ ଉଜ୍ଜ୍ୱଳ ଆଲୋକ ବିକିରଣ କରୁଥିବା ପ୍ରଦୀପଟି ହଠାତ୍ ଦମକାଏ ପବନରେ ନିଭିଗଲା । ଏ ଦୁନିଆକୁ ଦେଇଥିବା ଆଲୋକ ଲିଭି ନାହିଁ, ଲିଭିବ ନାହିଁ । ପ୍ରତିଟି ଅନ୍ତର, ତାକୁ ଜାଣିଥିବା, ତାକୁ ଥରେ ଦେଖିଥିବା ପ୍ରତିଟି ଲୋକର ଅନ୍ତର ଆକୁଳ ହେଉଛି, ପ୍ରଦୀପଟିକୁ ହାତରେ ପାଇବା ପାଇଁ, ପାଖରେ ପାଇବା ପାଇଁ ।

ତାକୁ ଆଉ ଆମେ ପାଖରେ ପାଇ ପାରିବାନି -- ସେ ଆଉ ଆମ ସାଥିରେ ବସିବନି, ହସିବନି, କବିତା ପଢ଼ିବନି ; ଏ: ଜ: ଅଫିସକୁ ଫୋନ କଲା ମାତ୍ରେ ଦଉଡ଼ି

ଆସିବେନ। ସତ ଅନିଦ୍ରା ହୋଇ ସେ ଆଉ ଗଳ୍ପ ଲେଖି ବସିବେନ 'ଚମ୍ପକ' ପାଇଁ ! ହାୟ ! !

ତା'ଙ୍କ ବାଣ୍ଟ ବୃଣ୍ଟି ମା' ଆଖିର ପାଣି ଆଖିରେ ମଲା। ସଭେଇ ଭଉଣୀ ଶୂନ୍ୟକୁ ଚାହିଁ ବାହୁନଲେ। ଆମ ସମସ୍ତିଙ୍କୁ ଭୁଲି କେମିତ ସେ କେଉଁଠି ରହିଲ ?

ତାଙ୍କୁ ଆଜ ଆମେମାନେ ପାଖରେ ପାଇ ନପାରିଲେ ମଧ୍ୟ ଆମ ସାହିତ୍ୟ-ଜଗତରେ ସେ ଏକ ଉଜ୍ଜ୍ୱଳ ଚନ୍ଦ୍ରମା। ତା'ର ଅମର ଲେଖନୀର ଅମୃତ ସୃଷ୍ଟି ସମସ୍ତଙ୍କୁ ମୁଗ୍ଧ କରୁଥିବ ସବୁ ଦିନ ପାଇଁ।



# ପ୍ରଥମ ଓ ଶେଷ ସାକ୍ଷାତ

ରଣଧୀର ଦାସ

ସେ ଏକ ବିଦଗ୍ଧ ଅପରାହ୍ନ !
ବୋଧହୁଏ ତିନି ବର୍ଷ ତଳର ସ୍ମୃତି ରୋମନ୍ଥନ କରୁଛି ।
ବାଇଶ ତେଇଶ ବର୍ଷର ଯୁବକଟିଏ ପରଦା ଠେଲି
ଅଫିସ ଭିତରେ ପ୍ରବେଶ କଲା । ହସ ହସ ମୁହଁରେ
ନମସ୍କାର ଠୋକି କହିଲା—ଆଜ୍ଞା ମୁଁ ବାଲେଶ୍ୱରରୁ ଆସିଛି—
କନ୍‌ହେଇ ... ... ... ... ।
କହ୍ନେଇ ......... ଏ ନାମ ସହିତ ମୁଁ ଘନିଷ୍ଠ ହୋଇ ନଥିଲି ।
ମୋ କଣ୍ଠରେ ପ୍ରଶ୍ନବାଚୀ ?
ଗୋଟିଏ ମୁହୂର୍ତ୍ତର ଅବସାନ ପରେ ସେ କହିଲା—
କହ୍ନେଇଲାଲ ଦାସ । ପୂରା ନାମଟି ଶୁଣିବା ପରେ
ମୋର ବିସ୍ମୟ ଭାବ କଟିଗଲା । "ଜୀବନ ରଂଗ"ରେ
କହ୍ନେଇର ଗଳ୍ପ ସେତେବେଳେ ପ୍ରକାଶ ପାଇଥାଏ ।

ତା'ପରେ କହ୍ନେଇର ଅନେକ ଗଳ୍ପ ବିଭିନ୍ନ ପତ୍ର-ପତ୍ରିକାରୁ
ପଢ଼ିଛି । ଭବିଷ୍ୟତରେ ଅନେକ ପ୍ରତିଷ୍ଠା ପାଇବ, ବନ୍ଧୁମାନଙ୍କୁ
କହିଛି । ମାତ୍ର ହଠାତ୍ ଆକସ୍ମିକ ଭାବରେ ସେଇ ତରୁଣ
କଥାଶିଳ୍ପୀର ଜୀବନ-ଦୀପ ଲିଭି ଯିବ ତାହା ମୁଁ ଆଜି ମଧ୍ୟ ବିଶ୍ୱାସ
କରି ପାରୁ ନାହିଁ ।

କହ୍ନେଇ ସହିତ ସେଇ ଗୋଟିଏ ସାକ୍ଷାତକାର, ତାହା
ପ୍ରଥମ ଓ ଶେଷ ସାକ୍ଷାତ ।



# ଗୋଟିଏ ପ୍ରତିଭାର ଅପମୃତ୍ୟୁ

• ନରସିଂହ ନନ୍ଦ

ଗତ ଜୁଲାଇ ଛବିଶ ତାରିଖ ରାତି ଶାହାନ୍ତାରେ କହ୍ନେଇ ଆମ୍ଭମାନଙ୍କୁ କନ୍ଦାଇ କନ୍ଦାଇ ଚାଲିଗଲା । ମୋଠୁଁ ଏବଂ ମୋର ସମକାଳୀନ ସାହିତ୍ୟିକ ବନ୍ଧୁମାନଙ୍କଠୁଁ ସେ ବୟସରେ ଅନେକ ଛୋଟ । ମାତ୍ର ଛବିଶ ବର୍ଷର ଗଜା ଭେଣ୍ଡିଆ ଟୋକା । ସବୁବେଳେ ହସ ହସ ମୁହଁ, କଳାଭଅଁର ପରି ପ୍ରତିଭାଦୀପ୍ତ ଆଖି ଦୁଇଟି, ବିନମ୍ର ବ୍ୟବହାର, ପ୍ରକୃତ ସାହିତ୍ୟରସ ପ୍ରାଣ ପ୍ରାଚୁର୍ଯ୍ୟ ଭରା ସମସ୍ତଙ୍କର ଅତି ଆଦରର ଅଲିଅଳ କହ୍ନେଇ ଏମିତି ଆକସ୍ମିକ ଆଜି ମର୍ମନ୍ତୁଦଭାବେ ବିଦାୟ ନେଇ ଯିବ ବୋଲି ଆମେ କେହି ଜାଣି ପାରି ନଥିଲୁ ସିନା, ସେ କିନ୍ତୁ ନିଜେ ଜାଣି ପାରିଥିଲା । କାରଣ ଏଇ କେତେ ଦିନ ହେଲା, ତା' ଗଳ୍ପ କବିତାରେ ଶବ, ମଇଁଷି ପିଠିରେ ଭ୍ରମଣ, ରକ୍ତ, ମାଂସ, ବେଗ, ଯନ୍ତ୍ରଣା ବ୍ୟବଚ୍ଛେଦ ଇତ୍ୟାଦିର ବର୍ଣ୍ଣନା ଦ୍ୱାରା ତାର, ଅବଚେତନ ମନରେ ମୃତ୍ୟୁ ସଚେତନତାର ଯେ ସ୍ପଷ୍ଟ ପ୍ରତିଫଳନ ତାହା ସେ ଚାଲିଗଲା ପରେ ଦେଖି ଆଶ୍ଚର୍ଯ୍ୟ ଲାଗେ ।

[illegible]' ସତୁରିରେ ବି. ଏ. ପାଶ କରି ବାଲେଶ୍ୱରର ଏଇ ଏକାନ୍ତ ତରୁଣ ସାହିତ୍ୟିକ ଅତି ଅଳ୍ପ ସମୟ ମଧ୍ୟରେ ଓଡ଼ିଶାର ପ୍ରତିଷ୍ଠିତ ଓ ଅର୍ବାଚୀନ ପ୍ରତ୍ୟେକ ସାହିତ୍ୟ ସାଧକଙ୍କ ମନ ପ୍ରାଣକୁ ଛୁଇଁ ପାରିଥିଲା ତା'ର କୃତି ମାଧ୍ୟମରେ । ଏତେ ଅଳ୍ପ ବୟସରେ, କେବଳ ପାଞ୍ଚ ସାତ ବର୍ଷର ସାହିତ୍ୟ-ଜୀବନ ଭିତରେ କହ୍ନେଇଲାଲ ତେୟାନବେଟି ପ୍ରକାଶିତ ଗଳ୍ପ ଓ ପାଞ୍ଚ, ସାତଟି ଅପ୍ରକାଶିତ ଗଳ୍ପ ସୃଷ୍ଟି କରି ପାରିଥିଲା । ଏବଂ ପ୍ରତ୍ୟେକଟି ଗଳ୍ପରେ ତା'ର ନିଜର ସ୍ୱାତନ୍ତ୍ର୍ୟ ବଜାୟ ରହିଥିଲା । [illegible] [illegible]ର ଓଡ଼ିଆ ଯୁବଲେଖକ ସମ୍ମିଳନୀର ଯୁଗ୍ମସମ୍ପାଦକ ଓ [illegible] [illegible] ବେଳକୁ ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ପରିଚିତ ଥିଲା । ଓଡ଼ିଶାର ବିଭିନ୍ନ ସାହିତ୍ୟ ପତ୍ର-ପତ୍ରିକାରେ କହ୍ନେଇର ଗଳ୍ପ କବିତା ପ୍ରକାଶିତ ଏବଂ ସବୁ ଗୁଡ଼ିକର ସାହିତ୍ୟିକ ମୂଲ୍ୟବୋଧ ଯେ କେତେ ବର୍ତ୍ତମାନ ଓଡ଼ିଆ ସାହିତ୍ୟର ସମାଲୋଚକମାନେ ବିଚାର କଲେ ଅବଶ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିବେ— ସ୍ୱର୍ଗତ ଦାସ ଏକ ଅପୂର୍ବ ପ୍ରତିଭାର ଦୀପ୍ତ ବିସ୍ଫୋରଣ । ନିକଟ ଅତୀତରେ ନବରବିରେ ପ୍ରକାଶିତ "ପ୍ରୟୋଜନୀୟ ହତ୍ୟାକାଣ୍ଡ ସମ୍ପର୍କରେ ଷଡ଼ଯନ୍ତ୍ର" ଏବଂ

“ଏକ ବ୍ୟବଚ୍ଛେଦର ଧାରା ବିବରଣୀ” ଗଳ୍ପ ଦୁଇଟିକୁ ବିଶ୍ଳେଷଣ, ବିଚାରକଲେ ରୂପକଳ୍ପ ପରିବେଷଣ ପଦ୍ଧତି ଏବଂ ଗାଳ୍ପିକ ମୂଲ୍ୟବୋଧ ଦୃଷ୍ଟିରୁ ସେ କେତେ ସାର୍ଥକ ଗଳ୍ପ ତାହା ପାଠ କଲେହିଁ ଉପଲବ୍ଧି କରି ହୁଏ । ବିଶେଷତଃ ବ୍ୟବଚ୍ଛେଦ ଗଳ୍ପଟିରେ କନ୍ହେଇଲାଲ ନିଜ ଲେଖାରେ ନିଜକୁ ବ୍ୟବଚ୍ଛେଦ କରି ଆଜି ଆମ୍ଭମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଲୁଚି ଯାଇଛି ।

ମରଣ ସଚେତନତା କନ୍ହେଇ କବିତାର ବିଶେଷତ୍ୱ—

“କେଉଁ ଏକ ଖୋଲା ଗ୍ରୀତ  ସୁନେଲି ଖରାରେ
ମଇଁଷି ପିଠିରେ ଚଢ଼ି  ଜଙ୍ଗଲକୁ ଯିବା ପାଇଁ
ଆଜି ଫେରେ କେବା ପାଇଁ  ଅମୃତ ଇସାରା
ତୁମେ ଖାଲି ପ୍ରତୀକ୍ଷାରେ  ଦିନ ଗଣୁଥିବ ।

ତୁମ ସବୁ ତୃଷ୍ଣାସୁ ଦିନର ଅପେକ୍ଷାରେ—‘ବର୍ଣ୍ଣାଳୀ’ କିମ୍ବା ତାର ‘ପ୍ରତୀକ୍ଷା’ କବିତାରେ (ଧରିତ୍ରୀରେ ପ୍ରକାଶିତ) ଏଇ ମୃତ୍ୟୁ ଆଶଙ୍କାର ସଙ୍କେତ ଲକ୍ଷଣୀୟ । କେତୋଟି ଗଳ୍ପକୁ ଲମ୍ବା ନାମକରଣ କରିବାରେ ତା’ର ଥିଲା ଆନନ୍ଦ । ଅଧ୍ୟାପକ ପଦ୍ମ ମହାନ୍ତିଙ୍କ ବିବାହ ଉପଲକ୍ଷେ ବନ୍ଧୁମାନଙ୍କ ଶୁଭେଚ୍ଛା ସମ୍ବଳିତ ‘ପୁଷ୍ପଧନୁ’ ସଙ୍କଳନରେ କନ୍ହେଇର ମିଳନାନ୍ତକ ଏକାଙ୍କିକାର ଶେଷ ଦୃଶ୍ୟରେ ସେ ଲେଖିଥିଲା “ମୁଁ (ସ୍ୱର୍ଗତ) ଏ ନାଟକର ଠିକ୍ ପଚିଶ ବର୍ଷର ଜୁବୁଲି ପୂରଣ କଲା ପରେ ଆଜି ଗୋଟିଏ ସେ ଓ ସେ ମଧ୍ୟ ଠିକ୍ ଏଇ ନାଟକ ଆରମ୍ଭ କରିବେ, ତାର ପଚିଶ ବର୍ଷ ପରେ ପୁଣି ··· ··· ··· ଅଂଧକାର ଅଂଧକାର ଅଂଧକାର ଏବଂ ଅଂଧକାର ଭିତରେ ଅଂଧକାର ।”

ଅନ୍ଧାର ହେଲା—ପଚିଶ ପୂରି ଛବିଶ ବେଳକୁ ସେ ଚାଲିଗଲା । ବିବାହ ହୋଇ ପାରିନି, ଘରେ ବିଧବା ମା’ ନାବାଳକ ଭାଇଟିଏ । ସମ୍ବଳ ଥିଲା କେବଳ ମା’ ଯଶୋଦାର କନ୍ହେଇ ।

ଆଲୁଅ ଲିଭିଗଲା । ତାହାର ଶେଷ ପାଉଁଶ ମୁଠାକରେ ରକ୍ତ ମାଂସର ସେଇ ପତଳା ଛବିଶ ବର୍ଷର ଟୋକାଟି ଆମ ଆଖିରୁ ହଜିଥିଲା ସିନା, ହେଲେ ସେ ଯେଉଁ କୃତୀ ଆମ ଓଡ଼ିଆ ସାହିତ୍ୟକୁ ଦେଇ ଯାଇଛି, ଏତେ ଅଳ୍ପ ବୟସରେ ସେଇଥିରେହିଁ ସେ ସବୁ ଦିନ ପାଇଁ ଆମମାନଙ୍କ ଭିତରେ ରହିଗଲା ।

ସେ କଷ୍ଟ ପୋଷୁ ମରିଛି । ମରିବା ପୂର୍ବରୁ ତା ଲେଖାରେ ଲେଖିଥିଲା । ମନ୍ତାପିକ ବୋଲି ବନ୍ଧୁବାର କହିଛି, ମଳି ମୃତ୍ୟୁପରେ କୌଣସି ବନ୍ଧୁଙ୍କୁ ସ୍ୱପ୍ନରେ ବି କହିନି । ଇଂରେଜ କବି କୀଟସ୍ ଛବିଶ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ । କନ୍ହେଇ ବି ଗଲା । ବଙ୍ଗଳାର ସ୍ୱର୍ଗତ ତରୁଣ କବି ସୁକାନ୍ତଙ୍କର ପ୍ରତିଭା ପ୍ରତି କବିଗୁରୁ ରବୀନ୍ଦ୍ରନାଥ ନତ ମସ୍ତକ ହୋଇଥିଲେ । କିନ୍ତୁ ଆଜି ଓଡ଼ିଆ ଜାତି ଏଇ ପ୍ରତିଭାସ[illegible] ତରୁଣ ସାରସ୍ୱତ ସାଧକ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବ, ତା' କୃତି ସହ ପରିଚିତ ହେଲେ ।

ମୃତ୍ୟୁ ପୂର୍ବରୁ ସେ ତାର ନିଜ ଗଳ୍ପଗୁଡ଼ିକର ତାଲିକା କରି ରଖି ଯାଇଛି । ବହି ଛପିବ ବୋଲି ଉଦ୍ୟମରେ ଥିଲା । କିନ୍ତୁ କାଳ ସର୍ବଲୀନ । ଯମ କଣ ବାଳୁତ, ଯୁବା ବା ବୃଦ୍ଧିର ବିଚାର କରେ । ସେ ଯେତିକି ଦିନ ପାଇଁ ଓ ଯେଉଁ ଉଦ୍ଦେଶ୍ୟ ନେଇ ଆସିଥିଲା ଚାଲିଗଲା । ଗଲାବେଳେ ତା' ପାଇଁ ଗଛପତ୍ର ବି ଝୁରିଲେ । କନ୍ହେଇର ସ୍ୱର୍ଗତ ଆତ୍ମା ସନ୍ତୋଷ ଲାଭ କରୁ ।



# ତରୁଣ ଗାଳ୍ପିକ କାନ୍ହେଇଲାଲ

• ଭଗବାନ ପଣ୍ଡା

କାନ୍ହେଇ ପତରେ ଝଡ଼ିଗଲା ! ସମ୍ବାଦଟି ପଢ଼ିବା ପରେ ନିଜକୁ ବିଶ୍ୱାସ କରି ହେଲା ନାହିଁ । ଢେଙ୍ଗା, ଲହ ଲହକା ଗୌରବର୍ଣ୍ଣର କାନ୍ହେଇ । ମାତ୍ର ୨୬ ବର୍ଷର ଯୁବକ । ଯୌବନର ମଧ୍ୟାହ୍ନରେ ପଦାର୍ପଣ କରିଥିଲେ ମଧ୍ୟ ଯୌବନକୁ ଉପଭୋଗ କରି ପାରି ନାହିଁ । ଗଛରେ ଫଳ ପାଚିଛି ଅଥଚ ସେ ନିଜେ ତା'ର ସ୍ୱାଦୁ ପାଇ ପାରିନି । ଏମିତି ନିଗ୍ରଶପ୍ତ ଆଉ ନିଃସ୍ୱହାପ୍ତଙ୍କ ଭଳି ସେ ଯେ ଝଡ଼ିଯିବ ଏକଥା କେମିତି ବା ବିଶ୍ୱାସ କରି ହେବ ? ?

ସାହିତ୍ୟ ସାଧନା ଥିଲା କାନ୍ହେଇର ଜୀବନର ପ୍ରଧାନ ବ୍ରତ । ସେହି ସୂତ୍ରରେ ତା' ସହିତ ପରିଚୟ । ଅନେକ ସାହିତ୍ୟ ସମାବେଶ, ସାଂସ୍କୃତିକ କାର୍ଯ୍ୟକ୍ରମରେ ଏକାଠି ଭାବରେ ଅନେକ ଆଲୋଚନା ସମାଲୋଚନାରେ ଭାଗ ନେଇଛୁ । ଓଡ଼ିଆ ସାହିତ୍ୟରେ ବିଶେଷ କରି ଓଡ଼ିଆ ଗଳ୍ପ ସାହିତ୍ୟ ଜଗତରେ ତରୁଣ ଗାଳ୍ପିକ କାନ୍ହେଇଲାଲ ଦାସଙ୍କୁ ନ ଜାଣିଛି ବା କେଉଁ ପାଠକ ? ଏତେ ତରୁଣ ବୟସରେ ଗଳ୍ପ ସାହିତ୍ୟରେ ସେ ଯେ ହଲଚଲ ସୃଷ୍ଟି କରି ପାରିଲା ସେକଥା ଭାବିଲେ ସ୍ୱତଃ ବିସ୍ମିତ ହେବାକୁ ପଡ଼େ । ଓଡ଼ିଶା ବାହାରର ପତ୍ର-ପତ୍ରିକା ମାନଙ୍କରେ କାନ୍ହେଇର ଲେଖା ଥରେ ନୁହେଁ, ଅନେକ ଥର ପ୍ରକାଶ ପାଇଛି । ପାଠକ ମହଲରୁ ଶୁଭେଚ୍ଛା ଆଉ ପ୍ରଶଂସାର ବାର୍ତ୍ତା ପଢ଼ିଅଛି । ଏସବୁ ଜାଣି ମଧ୍ୟ ବିଶ୍ୱାସ କରି ହୁଏ ନାହିଁ । ଏତେ ଅଳ୍ପ ବୟସରୁ ସେ ଏତେ ଉଚ୍ଚକୁ ଉଠିଲା କେମିତି ? କେମିତି ପାଠକ ପାଠିକାମାନଙ୍କ ପାଖରେ ସେ ଏତେ ପରିଚିତ ହୋଇ ପାରିଲା ? କାନ୍ହେଇ ଅନେକ ଗଳ୍ପ ଲେଖିଛି, କବିତା ମଧ୍ୟ । ସେଥି ମଧ୍ୟରୁ ଅନେକ ପ୍ରକାଶିତ ଆଉ ଅନେକ ଅପ୍ରକାଶିତ । ସେଥି ପ୍ରତି ତା'ର ଦୃଷ୍ଟି ନାହିଁ । ସାହିତ୍ୟ ସୃଷ୍ଟି ଯେମିତି ତା'ର ଏକ ପ୍ରଧାନ କର୍ତ୍ତବ୍ୟ । ଖାଲି ଲେଖକ ନୁହେଁ, କାନ୍ହେଇ ଥିଲା ଜଣେ ଉଚ୍ଚକୋଟୀର ପାଠକ । ଯେଉଁ ଲେଖକଙ୍କର ଲେଖା ତାକୁ ଭଲ ଲାଗୁଥିଲା, ତାଙ୍କ ପାଖକୁ ସଙ୍ଗେ ସଙ୍ଗେ ନିଜର ମତାମତ ପଠାଇବାକୁ ମଧ୍ୟ ସେ ଭୁଲୁ ନଥିଲା । କିନ୍ତୁ ଦୁଃଖ ହୁଏ — ଅଭିଶପ୍ତ ଉତ୍କଳ ଜନନୀ ଗର୍ଭରେ ଏଭଳି ଏକ ପ୍ରତିଭାର ସୃଷ୍ଟି ହୋଇଥିଲା କ'ଣ ଏମିତି ଅକାଳ ମୃତ୍ୟୁବରଣ କରିବା ପାଇଁ ?

ସାହିତ୍ୟ ସାଧକଙ୍କ ମଧ୍ୟରୁ ଅଧିକାଂଶ ମଧ୍ୟବିତ୍ତ ବା ନିମ୍ନ ଶ୍ରେଣୀର—ଏକଥା ଅନସ୍ୱୀକାର୍ଯ୍ୟ । କିନ୍ତୁ କାନ୍ହେଇ ଖାଲି ନିମ୍ନ ଶ୍ରେଣୀର ନୁହେଁ, ଅତ୍ୟନ୍ତ ଦୁଃସ୍ଥ ଆଉ ଦରିଦ୍ର । ଘରେ ବୟସ୍କା ବୃଦ୍ଧା ମାତା, ଦଶ ବାର ବର୍ଷରେ ସାନ ଭାଇ, ଦୁଇ ଭଉଣୀ । ଭଉଣୀ ନୁହେଁ ବିବାହ କରି ପର ଘରକୁ ଯାଇଥିଲେ ମଧ୍ୟ ଭାଗ୍ୟର ଫେର ଅଭାବରେ ସେମାନେ ସମସ୍ତେ ତା'ର ବେକରେ ବନ୍ଧା । ତେଣୁ ଭୁବନେଶ୍ୱରରେ ଏ. ଜି. ଅଫିସରେ ସାମାନ୍ୟ ବେତନଭୋଗୀ କିରାଣୀ ରୂପରେ ମାସିକ ଉପାର୍ଜନର ଅନ୍ତତଃ ତିନି ଚତୁର୍ଥାଂଶ ସେ ପଠାଏ ନିଜ ବିଧବା ମାତା, ସାନ ଭାଇ ଆଉ ଅସହାୟା ଭଉଣୀମାନଙ୍କ ପାଇଁ । ବାକି ଟଙ୍କାରେ ଚଳେ ମାସକ ଯାକ । ସବୁ ସତ୍ତ୍ୱେ ବି ସେ କେବେ କାହାରି ପାଖେ ହାତ ପତେଇ ନାହିଁ କିମ୍ବା କାହାକୁ ନିଜ ଦାରିଦ୍ର୍ୟ ସମ୍ପର୍କରେ ଅବଗତ ହେବାକୁ ଦେଇନି । ସଦା ହସ ହସ, ଅତ୍ୟନ୍ତ ମେଳାପୀ, ଭଦ୍ର ଆଉ ଶାନ୍ତ ଶିଷ୍ଟ ଥିଲା କାନ୍ହେଇ । ବନ୍ଧୁମାନଙ୍କ ସହିତ ସଦାବେଳେ ହସି ହସି ଆଳାପ କରେ—ସାହିତ୍ୟିକଙ୍କ ସାଙ୍ଗରେ ଯୁକ୍ତି କରିଛି, ନିଜର ଭୁଲକୁ ବିନା ଦ୍ୱିଧାରେ ମାନି ନେଇଛି, ଅନୁତାପ କରି ଅପରଠୁ କ୍ଷମା ଚାହିଁଛି । ଆଉ ଶେଷରେ ସାହିତ୍ୟ ସାଧନାରେ ନିଜକୁ ହଜାଇ ଦେଇ ସବୁ ଦିନ ପାଇଁ ସେ ହଜିଗଲା ।

କାନ୍ହେଇ ଚାଲିଗଲା । ସମସ୍ତେ ଏମିତି ଦିନେ ନା ଦିନେ ଯିବେ । କିନ୍ତୁ ତମ୍ଭା ଶିରୁଆ କାନ୍ଧ ଆସି ନାହିଁ ସବୁ ଦିନେ ବଞ୍ଚି ରହିବାକୁ ।

କିନ୍ତୁ ଦୁଃଖ ହୁଏ ଜୀବନର ବିକାଶ ମୁହୂର୍ତ୍ତରେ ତା'ର ଅକାଳ ବିୟୋଗ ପାଇଁ । ତା' ଯିବାବାଟକୁ ଖାଲି ଶ୍ରୀନନ୍ଦନ କରି ଦେଲା ସେତିକି ନୁହେଁ, 'ଅଧିକନ୍ତୁ, ଓଡ଼ିଆ ସାହିତ୍ୟ ଜଗତର ଗଳ୍ପ ରାଜ୍ୟରୁ ଏକ ଉଜ୍ଜ୍ୱଳ ସମ୍ଭାବନାମୟ ଜ୍ୟୋତିଷ୍କ ସବୁଦିନ ପାଇଁ ଅସ୍ତ ହୋଇଗଲା । ତା' ମୃତ୍ୟୁରେ ଓଡ଼ିଆ ସାହିତ୍ୟ ଜଗତର ଯେଉଁ ଅପୂରଣୀୟ କ୍ଷତି ଘଟିଲା, ତାର ମୂଲ୍ୟାଙ୍କନ କରିବା ସହଜ ନୁହେଁ ।



# ଗଳା ପୁଚ......................

**• ଗୁରୁ ମହାନ୍ତି**

ଆଜ ଆକାଶ ଝରି ଯାଉଥିବା ଏଇ ମୁହୂର୍ତ୍ତରେ, ମଥୁରାପୁରକୁ ଗୋଡ଼ କାଢ଼ିଥିବା କୃଷ୍ଣର ଆଖି ଦୁଇଟି ମନକୁ ଛୁଏଁ । ସେ ସିନା ହସିଥିବ ! ଗୋପ ଦାଣ୍ଡର ତା'ର ଗାଈଆଳ ସାଥୀ-ସଙ୍ଗାତମାନେ ! ଗୋପ ଗାଁର ଦରିଦ୍ର ବୁଢ଼ୀଆ ଉତରର ପ୍ରେମ-କାଙ୍ଗାଳିଣୀ ଦରଜା ଫାଙ୍କରେ ଲୁଗାକାନି ଓଦା କରି ଦେଇଥିବା ଯଶୋଦା କଥାତ ପରର । ତା' ସ୍ତନ ତ ମା'ର ସ୍ତନ—ଧରଣୀର କଠିଣ ସ୍ତନ !

ସ୍ନେହର ମୁହୂର୍ତ୍ତ ସବୁ ମଣିଷ ଚାଲି ଯିବା ପରେ ମନରେ ଲାଗେ । ସ୍ନେହର ମୁହୂର୍ତ୍ତ ସବୁ ବଡାପୁ ପରର ମୁହୂର୍ତ୍ତ କେବଳ । ସ୍ନେହର ମୁହୂର୍ତ୍ତ ସବୁ ଅଜାଗା ଯା', ସବୁ ସ୍ଥାନରେ, ସବୁ ମଣିଷକୁ ଦେଖାଇ ହେବାର ନୁହେଁ । ଯିଏ ଚାଲିଗଲା ସିଏ ସିନା ଶୂନ୍ୟରେ ମିଶିଗଲା ! ଛାଡ଼ି ଯାଇଥିବା ସ୍ମୃତି ସବୁ, ଦରଦ ସବୁ ତା' ସହିତ ଶୂନ୍ୟତା ପର୍ଯ୍ୟନ୍ତ ଗୋଟିଏ ଧାଡ଼ିରେ ଲମ୍ବି ଗଲେ ମୋ' ଠାରୁ, ସାଥି ସଙ୍ଗାତଙ୍କ ଠାରୁ ତାର ଶୂନ୍ୟ ସିଡ଼ି ପର୍ଯ୍ୟନ୍ତ ।

ତା' ପରର ଏକ୍‌ଜିଷ୍ଟାନସ୍ । ପାତେଣା ଦେବା ପାଇଁ ଚେଷ୍ଟା ; କାରଣ ଆପଣାକୁ ବଞ୍ଚାଇ ରଖିବାକୁ ହେବ, ଗଢ଼ିବାକୁ ହେବ ଏବଂ ତାହା କେବଳ ସମ୍ଭବ ଆପଣାର ଜୀବନ ଭଳି କଞ୍ଚୁଥିଲେ, କାର୍ଯ୍ୟକ୍ଷମ ଥିଲେ, ସୁଖ ଦୁଃଖ ହୃଦୟଙ୍ଗମ କରିବାର ଶକ୍ତି ସଞ୍ଚୟ କରି ପାରିଲେ ।

ଯିଏ ଯେତେ ଆପଣାର କରି ପାରିବାର ହକ୍‌ଦାର, ସେ ସେତେ ଆପଣାକୁ ବିଛୁଡ଼ି ଦେବା ପାଇଁ କ୍ଷମ । ଯାହା ମୁହଁ ଯେତେ ହସହସ, କନ୍ଦାଇବାର ଆତ୍ମ-ବିଶ୍ୱାସ ତା'ର ସେତେ ଅଧିକ । ଦୁନିଆକୁ ପାଟେଣା ପାରିବାର ମଣିଷ ପାଇଁ ଦୁନିଆଟ ଗଢ଼ାଯାଇ ନଥିଲା ; ଜାବୁଡ଼ି ଧରିବା ମଣିଷ ପାଇଁ ଦୁନିଆର ଲୀଳା ଖେଳା । ଦୁନିଆର ସୁଖ ଦୁଃଖ ଭୋଗିବାକୁ ସେ ସେତେ ପାରଙ୍ଗମ । ଦୁନିଆ ଓ ମଣିଷକୁ ବୁଝିବାକୁ ସେ ସେତେ ସମଝଦାର । ସମଝଦାରର କଷଣ ଅନେକ । କହିବା

ମଣିଷର ବିଷୟ ବୁଝିବାଠାରୁ ନ କହି ପାରିବା ମଣିଷର ମଣିଷକୁ ବୁଝିବା ଦୁନିଆକୁ ବୁଝିବାର ପ୍ରଚେଷ୍ଟା ଅଧିକ ।

ଶୁଭ୍ର ନଥିବା ସଙ୍ଗୀତ—ସଙ୍ଗୀତର ମୂର୍ଚ୍ଛନାଠାରୁ ସଙ୍ଗୀତମୟ । ସେ ବୋଧେ ତେଣୁ କବିତା ଲେଖି ନଥିଲେ । ସଙ୍ଗୀତ ଭିତରେ ମଜ୍ଜି, ସଙ୍ଗୀତ ମୁଖରେ ଧରୁ ନଥିଲେ । ଗଦ୍ୟମୟ ଜୀବନ ବାହାରେ ଓ ସଙ୍ଗୀତମୟ ଅନ୍ତର ଭିତରେ । ହସ ହସ ମୁହଁରେ— ଆଖି ଦୁଇଟିରେ ସବୁକୁ ଆପଣାର କରିବାର ସଙ୍ଗୀତ ଯାହାକୁ ଜଣା, ଆଉ ସବୁ ତ ଛୁଠ ପଥର ।

ପୃଥ୍ୱୀ ବଢ଼ ଡାଣ୍ଡରୁ ପିନା ଓଡ଼ିଆ ଭାଷାର ନୂତନ ଉଚ୍ଚାରଣ ପାଇଁ ଯୁବ ଲେଖକଙ୍କର ମଜଲିସବ ସୃଷ୍ଟି ହେଲା ! ମଜଲିସବରେ ପିନା କଏ କେତେ ପସରା ମେଲିଲେ, କେତେ ରାଗ ରୋଷ, ଟାହୁଲ ଟାପରା, ଓଜର ଆପତ୍ତିର କାହାଣୀ କଏ ବଖାଣି ଗଲେ, କିନ୍ତୁ ସେଇ ଓଜର ଆପତ୍ତି ଭିତରେ, ମୁହଁ ଫଟା ଓ ନାକ ଫୁଲା ଭିତରେ କେତେ କଏ ଆସିଲେ । ତାର ଇତିହାସ ଲଢ଼ି ନାହିଁ । ଲଢ଼ିବ ନାହିଁ । ନ ରହୁ । ଆମେ ତ ସେମାନଙ୍କର ଇତିହାସ ପାଇଁ ମନ ମନେଇନୁ । ଆମ ମନ କିନ୍ତୁ ଗୃହୀଁ ବସିଛି ସେମାନଙ୍କ ପାଇଁ ; ଯିଏ ମୁହଁ ଫଟା ଫଟି ପାଇଁ ; ଆଖି ଠାରଠାରି ପାଇଁ ଆସି ପୁଣି ଚାଲି ଯିବେ । ମଜଲିସବର କ୍ଷଣିକ ଉତ୍ତେଜନା ତ ଆମର କାମ୍ୟ । ଯାହେଉ । ମଜଲିସବର କୋଳାହଳ ତ ଆମର ସଙ୍ଗୀତ ! ସେ ଇତିହାସ କେହି ଲେଖି ଯିବ ନାହିଁ – ସମଝଦାର ସବୁ ବୁଝିବ ।

ସମଝଦାରକୁ ଇସାରା କାଫି ।

୧୯୬୪ ରୁ ୧୯୭୧ । ପୃଥ୍ୱୀ ବଢ଼ ଡାଣ୍ଡରୁ ମେଘାସନ । ପ୍ରେମରେ ପଡ଼ିବାର ବୟସ । ପ୍ରେମରେ ଢାଳିବାର ସବୁସବୁ ଆଖି ଦୁଇଟି ସେଦିନ ଧୂଳି ବୁଲୁଥିଲା ବାରିପଦା ସମ୍ମେଳନ ମଝିରେ । ଯେଉଁଠି ପ୍ରଥମ ପରିଚୟ । ମଜଲିସବକୁ କାନ୍ଧେଇ ନେବାର ସାମାନ୍ୟ ମୁହୂର୍ତ୍ତ । ପାଞ୍ଚଟି ବର୍ଷ । ସେଥିରେ ଯେ ସମସ୍ତ ଅଙ୍ଗୀକାର । ଶହେ ଜଣରେ ଜଣେ ହୋଇ ଦୁନିଆ ଡାଣ୍ଡରେ ଗୋଡ଼ କାଢ଼ିବାର ଅହଂକାର ।

ବାପର କନ୍ଦେଇ – ମା'ର କନ୍ଦେଇ ସେଇ ଦିନରୁ ପିନା ସାଥୀ-ସଙ୍ଗାତର କନ୍ଦେଇ ! ଆଜି ତ ମଥୁରାର କନ୍ଦେଇ । ଗଲା ଯେ ··· ··· ··· ଗଲା ପୁଚ କାହୁଡ଼ି ନ ଆଇବ ! !



# କ: ଲା: ଦା: ର ସ୍ମୃତି

• ସତ୍ୟ ମିଶ୍ର

କନ୍‌ହେଇ ଲାଲ ଦାସର ସ୍ମୃତି—ସ୍ମରଣର ସବୁଠୁଁ ଉପଯୁକ୍ତ ଓ ସବୁଠୁଁ ବେଶୀ ବାଞ୍ଛନୀୟ ରାସ୍ତା ହେଉଛି—ତାହାର ଓ ତା' ପାଖକୁ ଲିଖିତ କେତେକ ଚିଠିର ସଂକଳନ। ଗଳ୍ପ ଲେଖନରେ ତା'ର ଏତେ ବେଶୀ ସ୍ୱାଭାବିକତା ରହିଥିଲା ଯେ ତାର ଗପଗୁଡ଼ିକ ପଢ଼ି କଥାବାର୍ତ୍ତା ଓ ଚିଠିପତ୍ର ସବୁ ମଧ୍ୟ ସ୍ୱଚ୍ଛନ୍ଦ ଓ ସ୍ମରଣୀୟ। ତା' ସହିତ ହୋଇଥିବା ମୋର ସବୁ ସାକ୍ଷାତ, କଥାବାର୍ତ୍ତା ଓ ଚିଠି ଆଦାନ-ପ୍ରଦାନରୁ ମୋର ଏହି ଧାରଣା ହୋଇଛି। କନ୍‌ହେଇ ସମ୍ପର୍କରେ ସବୁଠୁଁ ବିଶେଷଭାବେ ମନେରଖିବା ଭଳି ଜିନିଷ ତା'ର ଗାମ୍ଭୀର୍ଯ୍ୟର ଅଭାବ। ତା'ଠି ସେଇ ଚପଳତା ଓ ଖୋଲାଖୋଲି ବ୍ୟବହାର ଟିକକ ନଥିଲେ ହୁଏତ ଆମେ ପରସ୍ପରକୁ ବ୍ୟକ୍ତିଗତ ସ୍ତରରେ ଆଦୌ ଚିହ୍ନି ପାରି ନଥାନ୍ତୁ। ଆମେ ଖାଲି ପରସ୍ପରର ଲେଖା ପଢ଼ିଥାନ୍ତୁ, କିନ୍ତୁ ବ୍ୟକ୍ତିଗତ ସ୍ତରରେ କେହି କାହାକୁ ଜାଣି ପାରନ୍ତୁ ନାହିଁ। ମନେ ଅଛି, ଓଡ଼ିଆ ଯୁବ-ଲେଖକ ସମ୍ମେଳନ (ଜୟପୁର) ବେଳେ ଆମେ ସବୁ, କନ୍‌ହେଇ, ଶୁଭେନ୍ଦୁ ମୁଣ୍ଡ, ବାଇ ପ୍ରଧାନ ପ୍ରଭୃତି କଥାବାର୍ତ୍ତା ଆରମ୍ଭ କଲୁଁ ଗପ ଲେଖା, ପତ୍ରିକା ପ୍ରଭୃତି ବିଷୟରେ, କିନ୍ତୁ ସମ୍ମେଳନର ପ୍ରଥମ କିଛି ଘଣ୍ଟା ପରେ ସେ ସବୁ ପାଠଶାଠ ଧନ୍ଦା କୁଆଡ଼େ ଉଭେଇ ଗଲା ଓ କ୍ରମଶଃ ଆରମ୍ଭ ହୋଇଗଲା ସବୁ ପ୍ରକାର ଶ୍ଳୀଳ, ଅଶ୍ଳୀଳ କଥାବାର୍ତ୍ତା ମଜାଗପ, ହୋହା ତଥା ପରସ୍ପରକୁ ବିନା-କାରଣରେ ଅତିରିକ୍ତ ପ୍ରଶଂସା କିମ୍ବା ଅତିରିକ୍ତ ନିନ୍ଦା କରିବା। ସେତେବେଳକୁ କନ୍‌ହେଇ ପାଲ୍ଲାହଡ଼ାରୁ ଆସି ଭୁବନେଶ୍ୱର ଏ. ଜି. ଅଫିସରେ ଡ଼କ ସାରଥାଏ। ଆମମାନଙ୍କୁ କହିବାଭଳି ଅନେକ କିଛି ଅଭିଜ୍ଞତା ଓ ଅନୁଭୂତି ସଞ୍ଚୟ କରି ସାରିଥାଏ—ସେତେବେଳେ ତା'ଠୁଁ ଆମେ ଶୁଣିଥିଲୁ ସେ କେବେ କେମିତି କାହାଠୁଁ ସାହାଯ୍ୟ ବା ଆଦର ପାଇଛି କିମ୍ବା କାହା ପାଖରେ 'ଠକି' ଯାଇଛି। କନ୍‌ହେଇ ସାଙ୍ଗରେ ଘନିଷ୍ଠତା ଏତେ ଶୀଘ୍ର ଜମିଯାଏ ଯେ ସନ୍ଧ୍ୟାବେଳକୁ ଆମେ ଆଉ ଟିକଏ ଆଗେଇ ଯାଇ ମିଳାମିଶି ଏକାଠି ପରନିନ୍ଦା, ପରଚର୍ଚ୍ଚା ଆରମ୍ଭ କରି ଦେଇଥାଉଁ। ଜଣେ ଲୋକ ଉଭୟ ଭଲ ଲୋକ ଓ ଭଲ ଲେଖକ ହୋଇଥିବ—କନ୍‌ହେଇ ଭଳି ଆଉ ଏମିତି ଖୁବ୍ କମ୍ ଦେଖିଚି !

ମନେ ଅଛି,—ଏକ ସମୟରେ କନ୍ହେଇ ତା'ର ସବୁ ଗପରେ କେବଳ 'ଶୈଳୀ'କୁ ଅତି ଜୋରରେ ମାଡ଼ ବସିଚି ବୋଲି ଅଭିଯୋଗ କରାଯାଉଥିଲା । କନ୍ହେଇ କିନ୍ତୁ ଗପ ଭିତରେ ବଢ଼ିଛି, ଛୁଡ଼ିଚି ଓ ବଦଳିଚି । 'ଉତ୍ତାନପାଦ' ପର୍ଯ୍ୟନ୍ତ ପହଞ୍ଚିବା ବେଳକୁ ଶୈଳୀ ଗୌଣ ହୋଇ ସାରିଚି—ସେ କେବଳ କଥ୍ୟମୟ ! ଯଦିଚ ତା'ର ଗପ ପଢ଼ିବା ପାଇଁ ଓ ପରଖିବା ପାଇଁ ଅନେକଙ୍କ ପାଇଁ ଏବେହିଁ ସମୟ ଆସିଛି ; ଆମେ କିନ୍ତୁ ଗୋଟାଏ କଥା ନିଶ୍ଚୟ କହିବୁ ଯେ କଥ୍ୟ ଓ ଶୈଳୀ ଭିତରେ ଚମତ୍କାର ଭାରସାମ୍ୟ ରଖିଥିବା କନ୍ହେଇର ସବୁଠୁଁ ସ୍ମରଣୀୟ ଗପ ନିଜେ କନ୍ହେଇ ଲାଲ ଦାସ । ଦେଖୁ ଦେଖୁ କ: ଲା: ଦା: ନିଜେ ଗପ ହୋଇଗଲା । ଆମେ ନିଜେ ଗପ ହୋଇ ନ ଯିବା ପର୍ଯ୍ୟନ୍ତ ତାକୁ ମନେ ରଖିଥିବୁ ।



# ଏକ ବିରଳ ଚରିତ୍ର

• ସମରେନ୍ଦ୍ର ନାୟକ

କନ୍ହେଇ ସହ ମୋର ପରିଚୟ ଏଇ କେତେ ବର୍ଷର । ଦୁନିଆରେ ଏମିତି କିଛି ଲୋକ ଥା'ନ୍ତି ଯେଉଁମାନେ ସ୍ୱଳ୍ପ-ପରିସର ଜୀବନ ଭିତରେ ଦୂରର ମଣିଷକୁ ପାଖକୁ ଟାଣି ଆଣନ୍ତି । କନ୍ହେଇ ଥିଲା ସେଇ ପ୍ରକାରର ଜଣେ ସ୍ନେହଶୀଳ ମଣିଷ । ସ୍ୱ-ଚରିତ୍ରରେ ତା'ର ଚୁମ୍ବକ ଥିଲା ।

ଏକଯୁଗର ଏକ ବର୍ଷଣମୁଖର ଗୋଧୂଳିରେ ଜଣେ କବି ବନ୍ଧୁଙ୍କ ଘରେ ତା' ସହିତ ମୋର ପ୍ରଥମ ଦେଖା ।

ତା' ପୂର୍ବରୁ ବିଭିନ୍ନ ପତ୍ର-ପତ୍ରିକାରେ ତା' ଲେଖା ପଢ଼ିଛି । ସମଧର୍ମୀ ବନ୍ଧୁମାନଙ୍କ ପାଖରୁ ତା'କଥା ଶୁଣିଛି । ରାସ୍ତାରେ ଯିବାବେଳେ ଦୂରରୁ କେହି ଦେଖେଇ ଦେଇଛନ୍ତି ; 'ଏଇ କନ୍ହେଇ, କନ୍ହେଇଲାଲ ଦାସ ଫକୀରମୋହନ କଲେଜରେ ପଢ଼େ । ସୁନ୍ଦର ଗପ ଲେଖେ ।'

ତା' ସ୍ୱଳ୍ପ ଜୀବନର ଶେଷ ବେଳକୁ ଆମର ସେଇ ବନ୍ଧୁତ୍ୱକୁ ଆହୁରି ନିବିଡ଼ କରି ଦେଲା ବାଲେଶ୍ୱରରୁ ପ୍ରକାଶିତ ମାସିକ ପତ୍ରିକା 'ଯୁଗଭେରୀ' । କାଳକ୍ରମେ ଜାଣିଲି ସେ ଟିଉସନ କରି ପାଠ ପଢ଼େ । ଗଳ୍ପ ଲେଖିବାର ଅସମ୍ଭବ ନିଶା । ସାହିତ୍ୟର ବିଭିନ୍ନ ଦିଗ ଉପରେ ନିରଳସ ଭାବେ ଘଣ୍ଟା ଘଣ୍ଟା ଆସର ଜମାଏ । କଥା କହିବାର ଉତ୍ତମ ଶୈଳୀ ତାକୁ ଜଣାଥିଲା । କାହାଣୀକାର ଯାହା ହେଲେ ବି ତା'ର ମନଛୁଆଁ କଥା-ଭାଷାରେ କେହି କେବେ ବିରକ୍ତ ହେବାର ମୋତେ ଜଣା ନାହିଁ । ଆଉ ବ୍ୟକ୍ତିଗତ ଜୀବନରେ ସେ ଥିଲା ଅଜାତଶତ୍ରୁ । ହସ ହସ ମୁହଁ । ମେଳାପି । ବେଶ୍ ମଜଲିସ ଚରିତ୍ର । ବିଶ୍ୱ ସଂସାରରେ ସିଏ ଥିଲା ଜଣେ ଖାଣ୍ଟି ଅଭିନେତା । ସିଏ ଆପଣା ବେଦନାକୁ ଲୁଚେଇ ରଖି ବେଶ୍ ହସି ହସି ସମସ୍ତଙ୍କୁ ହସାଇ ପାରୁଥିଲା । କଳାର ଦରବାରରେ ସିଏ ଜଣେ ଶିଳ୍ପୀ ଭଳି ଶିଳ୍ପୀ । ସିଏ ବ୍ୟକ୍ତିଗତ ଜୀବନର ଶୋକ-ଦୁଃଖରୁ ଊର୍ଦ୍ଧ୍ୱକୁ ଉଠି ଆପଣା ଦୃଷ୍ଟିକୋଣ ତଥା ସ୍ୱ-ମୌଳିକତାରେ ସର୍ଜନା କରିଥିଲା ତା'ର କଥାଶିଳ୍ପ ।

ଗୋଟିଏ ସଞ୍ଜର କଥା ମନେ ପଡ଼ୁଛି । 'ଯୁଗଶ୍ରୀ ପ୍ରେସ'ର ଉପବାସକ୍ଲିଷ୍ଟ ସାହିତ୍ୟ ଚତ୍ୱରରେ ଆମେମାନେ ଏକାଠି ହୋଇଥାଉଁ । ସେଠି ସେ ଯେଉଁ ଗପଟି ପଢ଼ିଥିଲ (ପରବର୍ତ୍ତୀ ସମୟରେ ତାହା ପ୍ରକାଶ ପାଇ ସାରିଛି) ତାର ଗୋଟିଏ ଅଂଶ ଆମ ହୃଦୟକୁ ବେଶ୍ ଆଲୋଡ଼ିତ କରିଥିଲା । ତା'ର ଶିରୋନାମା ଆଜି ମୋର ମନେ ନାହିଁ ସତ୍ୟ, ହେଲେ ପଢ଼ିବା ଲୋକ ନିଶ୍ଚୟ ଜାଣିଥିବେ ସେ କେମିତି ମାଟିର ସପନକୁ ଆକାଶର ଅନ୍ତରଙ୍ଗ ସହ ଯୋଡ଼ି ଦେଇଥିଲ ... ... ... ।

ତା'ପରେ ବାସ୍ତବରେ ବ୍ରଜବାବୁ (କବି ବ୍ରଜନାଥ ରଥ) ଙ୍କ ସହ ମିଳିତଭାବେ ଆମେ ଜୟପୁରର 'ଓଡ଼ିଆ ଯୁବ-ଲେଖକ ସମ୍ମିଳନୀ'କୁ ଯାଇଥିଉଁ । ସେ ବର୍ଷ ସେ ଓ. ଯୁ. ଲେ. ସ. ର ସହ-ସମ୍ପାଦକ ଥାଏ । ଏଇତ ସେଇ ସମ୍ମିଳନୀର ଫଟୋ— ମୋ ଶଯ୍ୟା-ପାର୍ଶ୍ୱ ପଢ଼ା ଟେବୁଲର ପ୍ରାୟ ୧୩୦ ଡିଗ୍ରୀ ଦକ୍ଷିଣ କାନ୍ଥରେ ଝୁଲୁଛି । ଆମ ଧାଡ଼ିର ମୋ ବାମପାଖର ଠିକ୍ ସାତ ଜଣଙ୍କ ପରେ କାନ୍ହେଇ ଛିଡ଼ା ହୋଇଛି । ତା' ଫଟୋକୁ ଚାହିଁଲା ବେଳେ କୁହାଳି କୁହାଳି ସେଇ ତରୁଣ ବର୍ଷର ହସ ହସ କାନ୍ହେଇ ଯେ ତା' ଜୀବନର ସର୍ବଶେଷ ଘଟଣା/ଦୁର୍ଘଟଣାରେ ଆମମାନଙ୍କୁ ଗଭୀର ଶୋକାତୁର କରି ହଠାତ୍ ଅବେଳରେ ସେ-ପୁରକୁ ଚାଲି ଯାଇଛି ଏକଥା ମୁଁ ଯେମିତି ଠିକ୍ କରି ବିଶ୍ୱାସ କରି ପାରୁ ନାହିଁ ।

ବି. ଏ. ପାସ୍ କରିବା ପରେ ଫାଲ୍ଗୁନଗଡ଼ରେ ଚାକିରି ପାଇ କାନ୍ହେଇ ବାଲେଶ୍ୱର ଛାଡ଼ି ଦେଲା । ମଝିରେ ମଝିରେ ଚିଠି ଲେଖେ ବ୍ରଜବାବୁଙ୍କ ପାଖକୁ । ସେଇ ଚିଠିରୁ ଜାଣିଛି ସେ ସେମିତି ଗଭୀର ଅନିଚ୍ଛା ସତ୍ତ୍ୱେ କୌଣସି କାରଣର ଅନିବାର୍ଯ୍ୟ ଆବଶ୍ୟକତା ନେଇ ଓଡ଼ିଶାଠୁ ଏତେ ଦୂରରେ ଚାକିରି କରିବାକୁ ବାଧ୍ୟ ହୋଇଛି । ଅଥଚ ଜୀବନ-ସାଧନା-ବିକାଶ ଏବଂ ଲକ୍ଷ୍ୟ ସକଳର ପ୍ରାଣକେନ୍ଦ୍ରରେ ସେ ଦେଖିବାକୁ ଚାହେଁ ତାର ସାହିତ୍ୟ ସୃଷ୍ଟିକୁ ।

ହଠାତ୍ ଶୀତଋତୁରେ ସହରର ପରିଚିତ ଜାଗା ଆଡ୍ଡା (ଲକ୍ଷ୍ମୀ ପ୍ରେସ)କୁ ଉଠୁଁ ଉଠୁଁ ହଠାତ୍ କାନ୍ହେଇ ମୋ ନଜରକୁ ଆସିଲା । କଥାବାର୍ତ୍ତା ଦ୍ୱାରା ଜାଣିଲି ସେ ବାଲେଶ୍ୱରକୁ ବଦଳି ହୋଇ ଆସିଛି । ଲିଭି ଆସୁଥିବା ବନ୍ଧୁତ୍ୱ ପୁଣି ଥରେ ଆହୁରି ଶକ୍ତଭାବେ ଆମ ଅନ୍ତରରେ ନିବିଡ଼ତାର ଜାଲ ଛନ୍ଦି ଦେଲା ।

ଏ ଖବର ନୁହେଁ ; ଆଗ ଖବର । ଏକ ଗ୍ରୀଷ୍ମ ପୂର୍ବାହ୍ନରେ ଉମାବାବୁ (ଗାଳ୍ପିକ ଉମାଶଙ୍କର ମିଶ୍ର)ଙ୍କ ଗାଡ଼ିରେ ଆମେମାନେ ଅର୍ଥାତ୍ ବ୍ରଜବାବୁ, କାନ୍ହେଇ, ମୁଁ ଏବଂ

ଆଜ ଜଣେ ଗାଳ୍ପିକ ବନ୍ଧୁ ଏମିତ କାଶ୍ମୀର ଜଣ ରାଉରପୁର ବୁଲିଗଲୁଁ । ବ୍ରଜବାବୁ, ଉମାବାବୁ ଏବଂ ମୁଁ ବେଳାଭୂମିରେ ଛିଡ଼ା ହୋଇ ଆଲୋଚନା କରୁଥାଉଁ । ସେ ସୂର୍ଯ୍ୟକଣ କଲା ସମୁଦ୍ର ଜୁଆରକୁ ମାଡ଼ ମାଡ଼ କୂଳେ କୂଳେ କାଛୁ ଭୁଲ ହେଉଥିଲେ । ମୋର ମନେ ହେଲା କନ୍‌ହେଇ ଯେମିତ ଭାବପ୍ରବଣତାର ନେଇ ପ୍ରାଣପ୍ରିୟ ତୀଉଭୂତରେ ପ୍ରେମୋଜ୍ଜ୍ୱଳିତ ପୂର୍ଣ୍ଣିମା କଦମ୍ବ ସବ ପ୍ରତିଯୋଗିତା କର କର ଅଶାନ୍ତ ମାଳ-ସାଗର ମତ ତାର ଚଞ୍ଚଳ ପ୍ରାଣକୁ ନିର୍ଜନ ଦେଉଛୁ, ଏବଂ ଅନନ୍ତ ଜନ୍ମରକ୍ଷା ପର ସୁପ୍ତ ସୃଷ୍ଟି ଚେତନାକୁ ତରଙ୍ଗାୟିତ କରୁଛି ।

କିଛି ଦିନ ପରେ ସେ ଏମ୍. ଇ. ଏସ୍. ଗୃହକର୍ମ ଗ୍ରୁପ୍ ଏ. ଜ. ରେ ଚାକିରି ପାଇ ଭୁବନେଶ୍ୱର ବୁଲିଗଲା । ତା' ପରେ କେବେ କେଉଁବେ ଦେଖା ହୋଇଛି ଯେମିତ 'ବନ୍ଧୁ-ମିଳନ' 'ଫକୀରମୋହନ ସାହିତ୍ୟ ପରିଷଦ' 'ସବୁଶ୍ରୀ ପ୍ରେସ' ଇତ୍ୟାଦି ଅନୁଷ୍ଠାନମାନଙ୍କରେ । ଆଳାପ-ଆଲୋଚନା ବି ହୋଇଛି । 'ଫକୀରମୋହନ ସାହିତ୍ୟ ପରିଷଦ'ର ସକ୍ରିୟ ସଭ୍ୟ ଥିବାର ଶୁଣିଛି । ଯାହା ହେଉ ମୋର ବିଶ୍ୱାସ ସେ ବଞ୍ଚି ରହିଥିଲେ ତା'ର ଚିନ୍ତା-ଚେତନା ମାନଗତ ତଥା ସୃଷ୍ଟିଶୀଳତା ଦିଗରୁ ନୂଆ କିଛି ଓଡ଼ିଆ ସାହିତ୍ୟକୁ ଦେଇ ପାରିଥା'ନ୍ତା । କାରଣ ତା'ର ସ୍ୱଳ୍ପ-ପରିସର ଜୀବନର ଏଇ ସ୍ୱଚ୍ଛ ସୃଷ୍ଟିର ସୁନାମ ମୋ ଭିତରେ ସେଇ ଭଳି ଏକ ତୃପ୍ତ-ମଧୁର ଧାରଣା ସୃଷ୍ଟି କରିଛି ।

ଆଦର୍ଶ ତଥା ସୃଜନଶୀଳତା ଦୃଷ୍ଟିରୁ ବିଚାର କଲେ ସାହିତ୍ୟ କ୍ଷେତ୍ରରେ ମୋର ତା' ସହ ସମ୍ପର୍କ ଥିଲା ସହାନୁଭୂତି ବୁଝାମଣାର । କିନ୍ତୁ ସ୍ୱଳ୍ପାଶୋଭ୍ୟଶୀ ବୟସରେ ତା'ର 'ଏଇ ଅକାଳ ମରଣ' ମୋ' ହୃଦୟକୁ ଅସୀମ ଶୋକରେ ଭାରାକ୍ରାନ୍ତ କରି ଦେଇଛି ।

ବ୍ରଜବାବୁ ଚିଠିରେ ଲେଖିଛନ୍ତି— "ଏହି ମାସ 'ନବରବି'ରେ ତା'ର ଗଳ୍ପ 'ଧୃତବସ୍ତ୍ରର ଆଖି' ପ୍ରକାଶ ପାଇଛି ।

× × ×

ଏଇ ଗପଟି ତା'ର ଚିରଚରିତ ଗଳ୍ପଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଚରମ ବାସ୍ତବ ଭରି ରହିଛି । ଦୁଏତ ସିଏ ବଞ୍ଚି ଥିଲେ ତା'ର ଗଳ୍ପର ଆତ୍ମା ଓ ଆଙ୍ଗିକରେ ଆଉ କିଛି ପରିବର୍ତ୍ତନ କରି ଥା'ନ୍ତା ।"

ଆଜ କନ୍‌ହେଇର ଅକାଳ ବିୟୋଗରେ ମୁଁ ଗଭୀର ଶୋକ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତା'ର ଶୋକସନ୍ତପ୍ତ ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଜଣାଉଛି ମୋର ହାର୍ଦ୍ଦିକ ସମବେଦନା ।

# ଦେବକୀର ଗର୍ଭ ବେଦନା

• ପଦ୍ମ ଦାଶ

ମରିଗଲେ ଲୋକ କ'ଣ ସ୍ୱର୍ଗକୁ ଯାଏ ? ........ ଯନ୍ତ୍ରଣାରୁ ମରଣର ଦୂରତ୍ୱ ଏବଂ ମରଣରୁ ସ୍ୱର୍ଗର ଦୂରତ୍ୱକୁ କଳନା କରୁଥିଲା ବେଳେ ସେଦିନ ବାସନ୍ତୀକୁ ପଚାରିଲି—ମୁଁ ମରିଗଲେ ସ୍ୱର୍ଗକୁ ଯିବି ନା ନରକକୁ ?

ବାସନ୍ତୀ ହାତ ଛଡି କହିଥିଲା—ଏମିତି କାଳକଥା ତୁଣ୍ଡରେ ଧରନି । ଏମିତି କହିଲେ ମୁଁ ଆଦୌ ଭଲ ହେବନି ॥

ଦଶ ଦିନ ହେଲା ମେଡିକାଲର ବେଡ ଶଯ୍ୟାରେ ଶୋଇଥିଲା ବାସନ୍ତୀ । ଅପରେସନ ଜନିତ ଯନ୍ତ୍ରଣାରେ ହେଉ କି' ମାନସିକ ସନ୍ତୁଳନରେ ହେଉ ସେ ଦିନ ତା' ଦେହରେ ତାତି ଅନେକ ବଢ଼ି ଯାଉଥିଲା । ଏସବୁ ଆଉ ମନ୍ତ-ତନ୍ତ୍ରୀର ମାମଲା ହେଲେବି ସେଦିନ ମୋ ନିଆଁଗିଳା ମନ ନେଇ ମୁଁ ଯେଉଁ ଯନ୍ତ୍ରଣାକୁ ଅନୁଭବ କରୁଥିଲି, ତାହା ଥିଲା ଜୀବନକୁ ଅନୁଭବ କରିବାର ବ୍ୟାକୁଳତା ।

ବାସନ୍ତୀ ଦେହର ତାତିକୁ ମାପୁଥିଲା ବେଳେ ବସି ରହି ନୀରବରେ ଭାବୁଥିଲି ; ଗର୍ଭବେଦନା ସହି ନପାରି ଯେଉଁ କାଳୀ ସ୍ତ୍ରୀ-ଲୋକଟି ଦୁଇଟା ଦୁର୍ବଳ ପିଲାଙ୍କୁ ଘୋଷାରି ଘୋଷାରି ଚାଲିକରି ଏଇ ମେଡିକାଲର ଓ୍ୱାର୍ଡ ଭିତରକୁ ପଶି ଆସିଛି, ତାର ପ୍ରସୂତିକାଳୀନ ଯନ୍ତ୍ରଣାକୁ କ'ଣ ସେଇ ହତଭାଗ୍ୟ କୁଲି ସ୍ୱାମୀ ବୁଝି ପାରିବ ?

ଗୋଲମ୍ୱ୍ୟାନ ମାଡ଼ପାଇ ବଧ୍ ପ୍ରତାପ ଗଣ୍ଡାଙ୍କ କ୍ଷତରୁ ରକ୍ତ ଝରୁଥିଲା ବେଳେ ଏ ଦେଶର ଆଇନ୍ କ'ଣ ଅପରାଧ ସ୍ୱୀକାର କରି ପାରିବ ? ଆଜି ପ୍ରେମିକାର ପ୍ରତାରଣାରେ ଯେଉଁ ଅମୂଲ୍ୟ ଜୀବନଟି ଏକ ମୁହୂର୍ତ୍ତରେ ନଷ୍ଟ ହୋଇଗଲା—ଯେଉଁ ଆଧୁନିକା ଝିଅଟିର ଧନୀକ ବାପା କ'ଣ ତା'ର ମୂଲ୍ୟ ବୁଝି ପାରିବ ... ... ... ?

ଏତେ ବଡ଼ ମେଡ଼ିକାଲଟା ମୋ ପାଇଁ ଥିଲା ଏକ ଯନ୍ତ୍ରଣାର ଦୁନିଆ । ମୋ ଚାରି ପଟେ ଅସଂଖ୍ୟ ଜୀବନର ଆର୍ତ୍ତ ଚିତ୍କାର । ଅଜସ୍ର କରୁଣ ବିଳାପ ଭିତରେ ମୋ ଚିନ୍ତା ଚେତନା ବାରମ୍ବାର ହଜି ଯାଉଥିଲା । ମୁଁ ଖାଲି ଭାବୁଥିଲି ଆଜି

ଘଟୁଥିଲା । ନିଜକୁ ନିଜେ ପଚାରୁଥିଲି ବନ୍ଧ୍ୟା ବୋଲାଇ ରକ୍ତ ଡାଳିବା ଅପେକ୍ଷା ଏ ଦୁନିଆର ସମସ୍ତ ଯନ୍ତ୍ରଣାକୁ ମୁଁ କ'ଣ ଶୋଷି ପାରିବି ?

ମୋ ସାମ୍ନାରେ ସେଇ ନିର୍ଭୀକ ପ୍ରେମିକଟିର ଶବ ଷ୍ଟ୍ରେଚରରେ ନିଆ ଯାଉଥିଲା ବେଳେ ମୁଁ ଅତି ମାତ୍ରାରେ ଉତ୍ତେଜିତ ହୋଇ ଉଠୁଥିଲି ।

ଅସହ୍ୟ ଉତ୍ତେଜନାରେ ମୋ ମୁଣ୍ଡ ଭିତରର ସ୍ନାୟୁ ସମସ୍ତ ଛିଣ୍ଡିବାକୁ ଲାଗିଥିଲା ବେଳେ ପଞ୍ଚାନନ ଦାଦା ଆସିଲେ । --- --- --- ଦାଦାଙ୍କର କବି ହୃଦୟ । ସେ ଅନ୍ୟର ହୃଦୟକୁ ବୁଝିପାରନ୍ତି । ତାଙ୍କ ଘର ସଂସାର ଜଞ୍ଜାଳର ବ୍ୟସ୍ତତା ଭିତରେ ସେ ପ୍ରତିଦିନ ଆସନ୍ତି ଆମ ଯନ୍ତ୍ରଣା ବୁଝିବାକୁ ।

ସେଦିନ ଆସିବାମାତ୍ରେ ଏକ ଖୁସି ଖବର ଜଣାଇଲେ ପଞ୍ଚାନନ ଦାଦା । କନ୍ହେଇ ଓରଫ୍ ଗାଳ୍ପିକ କନ୍ହେଇଲାଲ ଦାସ ଆସୁଛି । --- --- --- କନ୍ହେଇ ଆସୁଥିବାର ଶୁଣି ମୋ ମାନସିକ ସନ୍ତୁଳନରୁ କିଛିଟା ରକ୍ଷା ପାଇଲି ମୁଁ । ଅନେକ ଦିନ ହେଲା ମୋର ଏଇ ଅନ୍ତରଙ୍ଗ ବନ୍ଧୁଟିକୁ ଦେଖି ନଥିଲି । କିନ୍ତୁ ଓଡ଼ିଶାର ପ୍ରାୟ ସମସ୍ତ ପତ୍ର-ପତ୍ରିକାରୁ ପଢ଼ିଥିଲି ତା'ର ପ୍ରେମ ଗଳ୍ପ । --- --- ସାହିତ୍ୟରେ ଦେହବାଦ୍ ପ୍ରତି ମୋର ଭିନ୍ନ ମତ ଥିଲେବି, କନ୍ହେଇର ଅନୁଭୂତିର ବାସ୍ତବତାକୁ ଅସ୍ୱୀକାର କରି ପାରିନି । ବରଂ ତା' ପ୍ରେମିକାମାନଙ୍କ ସୀମନ୍ତରେ ସତୀ-ସାଧ୍ୱୀ ନାରୀର ସିନ୍ଦୂର ପରି ସାହିତ୍ୟରେ ଏକ ନିଶ୍ଚିତ ପଦକ୍ଷେପ ନେଇ ସେ ଜିତୁଥିଲା ପରି ମୋର ମନେ ହୋଇଛି । ଏବଂ ମୁଁ ତାକୁ ଅଧିକ ଭଲ ପାଇଛି ।

ମେଡ଼ିକାଲର ବେଡ଼ପରେ ବେଡ଼ ଖୋଜି କନ୍ହେଇ ଆସିଲା । ଆଜି ଆମକୁ ପାଞ୍ଚଟି ବେଡ଼ ପୂର୍ବରୁ ଦେଖି ପାରି କହି ଉଠିଲା ବନ୍ଧ୍ୟା କପ୍‌ଲ୍‌କୁ ବଧେଇ ଜଣେଇବାକୁ ଆସିଲି ପଦ୍ମ ଦାଣ । ଭୁବନେଶ୍ୱରରୁ ଦୁଇ ଦିନ ଛୁଟି ନେଇ ଆସିବା ସାର୍ଥକ ହେଲା । କିନ୍ତୁ ବଣୁଣ୍ଡୀ ପ୍ରେସରେ କବି ବ୍ରଜବାବୁଙ୍କ ସସ୍ନେହ ପରିବେଶରୁ ଅଳ୍ପ ମାତ୍ର ସମୟ ପାଇଲି । ପାଖକୁ ଆସି କନ୍ହେଇ ମୋତେ କୁଣ୍ଢାଇ ପକାଇଲା । ମୁଁ ତା ଗାଲରେ ଚୁମା ଦେଲି । ପ୍ରତିଦାନରେ ପାଇଲି ଦୁଇଟା । ପାଖ ବେଡ଼୍‌ରେ ଅପରିଚିତମାନେ ଚକିତ ଦୃଷ୍ଟିରେ ଆମକୁ ଚାହିଁ ରହିଥିଲେ । ପଞ୍ଚାନନ ଦାଦାଙ୍କ ମୁହଁରେ ମଧୁର ହସ । ଆଉ ବାସନ୍ତୀ ଆଖିରେ ଅଜସ୍ର ବିସ୍ମୟ । କନ୍ହେଇର ନାମ ବାସନ୍ତୀ ତା' କଲେଜ ବାନ୍ଧବୀଙ୍କ ଠାରୁ ଶୁଣିଥିଲା । ତା' ଗପ ପଢ଼ିଥିଲା, କିନ୍ତୁ ତାକୁ କେବେ ଦେଖି ନଥିଲା ।

ବାଣପୁର ଆଉ ବାଲେଶ୍ବର ନାମ ସହିତ ଯେତେ ସାମଞ୍ଜସ୍ୟ ରହିଛି—କନ୍ହେଇ ରୂପ ସହିତ ମୋ' ରୂପରେ ତ ଥିଲା ସେଇ ସାମଞ୍ଜସ୍ୟ । ସତେ ଯେପରି ଆମେ ଦୁହେଁ ସମଜ ଭାଇଥିଲୁଁ ।

ଯେତେବେଳେ ଆମେ ସାହିତ୍ୟ କ୍ଷେତ୍ରରେ ନୂତନତ୍ବର ସନ୍ଧାନ କରୁଥିଲୁଁ, ସେଇ ସମୟରେ କନ୍ହେଇ ସହିତ ମୋର ପ୍ରଥମ ପରିଚୟ । ତା'ପରେ ଆମେ ବହୁ ସାହିତ୍ୟ ଆସରରେ ଭାଗ ନେଇଛୁଁ । ପରସ୍ପରକୁ ଖୁବ୍ ନିକଟରେ ପାଇଛୁ । ସାହିତ୍ୟ ଜଗତଠାରୁ ବ୍ୟକ୍ତିଗତ ଜୀବନ ଯାଏଁ ଆମେ ପରସ୍ପରକୁ ଖୁବ୍ ଭଲ ପାଇଛୁ ।

ସମୟର ଗତିରେ, ପୃଥିବୀର ପରିବର୍ତ୍ତନରେ ମୁଁ ବଦଳିବର କଥା, କନ୍ହେଇ ପ୍ରେମ କଥା କହୁଥିଲେ ବି ଆମ ପ୍ରେମ ପରସ୍ପର ପ୍ରତି ଅତୁଟ ରହିଛି । ପରସ୍ପରର ସାକ୍ଷାତ ହେଲା ବେଳେ କନ୍ହେଇକୁ ମୁଁ ଚୁମା ଦେଇଛି । ତା' ଠାରୁ ଚୁମା ଖାଇଛି ।

ମୋ' ହାତ ଧରି କନ୍ହେଇ ଆସି ବସିଲା ବାସନ୍ତୀର ରୋଗ ଶଯ୍ୟାରେ । ସେଇ ସମୟରେ ଯୁବ-ଲେଖକ ହୃଷିକେଶ ଆସି ଚାଟି କରି ଉଠିଲେ ବାଃ—ବାଃ ଚମତ୍କାର । ସତେ ଯେମିତି ରାମ, ଲକ୍ଷ୍ମଣ—ପଦ୍ମ ଦାଶ, କନ୍ହେଇ ଦାସ । ବାସନ୍ତୀର ବିସ୍ମିତ ଆଖିକୁ ଲକ୍ଷ୍ୟ କରି କନ୍ହେଇ କହିଲା—ଭାଉଜ ! ମୋ ବାପ୍ପା ଭାଇଙ୍କୁ ବିବାହ କଲା । କାହାରିକୁ ଜଣେଇଲନି । ଆଜ କିନ୍ତୁ ଏ କନ୍ହେଇକୁ ଖାଇବାକୁ ନ ଦେଲେ ମୁଁ ରାଗି ଯିବି । ପଞ୍ଚାନନ ଦା'ଦା, ହୃଷିକେଶ ବି ସ୍ବର ମିଳେଇଲେ—ଆଜ ଏଠି ଗୋଟାଏ ଭୋଜୀ ହୋଇଯାଉ । କନ୍ହେଇ କହିଲା—ମୁଁ ଆଜ ରାତି ଟ୍ରେନ୍‌ରେ ଭୁବନେଶ୍ବର ଚାଲି ଯିବି । ତେଣୁ ମାଙ୍କ ମିନିଟ ଭିତରେ ଯାହା କରୁଛ କର । ମେଡିକାଲ ବାହାର ହୋଟେଲରୁ କିଛି ମଗାଇ ଆଣିବା ସମସ୍ତ ଅଡ୍ଭରରୁ ବାସନ୍ତୀ ଖାଇବାକୁ ଦେଲା ବିସ୍କୁଟ, କମଳା, ସେଓ । ଏତିକିରେ କନ୍ହେଇ ବହୁତ ଖୁସି । ପଞ୍ଚାନନ ଦାଦା ସମସ୍ତଙ୍କ ପ୍ରଶଂସାରେ ମୁଖର ହୋଇ ଉଠିଲେ । ଅତି ଖୁସିରେ ହୃଷିକେଶ କନ୍ହେଇର ଗଳ୍ପର କେତୋଟି ଲାଇନ୍ ନେଇ ଏକ ସ୍ପିଚ୍ ଦେଲେ । ବାସନ୍ତୀ କନ୍ହେଇକୁ ଲକ୍ଷ୍ୟ କରି କହିଲା—ତମ ଗଳ୍ପର ନାୟିକାମାନଙ୍କୁ ମୁଁ ଜାଣେ ।

କଲେଜରେ ପଢ଼ୁଥିଲା ବେଳେ ସେମାନଙ୍କ ଠାରୁ ତମ ବିଷୟରେ ବହୁ ଆଲୋଚନା ଶୁଣିଥିଲି । ମୁଁ କହିଲି—ପ୍ରେମ କରି କରି ଶେଷରେ ତୁ ନଷ୍ଟ ହୋଇ ହୋଇ ଯିବୁରେ କନ୍ହେଇ ! ପ୍ରେମ ବିନା କ'ଣ ଦୁନିଆରେ ଭଲ କରୁ ନାହିଁ ?

କହ୍ନେଇର ଉତ୍ତର ଥିଲ — ମୋ ପ୍ରେମରେ ଦୈହିକ ପ୍ରବୃତ୍ତି ନ ଥାଏରେ । ଟିକଏ ସ୍ନେହ, ଟିକଏ ପ୍ରେମ, ଟିକଏ ହସ, ଟିକଏ ଖୁସି, କେତେ ଖଣ୍ଡ ଚଠି ଭିତରେ ମୋ' ପ୍ରେମ ସୀମିତ । ମାନସିକ ସ୍ତରରେ ମୁଁ ସବୁ ଝିଅଙ୍କୁ ଭଲ ପାଏଁ । ମୋ' ଗଳ୍ପ ପାଇଁ ପ୍ଲଟ ପାଏଁ । ... ... ... ତାପରେ—କହ୍ନେଇ ଗପି ଚାଲିଲ ତା' ପ୍ରେମିକାମାନଙ୍କର ବାସ୍ତବ ଅନୁଭୂତ । ସେମାନଙ୍କ ସହିତ କେମିତି ପରିଚୟ, ସେମାନେ କେମିତ ଚଠି ଲେଖନ୍ତି, କେମିତ କଥା କହନ୍ତି, ଆଉ କପରି ପରିବେଶ ସୃଷ୍ଟି କରନ୍ତି । ଶେଷରେ ଅନ୍ୟ ଜଣଙ୍କୁ ସ୍ୱାମୀ ରୂପରେ ବର କପଞ୍ଜ ଭୁଲି ଯାଆନ୍ତି । ଆମେ ସମସ୍ତେ ଏକ ଅପୂର୍ବ ଉତ୍ତେଜନା ନେଇ ଅଜସ୍ର ଆଗ୍ରହରେ ଶୁଣି ଯାଉଥିଲୁ କହ୍ନେଇର ପ୍ରେମ କଥା । ଆମେ ପତ୍ର-ପତ୍ରିକାରେ ଯେଉଁ ସବୁ ଗଳ୍ପ ପଢ଼ିଥିଲୁଁ ତା'ର କଥାରେ କଛିହିଁ ତଫାତ୍ ନଥିଲ ।

ସେଦିନ ମୁଁ ଜାଣିଲି କହ୍ନେଇ ନିଜେହିଁ ଏକ ସାର୍ଥକ ଗଳ୍ପ । କହ୍ନେଇ ସମସ୍ତ ସଚେତନ ହୋଇ ହଠାତ୍ ଉଠିଲ ଯିବା ପାଇଁ । କହିଲ, ଏ ମେଡିକାଲ ଭିତରେ ମୋର ଶ୍ୱାସରୁଦ୍ଧ ହୋଇ ଯାଉଛିରେ । 'ବଣ୍ଣୁଷ୍ଣ'ରେ ପୁଣି ବ୍ରଜବାବୁ ଅପେକ୍ଷା କରି ଥିବେ । ମୋତେ ଆଜ ରାତରେ ଭୁବନେଶ୍ୱର ଯିବାକୁ ହେବ । କହ୍ନେଇକୁ ଏତେ ଶୀଘ୍ର ଛାଡ଼ିବାକୁ ଇଚ୍ଛା ନଥିଲେବି, ତାକୁ ରୋକି ପାରିଲନ । ପଚାରିଲି, ଆଉ କେବେ ଦର୍ଶନ ମିଳିବ ? ତା'ର ଉତ୍ତର ଥିଲ ବଞ୍ଚିଥିଲେ—ଖୁବ୍ ଶୀଘ୍ର ନିଶ୍ଚୟ ଦେଖା ମିଳିବ ।

ସେଦିନ କହ୍ନେଇର ହାତ ଧରି ମୁଁ ଛାଡ଼ି ଦେଇ ଆସିଲି ମେଡିକାଲ୍ ଗେଟ୍ ପାଖରେ । ତା'ପରେ କହ୍ନେଇକୁ ମୁଁ ଆଉ ଦେଖି ନାହିଁ । କିନ୍ତୁ ମୁଁ ଜାଣି ନଥିଲି କହ୍ନେଇ ସହିତ ମୋର ସେଇ ଶେଷ ଦେଖା ।

ଆକସ୍ମିକ ଭାବେ ଯେତେବେଳେ କହ୍ନେଇର ମୃତ୍ୟୁ ସମ୍ବାଦ ପାଇଲି—ପ୍ରଥମେ ମୁଁ ବିଶ୍ୱାସ କରି ପାରିଲି ନାହିଁ । କିନ୍ତୁ ତାହା ଥିଲ ସତ୍ୟ । ମୁଁ ଅନୁଭବ କଲି କହ୍ନେଇ ମୃତ୍ୟୁରେ ମୋ ହୃଦୟରେ ଏକ ବିରାଟ କ୍ଷତ ସୃଷ୍ଟି ହୋଇ ଯାଇଛି । ଯାହା ସବୁବେଳେ ମୋତେ ବ୍ୟଥା ଦେଉଥିବ । ଯାହାର କେବେ ବି ଉପଶମ ହୋଇ ପାରେନା । ଆଜ ପାଇଁ ଏ ଗଳ୍ପ ଲେଖିଲ ବେଳେ ବାରମ୍ବାର ଭାବୁଛି, ଗାଳ୍ପିକ କହ୍ନେଇଙ୍କ ହାସର ଅଭାଗିନୀ ମାତା କେତେ ବିକଳ ହେଉଥିବେ-ତା' କିଏ ଅନୁଭବ କରି ପାରିବ ? କିଏ ବୁଝି ପାରିବ ମାଆ ହେବାର ଗର୍ଭ ବେଦନା ? କିନ୍ତୁ କିଏ ଜାଣିଥିଲ, କହ୍ନେଇର ପ୍ରେମିକାମାନଙ୍କ ମୁଣ୍ଡରୁ ସିନ୍ଦୂର ନ ଲିଭିବା ପୂର୍ବରୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରୁ ସେ ନିଜେ ଲିଭି ଯିବ ! !



# ଛକୋଟି ଦିନର
# ଆଂଶିକ ଦିନଲିପି ଓ ଆଜି

• ହରପ୍ରସନ୍ନ ଦାସ

କୌଣସି ଏକ ଦିନର ମନୋରମ ସନ୍ଧ୍ୟା :—

ସନ୍ଧ୍ୟାବେଳେ ଘରୁ ବାହାରି 'ମିଠ୍' ଘର ପାଖ ଖଟିକୁ ଯାଉଥିଲି । କାନ୍ଧରେ ମୋ' ପଡ଼ିଥାଏ ଶାନ୍ତିନିକେତନ ଝିଆରି ଝୁଲି ମୁଣିଟା—ସେଥିରେ ଥାଏ ମୋ' ଡାଏରି ଓ 'ଦାଗ' ପତ୍ରିକାର ଦୁଇଟା—ମନରେ ଅନେକ କଥା ଭାବି ଯାଉଥାଏ ହଠାତ୍ କାହାର ଡାକ ଶୁଣି ଅଟକି ଗଲି । ଦେଖିଲି କନ୍ହେଇ ଭାଇ ଆସୁଛି—ବଡ଼ ଜୋର୍‌ରେ ପାଟି କରି ନମସ୍କାର ଜଣେଇଲି । ତାଙ୍କ ସଙ୍ଗରେ ମିହିର ଥାଏ—ମୁଁ ଛୁଡ଼ା ହେଲି । ସେ ମୋ ପାଖକୁ ଆସି କହିଲେ—"ହରି ତୁମର ସେ 'ମୋ କବିତା କୋଡ଼ଏ'ଟା ଅତି ଭଲ ଲାଗିଲା । ରବୀନ୍ଦ୍ର ମଣ୍ଡପର ମଞ୍ଚ ଉପରେ ତୁମର ଆବୃତ୍ତି ବି ଅତି ଚମତ୍କାର ଲାଗିଲା—ଲେଖି ଚାଲ—ଏମିତି ଲେଖି ଚାଲ"— । ମୁଁ ଟିକେ ହସିଲି । ଦାନ୍ତ ଦେଖାଇ ତାଙ୍କ ପ୍ରତି କୃତଜ୍ଞତା ହେଲି । ସେ ପୁଣି କହି ଚାଲିଲେ "କୁଞ୍ଜ ଭାଇ ଓ ମୁଁ ତୁମ କବିତା ବିଷୟରେ ଆଲୋଚନା କଲୁଁ—ଭଲ ହାତ ଅଛି ତୁମର, ଲେଖି ଯାଅ, ତୁମେ ନିଶ୍ଚେ ଦିନେ ଉପରକୁ ଉଠି ପାରିବ । ହଁ—ତୁମର "ମୋ କବିତା" କେତେ କପି ବିକ୍ରି ହୋଇଗଲାଣି ?" ମୁଁ ଉତ୍ତର ଦେଲି "ଛବିଶ ପାଏଁ, ସତେଇଶିଟା ଅଧା ହୋଇଛି ।" ସେ ଟିକେ ଗମ୍ଭୀର ହେଲେ । ପୁଣି ପଚାରିଲେ— ଅଚ୍ଛା, ଗୋଟାଏ କଥା ପଚାରିବାର ଥିଲା ତୁମେ କଣ ଭାବିବନି—ତୁମେ ଯେଉଁ ଛୋଟ ଛୋଟ କବିତାଗୁଡ଼ିକ ଲେଖୁଛ ସେଗୁଡ଼ାକ ପ୍ରକୃତରେ ତୁମ ମନ ଭିତରରୁ ଆସୁଛି ନା ତୁମେ ଖାଲି ଗୋଟାଏ ନାଁ କମେଇବାକୁ ଜୋର ଜବରଦସ୍ତ କରି ଲେଖୁଛ ? ଏ ପ୍ରଶ୍ନଟା ଶୁଣିବାକୁ ମୁଁ ଆଦୌ ଆଶା କରି ନଥିଲି । ନିଜକୁ ଟିକେ ସଙ୍କୁଚିତ ମନେ କଲି । ତଥାପି ମନ ଟାଣ କରି କହିଲି "କାହା ଠାରୁ ଉପଦେଶ ଶୁଣି ମୁଁ ଏ କବିତା ଲେଖୁନି ; ଯାହା ଭିତରୁ ଆସୁଛି ତାକୁ କାଳି କଲମରେ ଲେଖୁଛି— ଯାହା ସ୍ୱତଃ ଆସୁଛି ତାକୁ ବନ୍ଦ କପରି କରିବି ? ଆଚ୍ଛା ତୁମେ ଆମ ସମାଜର ଏପରି ଅବସ୍ଥାରେ ପ୍ରେମରେ ମସ୍‌ଗୁଲ୍ ହୋଇ ଗପ ଲେଖିଲେ କ'ଣ ଚଳିବ ?" ମୋ ପ୍ରଶ୍ନ ଶୁଣି ସେ ହସିଲେ—କହିଲେ, ଭାଇ ତୁମେ ଠିକ୍ କଥା କହୁଛ—ହେଲେ ମୁଁ ସତ

କହନ୍ତି— ଭଲ ଖାଇବା, ପ୍ରେମ, ଝିଅ, ଏମାନଙ୍କ ଛଡ଼ା ଆଉ କିଛି ଲେଖି ପାରିବନି— ସେମାନେ ମୋ ପାଇଁ ଦୁନିଆଁରେ ସବୁ କିଛି— ଆଚ୍ଛା ତୁମ ପାଖରେ ଗୋଟାଏ ଭିକାରି ଓ ଗୋଟିଏ ସୁନ୍ଦରୀ ଝିଅ ଛିଡ଼ା ହେଲେ ତୁମେ ସେ ଝିଅଟିକୁ ଛାଡ଼ି ଭିକାରିକୁ ଗ୍ରାମରେ ଯାଚି ନେଇ ପାରିବ କି ? ଅସମ୍ଭବ— ସମସ୍ତେ ଝିଅକୁ ପସନ୍ଦ କରିବେ । ତେଣୁ ପ୍ରେମ ଗଳ୍ପ ଲେଖିବାରେ ମୋର ଦୋଷ କଅଣ ? କଥା କହି ସାରି ମୋ ମୁହଁକୁ ଅନାଇଲେ— ମୁଁ କାବା ହେଲି— କି ଅସମ୍ଭବ ପ୍ରକାରର ଯୁକ୍ତି । ଆଉ ବା କ'ଣ କହି ମୁଁ ତାଙ୍କ କଥାକୁ କାଟିବି ।

ଆଶ୍ଚର୍ଯ୍ୟ ଲାଗିଲା, ଏତେ ଖୋଲା ହୃଦୟର ଲୋକ ବି ଅଛନ୍ତି । ସତ କହିବାକୁ ଟିକେ ବି ମନରେ ଦ୍ୱିଧା ନାହିଁ । ଲୁଚାଛପି ନାହିଁ— ମୁହାଁମୁହିଁ ସ୍ରେକ୍‌ଠୋକ୍ ଭାବେ ସତ କଥା କହି ଦେଲେ କନ୍‌ହେଇଭାଇ— କେତେ ନିର୍ମଳ ସେ ମନଟି— ନିଜ ମତବାଦ ବିଷୟରେ ସତ କହି ଯୁକ୍ତି କରିବାକୁ ଯେପରି ଦୃଢ଼, ଅପର ପକ୍ଷରେ ଅନ୍ୟର ଭଲ ଲେଖା ଗୁଡ଼ିକୁ ପ୍ରଶଂସା କରିବାର ଆଗ୍ରହ ମଧ୍ୟ ସେପରି । ଅନ୍ୟର ଲେଖା ପଢ଼ି ପ୍ରଶଂସା କରିବାକୁ ଲୋକ ଅଛନ୍ତି । ପ୍ରଶଂସା— ପୁଣି ମୁହଁରେ— ପରଶ୍ରୀକାତରତା ମନରେ ଆଦୌ ନାହିଁ । ଇଚ୍ଛା ହେଉଥିଲା ତାଙ୍କ ଠାରୁ ସେ ଗୁଣ ଗୁଡ଼ାକ ଛଡ଼େଇ ଆଣିବାକୁ ।

ଆହୁରି ଏମିତି ଅନେକ ଟପ୍ ଗପ୍ ରାତି ଆଠଟା ହୋଇଗଲା । ପରସ୍ପର ଠାରୁ ବିଦାୟ ନେଲୁଁ— ମୁଁ ଆଗକୁ ନଯାଇ ଘରକୁ ଫେରିଲି ।

ଅନ୍ୟ ଏକ ଦିନର ଅଭିଜ୍ଞତା !—

ଏ: ଜି: ଅଫିସକୁ ଯାଇଥିଲି ଗୋଟାଏ କାମରେ । କାମ ସାରି ଗଲି କନ୍‌ହେଇଭାଇ ପାଖକୁ— ଆପେ ଆପେ ଗୋଡ଼ ଚାଲିଗଲା ତାଙ୍କ ପାଖକୁ । ସତେ ଯେପରି ଏ. ଜି. ଅଫିସକୁ ଆସି ତାଙ୍କୁ ଦେଖା ନକଲେ ମୋତେ ଖାଲି ଖାଲି ଲାଗେ । ସେ ମୋ' ସହିତ ଗପ ଆରମ୍ଭ କରି ଦେଲେ । କୁଆଡ଼େ ଆସିଥିଲ ? ମୋ ପାଖରେ କିଛି କାମ ଥିଲା କି ? ତୁମ ଏମ୍. ଏସ୍‌ସି. ପରୀକ୍ଷା ଫଳ ବାହାରିଲାଣି କି ନାହିଁ ? ଆମ ଅଫିସରେ ଅଡିଟର ରୂପେ ଜଏନ୍ କରୁ ନ— ମଜା ହେବ ? ଏମିତି ଅନେକ ପ୍ରଶ୍ନ ସେ ଫୋପାଡ଼ି ଗଲେ ମୁଁ ସଂକ୍ଷେପରେ ଉତ୍ତର ଦେଇ ପଚାରିଲି "ତୁମେ ଆଜି ଭାରି ଚକ୍‌ଚକ ଦେଖାଯାଉଛ— କାହା ସହିତ ସାକ୍ଷାତ କରିବାର ଅଛି କି ? କଥା କ'ଣ ?" ସେ ହସିଲେ । ସାର୍ଟର ଉପର ବୋତାମ ଖୋଲାଥିବା ଛାତି ଉପରେ

ହାତ ବୁଲାଇ କହିଲେ—"ହଁ, ନିଜ ସମ୍ବନ୍ଧ ମୁଁ ନିଜେ ମୋର ପ୍ରେମିକା—ବୁଝିଲ ଭାଇ କାଲି ରାତିରେ ଭାରି ବୋର୍ ଲାଗିବାରୁ ଖଟ ଉପରେ ନାଚ କୁଦ ଟିକେ ହାଲିଆ ହୋଇଗଲି ।" ଏକଥା ଶୁଣି ମୁଁ ହସିଲି ବହୁତ ଜୋର୍‌ରେ ସେ ପୁଣି କହିଲେ, ଆରେ ଏଥିରେ ଭାବିବାର କ'ଣ ଅଛି । ସତ କଥାଟା ।"

ତା'ପରେ ସାଙ୍ଗ ହୋଇ ବାହାରକୁ ଆସିଲୁଁ । ବାଟରେ ପଚାରିଲେ "ନବରବିରୁ ମୋ ଗପଟା ପଢ଼ିଲ, କେମିତି ଲାଗିଲା ? ଗୋଟାଏ ନୂଆ ପ୍ରକାରର ଲେଖିଛି" । ମୁଁ ମୁଣ୍ଡ ଟୁଙ୍ଗାଇ ମତ ଜଣାଇଲି । ସେ ପୁଣି କହିଲେ "ପ୍ରେମ ଗପ ଲେଖିବାରେ ମୁଁ ସମସ୍ତଙ୍କୁ ଟପିଗଲି, ଯଥେଷ୍ଟ ଲେଖିଲିଣି, ! ମୁଁ ମାଷ୍ଟର ବନିଗଲି ଗପ ଲେଖାରେ ।"

ହସ ଲାଗିଲା ମୋତେ । ହସି ଦେଲି । ମିହିର୍ ଆସି ପହଞ୍ଚିଲେ । କନ୍‌ହେଇ ଭାଇ ମୋତେ ପାନ ସିଗାରେଟ ଯାଚିଲେ, ଶେଷରେ ଚା' ମଧ୍ୟ । ମୁଁ ସବୁ ମନା କଲି, ତାଙ୍କ ମୁହଁଟା କପରି ଶୁଖିଲା ଶୁଖିଲା ଲାଗୁଥାଏ । କାରଣଟା ପଚାରିଲି, ସେ କିନ୍ତୁ ହସି ଦେଇ କହିଲେ "ଇଚ୍ଛା ହେଉଛି ବର୍ତ୍ତମାନ କାହାକୁ ଗୋଟାଏ ଡାକି ଆଣି ବୋର୍ କରିବାକୁ । ଚାଲ, ଯାହାକୁ ଦେଖିବା ତା' ସହିତ ଗପ କରି ତାକୁ ବୋର୍ କରିବା ।"

ଅସମ୍ଭବ ପ୍ରକାରର ଚିନ୍ତାଧାରା । ପୁଣି ସେ କହିଲେ, ଏଇ ରାସ୍ତା ମଝିଟାରେ ବସି ଗାଡ଼ି ମାଲିକ ଓ ଟ୍ରାଫିକ୍‌କୁ ବୋର୍ କଲେ କେମିତି ହୁଅନ୍ତା । ଚାଲ, ରାସ୍ତାରେ ବସି ଗପ କରିବା, ମୁଁ ହସିଲି । ମନେ ମନେ ଭାବିଲି କନ୍‌ହେଇଭାଇର ମନରେ କେତେ ଆବେଗ ସତେ, ନିଷ୍କପଟ ଭାବେ କହି ଯାଉଛି ତା' ମନର କଥାଗୁଡ଼ିକ ।

କନ୍‌ହେଇଭାଇର ଜଣେ ବନ୍ଧୁ ଆସି ପହଞ୍ଚିଲେ । ସେ ମୋର ମଧ୍ୟ ଚିହ୍ନା ଜଣା । ତାଙ୍କୁ ଆମେ ବୋର୍ କରିବାକୁ ଆରମ୍ଭ କଲୁଁ । ଗୁଡ଼ାଏ ଏଣୁ ତେଣୁ ପ୍ରଶ୍ନ ଫୋପାଡ଼ି ତାଙ୍କୁ ଅସ୍ତବ୍ୟସ୍ତ କଲୁଁ, ସେ ଜାଣି ପାରିଲେ । ଆମକୁ ଗାଳି ଦେଇ ଚାଳିକେଳି ଚାଲିଗଲେ । ଆମେ ହସିଲୁଁ । ବେଦମ୍ ହସିଲୁଁ । ତା'ପରେ ସାଙ୍ଗ ହୋଇ ଫୁଟ୍‌ପାଥ ଉପରେ ଆଲୋଚନା କଲୁଁ ପ୍ରେମ ବିଷୟରେ । ସେ କହୁଥିଲେ ଓ ମୁଁ ଶୁଣୁଥିଲି । ସେ କହିଲେ, "ମୁଁ ଚାହେଁ ଜଣେ ମୋତେ ହୃଦୟ ଦେଇ ଭଲ ପାଆନ୍ତା, ପ୍ରତିବଦଳରେ କିଛି ମାଗନ୍ତାନି । ମୋ ପାଖରେ ବସନ୍ତା ଓ ମୁଁ ଗୌରବରେ ତା'ର ପୂଜା କରନ୍ତି । ବାସ୍ ସେତିକି ମୋର ଯଥେଷ୍ଟ ।" ମୁଁ ମନ୍ତବ୍ୟ ଦେଲି, "ତମେ ବାହା ହୋଇ ପଡ଼, ସବୁ ସମସ୍ୟାର ସମାଧାନ ହୋଇଯିବ ।"

ସେ କହିଲେ, ସେମିତି ଗୋଟାଏ ଝିଅ ଖୋଜ ଦଶ—ମନକୁ ପାଇଲା ପରି । ମୁଁ କହିଲି, ତୁମକୁ ସେ ସବୁ କ'ଣ ଅଭାବ ? ପୁଣି ମନକୁ ଶୁଖାଇ ସେ କହିଲେ, ସତକଥା, ମୁଁ ଅନେକ ଝିଅଙ୍କ ସହିତ ସମ୍ପର୍କ ରଖିଛି । ହେଲେ କେହି ମନକୁ ପାଉ ନାହାନ୍ତି । ସମସ୍ତେ ମୋ ଆଡ଼କୁ ଆସି ବାହା ହେବାକୁ ଚାହାନ୍ତି, କିନ୍ତୁ ପ୍ରକୃତରେ ବିବାହରେ କ'ଣ ଅଛି । ବିବାହ ହୋଇଗଲେ ଭଲ ପାଇବାର ମାନେ କିଛି ରହିବନି, ସବୁ ସରିଯିବ । ମୁଁ କହିଲି, ଆପଣ ଭଲ ପାଇବାକୁ ଚାହାନ୍ତି ଅଥଚ ବିବାହ କରିବାକୁ ନୁହେଁ, ତେବେ ଗୋଟାଏ ଝିଅ ଆପଣଙ୍କୁ ଭଲ ପାଇ ଅବିବାହିତ ରହିବ କିପରି ? ଇଏତ ଅସମ୍ଭବ ।

ସେ ମୁହଁଟା ଶୁଖେଇଲେ, "ମୁଁ ମାନୁଛି. କିନ୍ତୁ ମୁଁ ଜାଣି ପାରୁନି ଯେ ମୁଁ କ'ଣ ଖୋଜୁଛି ମୋର ଗୋଟାଏ କିଛି ଦରକାର । କିନ୍ତୁ କ'ଣ ପାଇଲେ ଯେ ମୁଁ ଖୁସି ହେବି ସେ କଥା ମୁଁ ଜାଣେନା, ତଥାପି ବି ମୁଁ ଗୋଟାଏ କିଛି ଖୋଜିଲା ପରି ମୋର ମନେ ହୁଏ ।"

ମେ ସବୁ ଶୁଣି ମୋ ମୁଣ୍ଡ ଗୋଳମାଳ ଧରିଲା । ତାଙ୍କ ଠାରୁ ବିଦାୟ ନେଇ ଆସିଲା ବେଳକୁ ରାତି ଆଠଟା ବାଜି ପନ୍ଦର ମିନଟ୍ । ଭାବୁଥିଲି କେମିତି କୋମଳ ହୃଦୟରେ ସମସ୍ତ ଆବେଗର ମହିତ ସେ ମୋ ଆଗରେ କହିଗଲେ ତାଙ୍କ ମନର କଥା । ମୁଁ ତାଙ୍କର କିଏ, ମୁଁ କ'ଣ ଏତେ ଆପଣାର, ନା ମୁଁ ତାଙ୍କ ପ୍ରେମିକା, ଲେକଟିର ମାୟା, କପଟତା, ଛଳ କିଛି ନାହିଁ, ହସିବା ଓ ହସ ବାଣ୍ଟିବା ତା'ର କାମ, କେହି ତା'ର ପର ନୁହନ୍ତି ।

ମୁଁ ନିଜେ ତା'ପରି ହୁଅନ୍ତି କି ... ... ...

× × ×

ଏକ ଅଶୁଭ ଦିନର ସ୍ମୃତି :—

ସେଦିନ ରବିବାର ହୋଇଥାଏ । କିଛି ଗୋଟାଏ କାମ ନଥିଲେ ବହି ଓ ମାଗାଜିନ ଆଲମିରାରୁ କାଢ଼ି ସଫାସଫି କରି ପୁଣି ସଜାଇ ରଖେଁ । ସେଦିନ ବି ସେଇଆ କଲି । ହଠାତ୍ ଗୋଟାଏ ପୁରୁଣା ପତ୍ରିକାରେ ଗୋଟାଏ ଗପର ଦୁଇଟି ଧାଡ଼ି ଉପରେ ଆଖି ପଡ଼ିଗଲା । ଭଲ ଭାବେ ତାକୁ ପଢ଼ିଲି । ଲେଖକ ଅତି ଚତୁରତାର ସହିତ ପ୍ରେମର ଏକ ନଗ୍ନ ରୂପ ଦେଇଛି । ଭାରି ରାଗିଲି ସେ ଲେଖକ ଉପରେ । ଏଇ ଦୁଇ ଧାଡ଼ି ନ ଦେଇ ଥିଲେ କ'ଣ ଚଳି ନଥାଆନ୍ତା । କିନ୍ତୁ

ଦେଖିଲା ବେଳକୁ ସେ ଗପର ଲେଖକ ସ୍ୱୟଂ ଆମର କନ୍‌ହେଇବାବୁ । ଅଦ୍ଭୁତ ଲାଗିଲା ତାଙ୍କ ଉପରକୁ । ଇଚ୍ଛାହେଲା ପାଖକୁ ଯାଇ ଗାଳି ଦେବାକୁ । ବହୁତ ଦିନ ହେଲା ଦେଖା ହୋଇନି ତାଙ୍କ ସହିତ, ତାଙ୍କ ରୂପ ମନେ ପଡ଼ିଗଲା, ଭାବିଲି ସନ୍ଧ୍ୟା ବେଳକୁ ତାଙ୍କ ପାଖକୁ ଯାଇ କିଛି ଗୁଲି ଜମେଇବାକୁ ।

ସନ୍ଧ୍ୟାବେଳେ ହଠାତ୍ ଗୋଟାଏ କାମ ପଡ଼ିଲା ଭାଇନାଙ୍କ ଘରେ । ତାଙ୍କ ଘରେ ବସି ଭାଉଜ ଓ ମାଉସୀଙ୍କ ସହିତ ଗପ କରୁଛି ବର୍ଷା ଆସିଗଲା, ବହୁତ ସମୟ ଯାଏ ହେଲା, ତେଣୁ କନ୍‌ହେଇଭାଇଙ୍କ ପାଖକୁ ଯିବା ପ୍ରୋଗ୍ରାମ ବନ୍ଦ କଲି । ଭାଉଜଙ୍କ ସହିତ ଗପୁଛି, ବଡ଼ ଭାଇନା ଆସିଲେ । କ୍ୟାପିଟେଲ ହସପିଟାଲରେ ସେ ଡାକ୍ତର । ଭାରି ମଜାଳିଆ ଲୋକ ହେଲେ ବି ଗମ୍ଭୀରତା ପଥର ତାଙ୍କର । ସାର୍ଟ କାଢ଼ୁ କାଢ଼ୁ ମୋତେ ହଠାତ୍ କହିଲେ, ଆରେ ଏ. ଜି. ଅଫିସ ର' ତୋର ସେ ଲେଖକ ସାଙ୍ଗଟା ଆଜି ଦ୍ୱେର ଗୁଡ଼ାଏ ବେଳେ expire କରିଗଲା । ହଠାତ୍ ମୁଁ କିଛି ବୁଝି ପାରିଲିନି ଆଁ ଟା ମେଲା କରି ତାଙ୍କ ଆଡ଼କୁ ଅନେଇ ରହିଲି । କଅଣ ପଚାରିବି ଜାଣି ପାରିଲିନି । ସେ ଟିକିଏ ଭାବି ପୁଣି କହିଲେ, ହଁ, ତା'ର ନାଁ କନ୍‌ହେଇଲାଲ ଦାସ । ତା'ପରେ ସେ ଆଉ କ'ଣ କହିଲେ ମୁଁ ଶୁଣି ପାରିଲିନି । ମୁଁ ଟେବୁଲ ଉପରେ ମୁଣ୍ଡ ଦେଇ ଜ୍ଞାନ ହରେଇଲି । କେତେବେଳେ ଉଠି ଘରକୁ ଫେରିଲି ସେ କଥା ଜାଣେନା । ସେ ରାତିରେ ମୁଁ କିଛି ଖାଇନି । କଅଣ ତା'ର ହୋଇଥିଲା, କିପରି ଏସବୁ ଘଟିଲା, ସେ କଥା ସବୁ ଶୁଣିବାକୁ ମୋର ମନରେ ଆଦୌ ଦମ୍ଭ ନଥିଲା । ମୁଁ ଭାବୁଥିଲି ସତରେ କ'ଣ ଏଇଆ ଘଟିଗଲା । ଆଉ କିଛି ଭାବି ପାରିଲିନି, ଶୋଇଗଲି ।

× × ×

ଓ ଆଜି :—

ଆଜି ସେ ଚାଲିଗଲା ପରେ ମୁଁ ଶୁଣିଛି ତା'ର ପରିବାର ବିଷୟରେ, ତା'ର ବିଧବା ମା' ଓ ସାନଭାଇ ବିଷୟରେ । ସେମାନଙ୍କର ଅଭାବ, ଦୁଃଖ, ଯନ୍ତ୍ରଣା ବିଷୟରେ ଶୁଣିଲା ବେଳକୁ ଆଖିରୁ ଲୁହ ଆସିଯାଉଛି । କନ୍‌ହେଇଭାଇର ପରିବାରରେ ଏତେ ଦୁଃଖ, ଯନ୍ତ୍ରଣା ଏବଂ ତା'ମନ ଭିତରେ ଏତେ ଶୂନ୍ୟତା ତଥାପି ଦିନେ ବି ସେ କାହାକୁ ଏକଥା କହିନି । ସଦାବେଳେ ସେ ହସ ହସ ମୁହଁ, ସତେ ଯେପରି ପୃଥିବୀରେ ସେ ଏକା ସୁଖୀ ; ତା'ର କିଛି ଦୁଃଖ ନାହିଁ, ଅଭାବ ନାହିଁ, ଅସୁବିଧା ନାହିଁ ।

ଅସମ୍ଭବ ଧରଣର ଲୋକ ଥିଲା ସିଏ । କେତେ ଦୁଃଖର ମୂଳଦୁଆ ଉପରେ ସେ ଏତେ ହସୁଥିଲା କପଟ ?

ଆଜ ରାଜଧାନୀ ପାଠାଗାରରେ ତା' ପାଇଁ ନୀରବରେ ସମସ୍ତେ ଛିଡ଼ା ହୋଇ ପ୍ରାର୍ଥନା କରୁଛନ୍ତି । ଠିକ୍ ଏମିତି କାହାର ଶୋକ ସଭାରେ ପ୍ରାର୍ଥନା କଲାବେଳେ ସେ ମୁରୁକି ହସି ମୋତେ ଚିମୁଟି ଦିଏ ଓ କହେ, ଏଇଥିରେ ସେ କ'ଣ ସ୍ୱର୍ଗକୁ ଚାଲିଯିବ, କିନ୍ତୁ ଆଜ କ'ଣ ହେଉଛି ?

ଆଜ ଶୈଳଅପା ଘରେ ଫୁଲ ତୋଳି ଆଣି ମାଳା ଗୁନ୍ଥୁଛି । ଦଶାହ ଦିନ ତା' ଫଟୋରେ ଦିଆଯିବ । କୃଷ୍ଣଭାଇ ତା' ଫଟୋ ଖୋଜୁଛି, ସଭାରେ ରଖାଯିବ ।

ମୁଁ ସମସ୍ତଙ୍କ ପାଖକୁ ବୁଲି ବୁଲି ଡାକୁଛି ସଭାକୁ ଆସିବାକୁ । କନ୍‌ହେଇ ପାଇଁ ସଭା ହେଲା । "ସ୍ମୃତିରକ୍ଷା ସମିତି ଗଠନ ହେଲା । ପ୍ରେସକୁ ଗଲି ରସିଦ ବହି ଛପାଇବା ପାଇଁ । କନ୍‌ହେଇ ପାଇଁ ଟଙ୍କା ଆଦାୟ ହେବ । ତା'ର ବହି ଛପା ହେବ । ତା' ପରିବାରକୁ ସାହାଯ୍ୟ ପଠାହେବ । ସମସ୍ତଙ୍କୁ ଅନୁରୋଧ କରୁଛି କିଛି ଗୋଟାଏ ତା' ପାଇଁ କରିବା । ଖବର କାଗଜ ସମ୍ପାଦକମାନଙ୍କ ସହିତ ଯୁକ୍ତି କରୁଛି କନ୍‌ହେଇ ବିଷୟରେ ବହୁତ କିଛି ଛାପିବାକୁ । ସେ ଅମର ହେବ । ଲୋକେ ତାକୁ ମନେ ରଖିବେ । ଆମେ ତା' ଆତ୍ମାକୁ ଶାନ୍ତି ଦେବୁ । ଅସମ୍ଭବ ! ଅସମ୍ଭବ ।

ଗ୍ରନ୍ଥାଳୟ ପାଖରେ ଯେଉଁଠି ଚା' ଖାଇଲା ବେଳେ କନ୍‌ହେଇଭାଇ ସହିତ ଗପ କରୁଁ ସେଇଠି ଆଜ ଛିଡ଼ା ହୋଇ ହାତରେ ରସିଦ ବହି ଧରି ଲେଖକ ବନ୍ଧୁମାନଙ୍କୁ କହିବାକୁ ଯାଉଛି କନ୍‌ହେଇର ଶେଷ ଆଶା ପୂରଣ କରିବା ପାଇଁ ତା'ର ଗୋଟାଏ ବହି ପ୍ରକାଶ କରିବା, ତେଣୁ କିଛି ଅର୍ଥ ଦରକାର ... ... ... ।

ମୋ ହାତରେ ଶାନ୍ତିନିକେତନ ଡିଆରି ସେଇ ଫୁଲମୁଣି, ସେଥିରେ ଅଛି, "କନ୍‌ହେଇଲାଲ ସ୍ମୃତିରକ୍ଷା ସମିତି"ର ରସିଦ ବହି । ମୁଁ ବୁଲୁଛି କନ୍‌ହେଇ ପାଇଁ । ମୁଁ ଭାବିଲା ବେଳକୁ ନିଜକୁ ଲାଜ ଲାଗୁଛି । ଛି, କନ୍‌ହେଇ ଶେଷରେ ଏଇଆ କରି ଦେଇ ଗଲା ।



# ସ୍ମୃତି ତର୍ପଣ

• ଦୀପ୍ତି ବଣ୍ଟାଲ

ଏ ସଂସାରରୁ ସମସ୍ତେ ଦିନେ ବିଦାୟ ନେଇ ଯିବେ। କିଏ ଯିବେ ଆଗରେ, କିଏ ବା ପରେ। ପରିଣତ ବୟସରେ ଯେଉଁମାନେ ଏ ସଂସାରରୁ ବିଦାୟ ନେଇ ଯାଆନ୍ତି ସେମାନଙ୍କ ଯିବାରେ କିଛି ଆକସ୍ମିକତା ନାହିଁ। ତାଙ୍କର ଯିବା ସ୍ୱାଭାବିକ। ତାଙ୍କ ପାଇଁ ଆମର ଯେଉଁ ଦୁଃଖ ବା ଶୋକ ତା'ର ତୀବ୍ରତା ମଧ୍ୟ କମ ହୁଏ। କିନ୍ତୁ ସ୍ନେହାସ୍ପଦ ଅନୁଜ ପ୍ରଶମ କହ୍ନେଇର ଏଭଳି ଆକସ୍ମିକ ବିଦାୟ ବଡ଼ ମର୍ମାନ୍ତିକ। ପ୍ରଭାତ ସୂର୍ଯ୍ୟର ଆଲୋକରେ ଯେଉଁ ଜୀବନ-ପଦ୍ମଟିଏ ଶତଦଳ ମେଲି ପ୍ରସ୍ଫୁଟିତ ହେବାକୁ ଯାଉଥିଲା ଅକାଳରେ ତାହା ଝଡ଼ି ପଡ଼ିବା ଅତି କଷ୍ଟଦାୟକ। କହ୍ନେଇ ନାହିଁ, ସେ ଆଉ କେବେ ଆମ ଭିତରକୁ ଆସିବ ନାହିଁ, ଏକଥା ବିଶ୍ୱାସ କରି ହୁଏ ନା।

ମୋ' ସହିତ ତା'ର ସାକ୍ଷାତ ପରିଚୟ ଅତି ଅଳ୍ପ ଦିନର। ଯଦିଓ ପୂର୍ବରୁ ତା'ର ଲେଖା ସହିତ ମୋର ପରିଚୟ ଥିଲା। କିନ୍ତୁ ପ୍ରଥମେ ତାକୁ ଦେଖିଥିଲି ମୋର ବନ୍ଧୁ ଅଧ୍ୟାପିକା ଶ୍ରୀମତୀ ଶାନ୍ତି ମହାପାତ୍ରଙ୍କ ଘରେ। ଶାନ୍ତି ତା' ସହିତ ମୋର ପରିଚୟ କରେଇ ଦେଇଥିଲେ। ତା' ପରଠୁଁ ବିଭିନ୍ନ ସାଂସ୍କୃତିକ ଓ ସାହିତ୍ୟ ଅନୁଷ୍ଠାନମାନଙ୍କରେ ତା' ସହିତ ମୋର ସାକ୍ଷାତ ହୋଇଛି। ଯେଉଁଠି ଦେଖି ନା କାହିଁକି ହସି ହସି ନମସ୍କାର କରି ଭଲ ମନ୍ଦ ପଚାରିଛି। ସର୍ବଦା ସସ୍ମିତ ସେଇ ମୂର୍ତ୍ତିଟି କଦାପି ଭୁଲିହେବ ନାହିଁ। ନମ୍ର, ଶାନ୍ତ, ଭଦ୍ର, ମେଳାପୀ। ତା'ର ଚାଲି ଯିବାଟା ଏପରି ଅପ୍ରତ୍ୟାଶିତ ଯାହାକୁ ବିଶ୍ୱାସ କରିବା ଅତି କଷ୍ଟକର।

ଗତ ୧୯୭୫ ଜୁନ ସତେଇଶ ତାରିଖରେ ତା' ସହିତ ମୋର ଭୁବନେଶ୍ୱର ବସ୍-ଷ୍ଟାଣ୍ଡରେ ଶେଷ ଦେଖା। ମୁଁ ବସ୍ ପାଇଁ ଅପେକ୍ଷା କରୁଥିଲି। କହ୍ନେଇ ଦୂରରୁ ମୋତେ ଦେଖି ପାରି ପାଖକୁ ଆସି ନମସ୍କାର କରି ପଚାରିଥିଲା 'ଅପା କେଉଁଠିକି ଯାଉଛନ୍ତି ?' ତା'ପରେ ଜୁନ ସଂଖ୍ୟାରେ "ଆସନ୍ତାକାଲି"ରେ ପ୍ରକାଶିତ ମୋର ଏକ ଗଳ୍ପର ଅନେକ ସମାଲୋଚନା କରି ବିଦାୟ ଦେଇଥିଲେ। ତା'ର ସେଦିନର ସେଇ ପୋଷାକ, ଚେହେରା ହସ କଥା ସବୁ ମୋର ଆଜି ମନେ ପଡ଼ି

ଯାଉଛୁ । ସେଦିନ ମୋର କଳ୍ପନାରେ ମଧ୍ୟ ଆସି ନଥିଲା ଯେ, ସେ ଆଜି ମାତ୍ର ଗୋଟେ ମାସ ପରେ ଆମ ସମସ୍ତଙ୍କଠୁଁ ଓ ତା'ର ଚିର ପରିଚିତ ଜଗତଠାରୁ ସବୁ ସମ୍ପର୍କ ଛିନ୍ନ କରି ସବୁଦିନ ପାଇଁ ଚାଲିଯିବ । କାହିଁକି ଏମିତି ହେଲା ! କିଏ ତା'ର ଉତ୍ତର ଦେବ ? ପାର୍ଥିବ ସମ୍ପର୍କ ତା' ସହିତ ଆମର ଛିନ୍ନ ହେଲେ ମଧ୍ୟ ଆତ୍ମିକସମ୍ପର୍କ ତା' ସହିତ ଆମର କଦାପି ଛିନ୍ନ ହେବ ନାହିଁ । ସେ ସବୁଦିନ ଆମ ସଭିଙ୍କ ମନ ଭିତରେ ବଞ୍ଚି ରହିବ ।



# ଦେଖା ହୋଇ ନାହିଁ

• ଶରତଚନ୍ଦ୍ର ନାୟକ

॥ ଏକ ॥

ସେପ୍ଟେମ୍ବରର ଏକ ମନୋରମ ସନ୍ଧ୍ୟା । ଶାନ୍ତନକେତନରୁ ହାଓ୍ୱଡ଼ା ଦେଇ ବ୍ରହ୍ମପୁର ଯାଉଥାଏ । ହାଇଦ୍ରାବାଦ ଏକ୍ସପ୍ରେସ ବାଲେଶ୍ବର ଷ୍ଟେସନ ଛାଡ଼ିଥାଏ ଠିକ୍ ସନ୍ଧ୍ୟା ଛଅଟା ବେଳେ ।

କେତେ ଗରମ ଚ୍ହ' ବନମୟୂରେ କିଛି ସତେଜତା ପ୍ରାପ୍ତି ଓ ନୟନେନ୍ଦ୍ରିୟର ମନୋଟନ ଭାଙ୍ଗିବା ପାଇଁ ଅନ୍ୟାନ୍ୟ କମ୍ପାର୍ଟମେଣ୍ଟରୁ ପ୍ଲାଟଫର୍ମକୁ ଝରକା ଦେଇ ଉଙ୍କିମାରୁଥିବା କିଛି ଅଚିହ୍ନା ଦାଗ ମୂର୍ତ୍ତି ଏବଂ ସେମାନଙ୍କ ଆୟତ ଆଖିର ଅଜଣା ଭାଷା ବୁଝିବାର ଅବ୍ୟର୍ଥ ଇଚ୍ଛାକୁ ପଛେଇ କରି, ଓଠିରେ ସିଗାରେଟଟିଏ ଧରାଇ ସଅଳ ପାଦ ବଢ଼ାଇଥାଏ ଟି-ଷ୍ଟଲ ଆଡ଼େ ।

ବାଲେଶ୍ବର ଷ୍ଟେସନ ସେଇ ମୁହୂର୍ତ୍ତକ ପାଇଁ ବେଶ୍ ଜନାକୀର୍ଣ୍ଣ ଓ କର୍ମ-ଚଞ୍ଚଳ ହୋଇ ଉଠିଥିଲା ।

ଲୋକ ଗହଳର ଲହଡ଼ା ଭାଙ୍ଗି ଭାଙ୍ଗି ଆଗେଇ ଯାଉଥିଲା ବେଳେ "ଆରେ କନ୍ହେଇ ··· ··· କନ୍ହେଇ" କହି କେହି ଜଣେ ପଛ ପଟୁ ଗୋଟାଏ ମୋତେ ଜାବୋଡ଼ି ଧରିଲା ।

କ୍ଷଣକ ବିରକ୍ତ ଓ କ୍ଷଣକ ରୋଷାପ୍ଳୁତ ହୋଇ ପଛକୁ ବୁଲି ଅଗତ୍ୟା ଠିଆ ହୋଇ ପଡ଼ିଲି ।

ମୋ' ମୁହଁକୁ ସିଧାସଳଖ ଦେଖି ପାରି ଯୁବକ ଜଣକ ଏଥର ମୋତେ ଛାଡ଼ି ଦେଇ ଅପ୍ରସ୍ତୁତ ଓ ଶଙ୍କିତ ହୋଇ ଅନେକଟା ଅନୁନୟ ଭଙ୍ଗୀରେ ସଫେଇ ଦେବା ଆରମ୍ଭ କରି ଦେଇଥିଲେ—କ୍ଷମା କରିବେ, ମୁଁ ଠିକ୍ ଧରି ପାରିଲି ନାହିଁ—ଭାବିଥିଲି କନ୍ହେଇ, ଆମର କନ୍ହେଇଲାଲ ଦାସ ହୋଇ ଥିବେ ବୋଲି ଇତ୍ୟାଦି ।

## ॥ ଦୁଇ ॥

କେନ୍ଦୁଝର ନିକଟରେ ଶାନ୍ତିନିକେତନ ଆଶ୍ରମ— ଏଇ ମର୍ମରେ ସେ ଏକ ଚିଠି ପଠାଇଥିବା କଥା ଅଗ୍ରଜ ବନ୍ଧୁ ଭରତବାବୁ ମୋତେ ସୂଚନା ଦେଇଥିଲେ ।

ସେତେବେଳେ କନ୍ହେଇ ପାନ୍ଥାଗଡ଼ସ୍ଥ 'ଏୟାର ବେସ୍'ରେ ଅବସ୍ଥାପିତ ଥାଆନ୍ତି ।
ନିର୍ଦ୍ଧାରିତ ଦିନ କନ୍ହେଇ ଆସି ବିଦ୍ୟାଭବନ ହଷ୍ଟେଲରେ ପହଞ୍ଚିଲେ ।

ମେଞ୍ଚଡ଼ ଟୋକାଟିଏ !

ଅଙ୍ଗ ଗଠଣରେ ସେପରି ଆଖି ଦୃଶିଆ ବଳିଷ୍ଠ ରୂପ ନଥିଲା, ମୁଖରେ ନ ଥିଲା ତାରୁଣ୍ୟର ସବୁଶ୍ରୀ ।

ଝାମ୍ପିଲ ଦୁର୍ବଳ ସ୍ୱାସ୍ଥ୍ୟ । ହାଡ଼ହାଡ଼ିଆ ଗାଲ । ଫମ୍ପତପ ଦେହ । ଆଳାପ ଆଲୋଚନାର । ପରିଶେଷରେ ବେଶ୍ ଆତ୍ମୀୟତା ମଧ୍ୟ ଜମି ଉଠିଲା ।

କନ୍ହେଇ ବାକ୍‌ସର୍ବସ୍ୱ ବା ବାକ୍‌ପଟୁ ନଥିଲେ । ଅନୁଚ୍ଚସ୍ୱରରେ ମ ପିଚ୍‌ପି କଥା ।
ନିଜେ ଅଳ୍ପ କଥା କହନ୍ତି, ଅନ୍ୟର କଥା ମନ ଦେଇ ବେଶୀ ଶୁଣନ୍ତି ।

ତର୍କ କରି ନିଜ ଯୁକ୍ତି ବନ୍ଧୁମାନଙ୍କ ଆଗରେ ବଳିଷ୍ଠଭାବେ ଉପସ୍ଥାପିତ କରିବାର କ୍ଷମତା ତାଙ୍କର ନଥିଲା । ସେଥିପାଇଁ ଆଗ୍ରହ ମଧ୍ୟ ନଥିଲା ।

ନିଜର ବକ୍ତବ୍ୟ ଯଥାଯଥ ଭାବେ ସଜେଇ ଗୁଜେଇ କଲମ ମୁନରେ ସେ ଯେପରି ବଳିଷ୍ଠଭାବେ ଫୁଟାଇ ପାରୁଥିଲେ, ପାଟିରେ ସେପରି ଯୁକ୍ତିନିଷ୍ଠ ସ୍ପଷ୍ଟ କଥା ତାଙ୍କର ଫଇଟ୍ ନଥିଲା ।

କନ୍ହେଇ ସବୁ କଥାର ଜବାବ ପାଟିରେ ଦେଉ ନଥିଲେ । ଅନେକ ସମୟରେ ଅନ୍ୟର କଥାରେ ମୁଣ୍ଡ ଟିଙ୍ଗାରି ମୁରୁକୁଡ଼ି ହସ ହସି ସମର୍ଥନ ଜଣାଇ ଦେଉଥିଲେ ।

ଚିମ୍ପଟ ମୁହଁରେ କଳା ମଟମଟ ନିଶ ଯାଙ୍କୁ ଏ ମୁରୁକୁଡ଼ି ହସ କନ୍ହେଇଙ୍କୁ ବେଶ୍ ମାନୁଥିଲା ।

ଫ୍ରାକ୍-ଗାର୍ଣ୍ଣିକ ଜୀବନରେ କନ୍‌ହେଇଙ୍କୁ ଯଦି କେଉଁ ଜିନିଷ କେବେ ଭଲ ପାଇ ବସିଥିବ, ତେବେ ତା' ନିଶ୍ଚୟ ତାଙ୍କ ଆଖି ଦୁଇଟା ପାଇଁ ।

କନ୍‌ହେଇଙ୍କ ଅଳସ ଉଦାସ ଅଙ୍ଗ ଅବୟବ ମଧ୍ୟରେ ଏ ଆଖି ଦୁଇଟାକ୍ଷି ଯେପରି ଥିଲା ସମ୍ପୂର୍ଣ୍ଣ ଭିନ୍ନ ଧରଣର । କେମିତି ଏକ ଚଳଚଞ୍ଚଳ ଉଜଜ୍ଜ୍ୱଳ ଭାବ ! ପ୍ରତି ମୁହୂର୍ତ୍ତରେ ଆଖି ଦୁଇଟି କ'ଣ ଯେପରି ଖୋଜିବାରେ ଲାଗିଛନ୍ତି । କିନ୍ତୁ ସେ ଖୋଜା ହଜିଯାଇଥିବା କୌଣସି ଜିନିଷ ପାଇଁ ନୁହେଁ ।

କନ୍ହେଇଙ୍କ ଆଖି ଦୁଇଟିକୁ କଲମ୍ବସ୍‌ଙ୍କ ଆଖି ଦ୍ୱୟ ସହ ତୁଳନା କରାଯାଇ ପାରେ।

ସମୁଦ୍ର ମଝିରୁ ନୂଆ ଭୂ-ଖଣ୍ଡର ସନ୍ଧାନ ପାଇଁ କଲମ୍ବସ୍‌ଙ୍କ ଆଖି ଦ୍ୱୟ ଯେପରି ସଦା ସଜାଗ ଥିଲେ, ଆମ ଦୈନନ୍ଦିନ ସମାଜରୁ ନୂତନ କଥା ଓ ସମସ୍ୟାମାନ ଆବିଷ୍କାର କରିବାରେ କନ୍‌ହେଇଙ୍କ ଆଖି ଦ୍ୱୟ ଯେପରି ସତତଃ ତତ୍ପର ରହୁଥିଲେ ।

ସେଦିନ ସନ୍ଧ୍ୟାରେ ଶାନ୍ତିନିକେତନରେ ଏକ ନାଟକୋତ୍ସବର ଆୟୋଜନ ହୋଇଥାଏ । ଆଉ କେଇ ଜଣ ବନ୍ଧୁଙ୍କ ସଙ୍ଗରେ ବସି କନ୍‌ହେଇ ଓ ମୁଁ ନାଟକ ଦେଖୁଥିଲୁଁ । ମୋର ଜେଣ୍ଟ ଜଣେ ରସିକ ବନ୍ଧୁଙ୍କ ମତରେ ଶାନ୍ତିନିକେତନ ହେଉଛି ରୂପ-ସ୍ପର୍ଶ ପଶ୍ୱ-ନଗରୀ । ଏଥିର ନାମ ଶାନ୍ତିନିକେତନ ପରିବର୍ତ୍ତେ ପଶ୍ୱ-ନିକେତନ ହେବ । କୁଆଡ଼େ ଉଚିତ ଥିଲା ବୋଲି ତାଙ୍କର ମତ । ଏଠାକାର ସୁନ୍ଦରୀ ଝିଅ ମାନଙ୍କ ରୂପକୁ ନମ୍ବର ମାର୍କ ଦେଇ ବସିଲା ବେଳେ ସେ କୁଆଡ଼େ ସଂଖ୍ୟାର ଅଭାବ ବାରମ୍ବାର ଉପଲବ୍‌ଧି କରନ୍ତି । ମୋର ସେହି ରସିକ ବନ୍ଧୁଙ୍କ ଉକ୍ତିଗୁଡ଼ିକ ଉଦ୍ଧାର କରି କନ୍‌ହେଇଙ୍କ ଠାରୁ ମୁଁ ମୁଚୁକୁନ୍ଦ ହସ ଆଦାୟ କରିନେଇ ଥିଲି ।

ନିର୍ଦ୍ଧାରିତ ସମୟର ବହୁ ବିଳମ୍ବରେ ହେଲେ ମଧ୍ୟ ନାଟକ ଆରମ୍ଭ ହୋଇ ସାରିଥିଲା ।

ଏବେଣି ଆମ ଚତୁର୍ଦ୍ଦିଗରେ ସୁନ୍ଦର ଅପରୂପ ପ୍ରାଚୁର୍ଯ୍ୟ । ବେଣୀ ବିନୋଦିନୀ ଏସେନ୍‌ସର ଭୁର୍‌ଭୁର୍ ଗନ୍ଧ ନାକରେ ବାଜୁଥାଏ । କାନରେ ଆସି ବାଜୁଥାଏ ରୂପବତୀଙ୍କ ଲାଇଲାଆ ମନମୋହନିଆ କଥାର ବେଶ୍ କିଛି ଭଗ୍ନାଂଶ (ସେଇ କଥା ନୁହେଁ ଯେମିତିକି ସିତାରର ଝଙ୍କାର) ଆଉ ତା' ସାଙ୍ଗକୁ ଖିଲିଖିଲ ବୁକୁଖୋଲା ହସ । (ସେ ହସ ସେମାନଙ୍କ ଅନ୍ତରାତ୍ମାଁ ନୁହେଁ ସେମାନଙ୍କ ନେଶୀ ପରକୁ ଶୁଣାଇବା ପାଇଁ ହିଁ ଯେପରି ଅଭିପ୍ରେତ !)

କନ୍‌ହେଇଙ୍କ ପାଇଁ (ଅବଶ୍ୟ ମୋ' ପାଇଁ ମଧ୍ୟ) ମଞ୍ଚରେ ଅଭିନୟ ଭଳି ତରୁଣ ଗୁଡ଼ିକ କେବଳ ନଟନଟୀ ନଥିଲେ ଶାନ୍ତିନିକେତନର ସମସ୍ତ ଉପସ୍ଥିତ ଅଧିବାସୀ ଯେପରି ଆମ ଆଗରେ ପାଲଟି ଯାଇଥିଲେ ପୋଖତ ଅଭିନେତା ଅଭିନେତ୍ରୀ ରୂପେ ।

ବାସ୍ତବରେ ମଞ୍ଚ ନୁହେଁ, ଆମ ଚତୁଃପାର୍ଶ୍ୱରେହିଁ ପ୍ରକୃତ ଅଭିନୟ ସବୁ ଆରମ୍ଭ ହୋଇ ସାରିଥିଲା (ମଞ୍ଚର ମିଥ୍ୟା ଅଭିନୟ ସବୁ ଆରମ୍ଭ ହେବାର ବହୁ ପୂର୍ବରୁ ।) ଆଜି ଆମ ଆଖି ଟେଇଠିହିଁ ଲାଗି ରହିଥିଲା ।

ନାଟକ ଦେଖି ଫେରିଲା ବେଳେ କନ୍‌ହେଇ (ସେ ଆଜି ଏକ କନ୍‌ହେଇ !) ଆବେଗ ଗଳାରେ କହୁଥିଲେ—

"ବୁଝିଲେ ଶରତବାବୁ, ଶାନ୍ତିନିକେତନରେ ଆଉ କିଛି ଦିନ ରହିଲେ ମୋ ଗଳ୍ପ ପାଇଁ ବେଶ୍ କେଇଟା ମଜାଦାର ପ୍ଲଟ୍ ସଂଗ୍ରହ କରି ନେଇ ପାରନ୍ତି ।"

"ବେଶ୍ ତ, କିଛି ଦିନ ରହି ଯାଆନ୍ତୁ ।" ମୋ' ସହ ଆଜି କେଉଁଠି ସ୍ୱର ମଧ୍ୟ ଏକା ସଙ୍ଗେ ଗୁଞ୍ଜରି ଉଠିଥିଲା ।

କନ୍‌ହେଇ କିନ୍ତୁ ଆଉ ରହି ନ ଥିଲେ ।

କର୍ତ୍ତବ୍ୟର ତାଡ଼ନାରେ ତା' ପରଦିନ ହିଁ ତାଙ୍କୁ ପାନ୍ଥ ଗଡ଼ ଫେରି ଯିବାକୁ ପଡ଼ିଥିଲା ।

କନ୍‌ହେଇ ପରେ ଆଉ କେବେ ଶାନ୍ତିନିକେତନ ଆସି ପାରି ନଥିଲେ । କାରଣ ପାନ୍ଥଗଡ଼ ନୁହେଁ, ତା'ର କେଇଦିନ ପରେ ବାଲେଶ୍ୱର ଏବଂ ପରେ ପରେ ଭୁବନେଶ୍ୱର ତାଙ୍କର କର୍ମସ୍ଥଳ ହୋଇ ଉଠିଥିଲା ।

॥ ୩ ॥

୧୯୭୬ ମସିହା ଜୁଲାଇ ମାସ ତଇଶ ତାରିଖରେ ଏକ ମ୍ଳାନ ଅପରାହ୍ଣ ।

ଓଲ୍ଡ ଟାଉନ ଯିବାକୁ କ୍ୟାପିଟାଲ ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିଥାଏ ଟାଉନ ବସ୍ ପାଇଁ ।

ଆକାଶର ଚତୁର୍ଦ୍ଦିଗରେ କଳାହାଣ୍ଡିଆ ମେଘ ଗାଢ଼ି ହୋଇ ରହିଥାଏ। ମନେ ହେଉଥାଏ, ଏଇ ମୁହୂର୍ତ୍ତରେ ଯେମିତ ବେଶ୍ ଅସହ୍ୟ ପାଣି ବର୍ଷି ଦେଇଯିବ।

କେଉଁଆଡ଼ୁ ବେଳ ଏ ମଣିଷ ବୋହେଇ କରି ବସ୍‌ଟିଏ ଷ୍ଟାଣ୍ଡରେ ଆସି ପହଂ ହେଉଥାଏ।

ଟାଣଭଙ୍ଗା କଳରୁ ଖୁଲିଲ ଧାଇଁ ଆସିଲା ପରି ବସ୍ ଭିତରୁ ବାହାରକୁ ଅବାରିତ ମଣିଷଧାର ଛୁଟି ଖୁଲୁଥିଲା।

ସେଇ ଭିଡ଼ ଭିତରେ ଜଣକୁ ଅପ୍ରତ୍ୟାଶିତଭାବେ ଆବିଷ୍କାର କରିବାର ଆନନ୍ଦରେ ମୁଁ ଆତ୍ମହରା ହୋଇ ଉଠିଲି।

ସନ୍ତୋରେ ଛୁଟିଯାଇ ଭିଡ଼ ଭିତରୁ ଜଣେ ଯୁବକଙ୍କୁ "ଆରେ କନ୍‌ହେଇବାବୁ— କନ୍‌ହେଇବାବୁ ମ" କହି ହାତବାଣ୍ଡ ଧରିଲି। ମୁହଁକୁ ବଙ୍କେଇ କରି ଯୁବକ ଜଣକ ମୋତେ ପୂରାପୂରି ସନ୍ଦେହରେ ଚାହିଁ କହି ଉଠିଲେ—"ଛାଡ଼ନ୍ତୁ, କ'ଣ ମଣିଷ ଚିହ୍ନି ପାରୁ ନାହାନ୍ତି ?"

ସତେ ଯେ' କନ୍ହେଇଙ୍କୁ ଚିହ୍ନି ପଥ ଭୁଲିଯିବେ ଆଉ ଟିକିଏ ଚିହ୍ନିବାର ଅବକାଶ ପାଇଲି ନାହିଁ।

ତା'ର ଦୁଇ ତିନି ଦିନ ପରେ ଏପରି ଏକ ସମ୍ବାଦ ପାଇଲି (ସେ ତ ସମ୍ବାଦ ନୁହେଁ, ପୂର୍ବପୂରି ଦୁଃସମ୍ବାଦ) ଯା' ଫଳରେ ଚିରଦିନ ପାଇଁ ଏ ଚୋ-ଚୋ-ଚିହ୍ନା ଲୁଚକାଳି ଖେଳର ଏକ ପୂର୍ଣ୍ଣଚ୍ଛେଦ ପଡ଼ିଗଲା।

ଭବିଷ୍ୟତ ଜୀବନରେ ଓଡ଼ିଶାର ଯେ କୌଣସି ସହରର ପ୍ଲାଟଫର୍ମ, ବସ୍‌ଷ୍ଟାଣ୍ଡ ରେଷ୍ଟୋରାଁ, ଜନଗହଳି ଛକର ମୋଡ଼ ବା ସିନେମା ଫେରନ୍ତା ରାସ୍ତାରେ ଆଉ କେହି ମୋତେ କେବେ ଭୁଲରେ କନ୍‌ହେଇ ବୋଲି ଭିଡ଼ ଧରିବ ନାହିଁ, କି ମୁଁ ମଧ୍ୟ ଆଉ କେବେ କାହାକୁ ଭୁଲରେ କନ୍‌ହେଇ ବୋଲି ଭିଡ଼ ଧରିବି ନାହିଁ।

'ତାଙ୍କ ଠିକଣା'ରେ ଲିଖିତ କୌଣସି ଚିଠି ଆଉ ତାଙ୍କ (କନ୍ହେଇଙ୍କ) ନିକଟରେ ପହଞ୍ଚିବ ନାହିଁ।

ପ୍ରଚଣ୍ଡ ପ୍ରତିଭାଧାରୀ ତରୁଣ କଥାକାର କନ୍‌ହେଇଙ୍କ ଅକାଳ ଅନ୍ତର୍ଦ୍ଧାନ ଆଜି ମୋତେ ବଙ୍ଗଳାର ତରୁଣ କଳ୍ପନା କବି ସ୍ୱର୍ଗୀୟ ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ କଥାକୁ ଭାଇଂବାର ମନେ ପକାଇ ଦେଉଛି।

●

# ମନିଅର୍ଡ଼ର ନୁହେଁ ଟେଲିଗ୍ରାମ

• ପ୍ରସନ୍ନ ମିଶ୍ର

ସେଦିନ ହୋଇଥାଏ ଜୁଲାଇ ତା ୨୮ ରିଖ ସକାଳ ୮ଟା । କଟକ ଓ. ଏମ୍. ପି. ଛକରେ ଫୁଟପାଥରେ 'ପ୍ରଜାତନ୍ତ୍ର'ଟି କିଣି ପଢ଼ିବାକୁ ଆରମ୍ଭ କଲି । ପ୍ରଥମ ପୃଷ୍ଠା ପରେ ଦ୍ୱିତୀୟ ପୃଷ୍ଠାରେ ଆଖି ଲାଗି ରହିଗଲା । ମୁଁ ବିଶ୍ୱାସ କରି ପାରିଲିନି । ପ୍ରଥମ ବର୍ଷା ପରେ ନିଜକୁ ସମ୍ଭାଳି ନେଲି । ବନ୍ଧୁ କନ୍ହେଇ ସତରେ ଚାଲିଗଲା ! ମୋ ମନ ମାନିଲାନି । 'ସମାଜ' 'ମାତୃଭୂମି' ସବୁ ଖୋଲିକରି ପକାଇଲି । ଅନ୍ୟ କୌଣସି କାଗଜରେ ତ' ବାହାରିନି ? ଘୋର ସନ୍ଦେହ ହେଲା । ମୁଁ ଆଗେଇଲି ତରୁଣ ଗାଳ୍ପିକ ବନ୍ଧୁ ଶାମାପ୍ରସାଦ ଚୌଧୁରୀଙ୍କ ଘର ଆଡ଼େ । ସେ ମୋତେ ଦେଖିବା କ୍ଷଣି ବନ୍ଧୁ କନ୍ହେଇଙ୍କର ଦୁଃସମ୍ବାଦଟି ଦେଲେ । ମୋର ବିଶ୍ୱାସ ଏକଦମ ଦୃଢ଼ୀଭୂତ ହେଲା । ଭାଇ କନ୍ହେଇ ଚାଲିଗଲା ତା' ହେଲେ !!!

ନମ୍ର ବ୍ୟବହାର, ଗୋରା ତକ୍ ତକ୍ ଚେହେରା, ସାମାନ୍ୟ ଲମ୍ବା, ମାତ୍ର ଛବିଶ ବର୍ଷ ବୟସର ଉଦୀୟମାନ ତରୁଣ ଏକାନ୍ତ କନ୍ହେଇଚରଣ ଦାସ । ଯୌବନର ମଧ୍ୟାହ୍ନରେ ତାଙ୍କୁ ଏ ନିଷ୍ଠୁର ଭଗବାନ ଘାତ ମାରିଲେ । ସେ ତା' ବାଟରେ ଚାଲିଗଲା । ଆମ ଆଖିରେ ସବୁଜକ ଲୁହ ଦେଇ ସେ ଚାଲିଗଲା । ଚିର କୁମାର ହୋଇ କନ୍ହେଇ ଆମକୁ କନ୍ଦାଇ, ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଅପୂରଣ କ୍ଷତି ଆଣି ଦୂରେଇ ଗଲା । ତା'ର ସ୍ମୃତିଗୁଡ଼ିକୁ ସାଇତି ରଖି ତାକୁ ଜୀବନର ସମ୍ବଳ କରି ବଞ୍ଚିବାକୁ ହେଲା ।

ଭାଲଗତ ମନେ ପଡ଼େ । "'ମୌସୁମୀ ସାହିତ୍ୟ ସଂସଦ"ର ମୁଖପତ୍ର "ମୌସୁମୀ-ପତ୍ର"ର ୧୯୭୪ ଫୁଲ-ଫାଗୁଣ ସଂଖ୍ୟା କନ୍ହେଇଙ୍କ କ୍ଷୁଦ୍ର ଗଳ୍ପଟିଏ ମାଗିଥିଲି । ଅନୁଷ୍ଠାନର ସମ୍ପାଦକ ବନ୍ଧୁ ଇଞ୍ଜିନିୟର ଅକ୍ଷୟ ମିଶ୍ର ମଧ୍ୟ କହିଥିଲେ—ଅନୁରୋଧ ଏକଦମ ସେ ଅତି ଶ୍ରେଷ୍ଠ ପରୀକ୍ଷାମୂଳକ ଗପଟିଏ ଦେଲେ 'ମୌସୁମୀ ପତ୍ର'ରେ ଛାପିବାକୁ । ସେ ଗପଟିରୁ କିଛି ଅଂଶ ମୁଁ ଏଠାରେ ଉଦ୍ଧାର କରୁଛି । ସେ ଗପରେ ସେ କିପରି ନିଜକୁ ନିଃସହାୟ ମନେ କରୁଥିଲେ ତାହା ବର୍ଣ୍ଣିଛନ୍ତି । ସେ ଗଳ୍ପଟିର ଶୀର୍ଷକ ଥିଲା

"ସଂପଦ କାଳେ ସର୍ବେ ସଖା, ବିପଦେ ନ ବନ୍ଧୁ ଦେଖା" ।

"ମୁଁ ଅନୁଭବ କଲି ପୃଥିବୀରେ ଏବେ ବି ଜଣେ ଅନ୍ତତଃ ପ୍ରକୃତ ସାଥୀ ଅଛି ଯିଏ ମୋ ହସରେ ହସିପାରେ, ମୋ ଦୁଃଖରେ କାନ୍ଦି ପାରେ ଏବଂ ମୋ ମୃତ୍ୟୁରେ ମରି ପାରେ । ମୁଁ ଉଠି ଆଲୁଅ ଲିଭାଇ ଦେଲି । କାରଣକୁ ଖୁଣ୍ଟିଲି । ସେ ନଥିଲା କାରଣ ସେତେବେଳେ ଅନ୍ଧକାର ।" ("ମୌସୁମୀ ୭୫", ୧୯୭୪ ମାର୍ଚ୍ଚ ସଂଖ୍ୟା )

ଅନେକେ ତାରିଫ କଲେ ଏ ଗଳ୍ପର । ଗଳ୍ପଟି ମଧ୍ୟ ପ୍ରଥମ ସ୍ଥାନ ଲାଭକରିଥିଲା "ମୌସୁମୀ ୭୫"ରେ । ସେ ଗଳ୍ପ ପଛରେ କି ପ୍ରଚ୍ଛନ୍ନ ସତ୍ୟ ନିହିତ ଥିଲା ସତେ ! ଭାବିଲେ କାନ୍ଦ ଲାଗେ ।

ସ୍ୱର୍ଗତ କନ୍ହେଇଙ୍କର ନିକଟ ଅତୀତରେ 'ନବରବି'ରେ ବାହାରିଥିବା "ପ୍ରୟୋଜନୀୟ ହତ୍ୟାକାଣ୍ଡ ସଂପର୍କରେ ଷଡ଼ଯନ୍ତ୍ର" "ଏକ ବ୍ୟବଚ୍ଛେଦର ଧାରା ବିବରଣୀ" ଏବଂ "ଧୃତରାଷ୍ଟ୍ରର ଆଖି" ଓ 'ସାରଥି'ରେ ପ୍ରକାଶିତ 'ଅସଦଂଚ' ପ୍ରଭୃତି ଲେଖା ଗୁଡ଼ିକରେ ସେ ନିଜର ମନୋଭାବକୁ ବେଶ୍ ପ୍ରକଟିତ କରି ପାରିଛନ୍ତି । ସେ କ'ଣ ମରି ଯିବେ ବୋଲି ଆଗରୁ ଜାଣିଥିଲେ ? ତାଙ୍କର ସ୍ୱର୍ଗାରୋହଣ ପରେ 'ଧରିତ୍ରୀ'ରେ ପ୍ରକାଶିତ 'ସୁରକ୍ଷା' କବିତାରେ ସେ କହିଛନ୍ତି—

"ମୋର ଭୟ କାହାକୁ ?
ଯଦିବା ବୋମ୍ବେଇ ଲଙ୍କା
ମୋ ନିଶ୍ୱାସ ପାଇପ୍ ଉପରକୁ ମାଡ଼ିଆସେ,
ମୋ ନାକ ଉପରେ ନଇଁ ପଡ଼େ କାହାର ମୁଷ୍ଟିବଦ୍ଧ ହାତ
ଏବଂ
ମର୍କଟି ପିଠିରେ ଚଢ଼ି
କିଏ ଆସି ମୋ ଦୁଆରେ ଧକ୍କା ମାରେ ।
ତଥାପି ମୋର ଭୟ କାହାକୁ
ମୁଁ ସମ୍ପୂର୍ଣ୍ଣଭାବେ ସୁରକ୍ଷିତ ... .. ... ।"

" ମୁଁ ସମ୍ପୂର୍ଣ୍ଣଭାବେ ସୁରକ୍ଷିତ " ନିଶ୍ଚୁର ସତ କଥାଟିଏ କହି ପକାଇଥିଲ ବନ୍ଧୁ ! ତୁମେ ଓଡ଼ିଆ ସାହିତ୍ୟ ଗନ୍ଥାଗାରରେ ନିଶ୍ଚିତଭାବେ ସୁରକ୍ଷିତ ରହିବ । ତମକୁ ଏ କାଳର କରାଳ ଲହରୀ ଛୁଇଁ ପାରିବନି, ପାରିବନି କ୍ଷୟ କରି ।



# ମଳିନ ସମୟ, ଅମଳିନ ସ୍ମୃତି

• ଅଚ୍ୟୁତାନନ୍ଦ ସାମଲ

ପାଶ୍ଚାତ୍ୟର ବନ୍ଧୁମାନଙ୍କ ସହ ଭେଟ ହେଲେ ଶେକ୍, ହାଣ୍ଡ ଜଣେଇଯାଏ। ପୁଣି ଯଦି ବନ୍ଧୁ ଜଣକ ଘନିଷ୍ଠ ହୋଇଥାନ୍ତି ତେବେ ଘଣ୍ଟା ଘଣ୍ଟା ଧରି ଗପର ଖିଅ ଯୋଡ଼ି ହୋଇଯାଏ, ଆଉ ଛିଣ୍ଡେ ନାହିଁ। ଅନୁଭବୀ ମାନେ ଏକଥା ଭଲ ଭାବେ ମାଲୁମ କରିଥିବେ। ପାଶ୍ଚାତ୍ୟ ରସ ବୁଝି ନଥିବା ଲୋକଙ୍କ କଥା ନିଆରା।

କଥାକାର କନ୍ହେଇଲାଲଙ୍କ ପ୍ରସଙ୍ଗରେ ଏକଥା ଏକାବେଳକେ ବାସ୍ତବ ବୋଲି କୁହାଯାଇ ପାରେ। କନ୍ହେଇଲାଲ ଗଳ୍ପ ଜଗତକୁ ନୂଆ କରି ପ୍ରବେଶ କରିବା ପରେ ଯେପରି ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ଲେଖକଙ୍କୁ ମୁଗ୍ଧ କରାଇ ସାରିଥିଲେ, ତାହା ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥିଲା।

ତିନି ବର୍ଷ ତଳର କଥା। ସେତେବେଳକୁ କନ୍ହେଇଲାଲ ଗଳ୍ପ-ଜଗତରେ ବେଶ୍ ସୁନାମ ଅର୍ଜନ କଲେଣି। ପତ୍ରିକା ଖଣ୍ଡିଏ ଖୋଲି ପକାଇଲେ କନ୍ହେଇଲାଲଙ୍କ ଲେଖା ନିଶ୍ଚୟ ଥିବ। କୌଣସି ପତ୍ରିକା ପୃଷ୍ଠାରୁ ତାଙ୍କ ଫଟୋଟି ମଧ୍ୟ ଦେଖିବାକୁ ପାଇଥିଲି। କିନ୍ତୁ ଭେଟ ହେଲା ତାଙ୍କ ସହ ଢେଙ୍କାନାଳରେ।

ଜୁନ୍ ମାସ ଏଗାର ତାରିଖ, ୧୯୭୨ ମସିହା। ଓଡ଼ିଆ ଯୁବ-ଲେଖକ ସମ୍ମେଳନର କାର୍ଯ୍ୟକାରୀ କମିଟି ଢେଙ୍କାନାଳରେ ବୈଠକ ବସିବାର ଥାଏ। ସେଠାକାର ଆର. ଡି. ଓ. ସାହିତ୍ୟିକ ଶ୍ରୀ ପ୍ରଶାନ୍ତ ପଟ୍ଟନାୟକ ମୁଖ୍ୟ ଦାୟିତ୍ୱରେ ଥାଆନ୍ତି। ସେ ବର୍ଷର ସଭାପତି ଶ୍ରୀ ଗୁରୁ ମହାନ୍ତି, ସମ୍ପାଦକ ଶ୍ରୀ ପ୍ରସନ୍ନ ପାଟଶାଣୀ ଓ ଯୁଗ୍ମ-ସମ୍ପାଦକ କନ୍ହେଇଲାଲ ଦାସ। କାର୍ଯ୍ୟକାରୀ କମିଟି ସଭ୍ୟ ଭାବରେ ବୈଠକରେ ଯୋଗ ଦେବାକୁ ସେଠାକୁ ଯାଇଥିଲି। ରେଷ୍ଟ ହାଉସ୍‌ରେ ପହଞ୍ଚି ବିଶ୍ରାମ ନେବା ସମୟରେ କନ୍ହେଇଲାଲ ପହଞ୍ଚିଲେ। ବେଶ୍ ଛୁଟିଆ ଭଳି ଦେଖେଇ। କଅଁଳ ଛନଛନିଆ ଚେହେରା। ପ୍ରଥମେ ମୁଁ ବିଶ୍ୱାସ କରି ପାରିଲି ନାହିଁ ଯେ ବିଭିନ୍ନ ପ୍ରତିଷ୍ଠିତ ପତ୍ରିକାର ସାର୍ଥକ ଗାଳ୍ପିକ କନ୍ହେଇଲାଲ ଦାସ ଏଇ ଅଳ୍ପ ବୟସ୍କ ଯୁବକ

ଜଣକ । ପରେ କଥାବାର୍ତ୍ତା ହେବାରୁ ମୋର ସନ୍ଦେହ ଦୂର ହେଲା । ସେ କେମିତି ବିଭିନ୍ନ ପତ୍ର-ପତ୍ରିକା ଭିତରକୁ ପ୍ରବେଶ କଲେ, ବଖାଣି କହିଲେ । ସେତେବେଳେ ମୋ ମନରେ ଉଦିତ ରହସ୍ୟରେ ଯେଉଁ ଜଣା ଅଜଣା ସ୍ପନ୍ଦନର ଉଦ୍‌ବେଳନ ସୃଷ୍ଟି ହେଲା, ତାହା କଥାରେ ପ୍ରକାଶ କରି ହେବ ନାହିଁ ।

ତା'ପରଦିନ ଘଟଣା । କାର୍ଯ୍ୟକାରୀ କମିଟିର ବୈଠକ ଶେଷ ହେବାରୁ ସମସ୍ତେ ଚାଲି ଆସିଲେ । ଉତ୍ସଗଲ୍ କନ୍‌ହେଇଲାଲ, ପାଟଶାଣୀ ଓ ମୁଁ । ଢେଙ୍କାନାଳର ଆର. ଟି. ଓ. ଶ୍ରୀ ପ୍ରଶାନ୍ତ ପଟ୍ଟନାୟକଙ୍କ ବସାକୁ ଗଲୁଁ । ସେଠାରେ ଥାଆନ୍ତି ସାହିତ୍ୟିକ ଆଡ୍‌ଭୋକେଟ କୈଳାସ ଲେଙ୍କା । ପହଞ୍ଚିବାମାତ୍ରେ ସେ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରି ଆମକୁ ବିଭିନ୍ନ ସାହିତ୍ୟରସ କିଛି କିଛି ପିଆଇଲେ । ତା'ପରେ ଏକ ଚମତ୍କାର ଭୋଜନ ସମାପ୍ତ କରି ସମସ୍ତେ ବାହାରି ପଡ଼ିଲୁଁ କପିଳାସ ଧାମକୁ । ପ୍ରଶାନ୍ତବାବୁଙ୍କର ଜନୈକ ବନ୍ଧୁ ଜିପ୍ ଯାନ ଦେଇ ସାହାଯ୍ୟ କଲେ । ସେ ବାବୁ ଜଣକ ବାଲେଶ୍ୱରର ଇଞ୍ଜିନିୟର ଲୋକ । ତାଙ୍କ ସହ ପ୍ରଶାନ୍ତବାବୁ ଆମ୍ଭମାନଙ୍କର ପରିଚୟ କରାଇ ଦେଲେ । ପ୍ରାୟ ଦିନ ଦୁଇଟା ବେଳକୁ ଆମର ଯାତ୍ରା ଆରମ୍ଭ ହେଲା । ଗାଡ଼ିରେ ଥାଆନ୍ତି ପ୍ରଶାନ୍ତବାବୁ, ତାଙ୍କର ବନ୍ଧୁ, ଆଡ୍‌ଭୋକେଟ କୈଳାସ ଲେଙ୍କା ପ୍ରସନ୍ନ ପାଟଶାଣୀ ଓ କନ୍ହେଇଲାଲ ଦାମ । ଜିପ୍‌ଟି ତୀବ୍ର ବେଗରେ ଛୁଟି ଚାଲିଲା କପିଳାସ ପର୍ବତ ଆଡ଼କୁ । କିଛି ଦୂରରୁ ପ୍ରସ୍ତାବ ହେଲା, ସମସ୍ତେ ଚାଲି ଚାଲି ପର୍ବତ ଉପରକୁ ଯିବା । ପରେ ଗାଡ଼ି ଆମକୁ ଠିକଣାରୁ ନେଇ ଆସିବ । ସେଇଆ ହେଲା । ସମସ୍ତେ ଚାଲିଲୁଁ । ବାଟରେ ନାନା ରଙ୍ଗ ରହସ୍ୟ ଭିତରେ ସମ୍ବେତାଗେହଣର କଷ୍ଟ ଜଣା ପଡ଼ୁ ନଥାଏ । ଗଗନ ଛୁଇଁ ଛୁଇଁବା ଆଗରୁ ଯଥାସ୍ଥାନରେ ପହଞ୍ଚିଲୁଁ । ସେଠାରେ ଏକ ସରକାରୀ ଡାକ-ବଙ୍ଗଳା ଥାଏ । ସେଠାରେ ଆମର ଜିନିଷପତ୍ର ରଖି ପର୍ବତ ଉପରକୁ ଆଉ କିଛି ବାଟ ଉଠିଲୁଁ । ପୁଣି ସେଠାରୁ ଫେରି ପର୍ବତରୁ ନିର୍ଗତ ହେଉଥିବା ଝରଣା ଓ ତତ୍‌ସଂଲଗ୍ନ ଜଳ କୁଣ୍ଡରେ ସ୍ନାନ ସାରି ଦର୍ଶନ କଲୁଁ । ତା'ପରେ ଏକାଠି ବସି ଆସର ଟିଏ ଜମେଇଲୁଁ । ଆଡ୍‌ଭୋକେଟ ଶ୍ରୀ ଲେଙ୍କା ପ୍ରଶ୍ନ କରୁ ଥାଆନ୍ତି । ଉତ୍ତର ଦେଉଥାନ୍ତି କନ୍ହେଇଲାଲ । ଆମେ ସମସ୍ତେ ଶ୍ରୋତା । କନ୍ହେଇଲାଲ ଗପି ଚାଲିଥାଆନ୍ତି ତାଙ୍କ ସାହିତ୍ୟ ସାଧନା ଓ ଜୀବନର ନାନା ଅନୁଭୂତି ସମ୍ପର୍କରେ । ତାଙ୍କ ରଚନାର ମୂଳ୍ୟ ଉନ୍ମେଷ ପ୍ରେମାନୁଭୂତିଗୁଡ଼ିକ ମଧ୍ୟ ସରସ ଭାବରେ ବଖାଣି ଚାଲି ଥାଆନ୍ତି । ଅଦୂରରେ ଚିରସ୍ରୋତା ଝରଣାଟିଏ କଳ କଳ ନାଦରେ ଧାଇଁ ଚାଲିଥାଏ । କନ୍‌ହେଇଲାଲ ଅନର୍ଗଳ ଗପୁ ଥାଆନ୍ତି । ସତେ ଯେପରି ତାଙ୍କର ଅନୁଭୂତିର ନାନା ରହସ୍ୟ ସେହି ଛଳ ଛଳ ଝରଣାର ସଙ୍ଗୀତ ଭଳି ହୃଦୟପୁର

ସମସ୍ତ ଆବରଣକୁ ପିଠି'ଇ ଫିଙ୍ଗାଇ ବାହାରି ଆସୁଛି । ବନକ ଆଗରୁ କନ୍ହେଇଲାଲଙ୍କ ଉପରଟା ଦେଖିଥିଲି । ସେଦିନ ଦେଖିଲି ଭିତରଟାର କିଛି ଅଂଶ । ବାସ୍ତବିକ ତାଙ୍କର ଭିତରଟା କେତେ ସଫା, କେତେ ପରିଷ୍କାର । ତାପରେ ତାଙ୍କ ସହ କେତେ ଥର ଭେଟ ହୋଇଛି । ସେଇଭଳି ମିଠା କଥା, ସରଳ ତରଳ ଭାଷା, ନିଜ ପାଖକୁ ଟାଣି ନେବାର ହସ ଭିତରେ ହଜି ଯିବାକୁ ପଡ଼ିଛି ।

କନ୍ହେଇ ଆଜ ନାହାନ୍ତି । ସ୍ୱର୍ଗରେ ସାହିତ୍ୟ ଆସରରେ ଆଡ଼୍‌ଡ଼ା ଜମାଇବା ପାଇଁ ଏଇ ଭେଣ୍ଡା ଟୋକାଟା ନିହାତି ଆବଶ୍ୟକ ହେଲା ବୋଧହୁଏ । ମଣିଷର କି କୁ' ? ତେବେ ସାହିତ୍ୟିକ ତ ମଲା ପରେ ବଞ୍ଚେ । ତେଣୁ କନ୍ହେଇଲାଲଙ୍କ ମର ଦେହଟା ଯିନା ଅନ୍ତର୍ଦ୍ଧାନ ହୋଇଗଲା, ସୃଷ୍ଟି ଭିତରେ ସେ ଅମର ହୋଇ ରହିଗଲେ । ...ଉଗଲେ ବି ସେ ଜଳବେ । ଗୋପବନ୍ଧୁ କ'ଣ ମୋପତ୍ର ଲେଖିଥିଲେ :—

"ଜିଭ୍ନ ନେସ ଷଣକେ ତଥାପି ଏ ଲୋକେ ରହେ ତା' ଆଦର ଘଣ ।"

ସାହିତ୍ୟିକ ହୋଇ ବଞ୍ଚି ରହିବାର ଯେଉଁ ଯନ୍ତ୍ରଣା ··· ··· । କାହିଁକି ସେ କୁହୁଳି କୁହୁଳି ଜାଳିଥାଆନ୍ତେ ?

× × ×

ସମୟର ସୁଅ ଛୁଟି ଚାଲିଛି । କେତେ ରଙ୍ଗ ବେରଙ୍ଗର କାଣ୍ଡ କାରଖାନା ଦିନଗତ ଘଟିବାରେ ଲାଗିଛି । ଥାକ ଥାକ ଘଟଣା, ପରସ୍ତ ପରସ୍ତ ଅନୁଭୂତ ସମୟର ମଳିନ ଦେହରେ ଲୁଚି ହୋଇ ଯାଉଛି । କିନ୍ତୁ ଯାହା ସବୁବେଳ ପାଇଁ ଉଜ୍ଜ୍ୱଳ ହୋଇ ରହିଯାଇଛି, ତାହା ହେଉଛି ସ୍ମୃତି ।

କନ୍‌ହେଇଲାଲଙ୍କ ସହ ପ୍ରଥମ ସାକ୍ଷାତର ସ୍ମୃତି ଏବେ ବି ମୋ ହୃଦୟରେ ଅମଳିନ ।



# ଚକାଚଡଧନାର

• କୁଞ୍ଜବିହାରୀ ଧଳ

କୁଆଡ଼େ ଚାଲିଗଲ ହେ କହ୍ନେଇ ଆମକୁ ନଶୁଣ କରି । ଚୁପ୍ କରି କେମିତି ତମେ ଚାଲିପାଇ ପାରିଲ, କହ ମୋତେ, ଜବାବ ଦିଅ !! ମୁଁ ଯେପରି ତମ ମୃତ୍ୟୁ ସମ୍ବାଦରେ ମ୍ରିୟମାଣ ହୋଇ ଲେଟି ପଡ଼ିଲି, ସେଇପରି ତମେ ଏଠୁଁ ଚାଲିଯିବା ପୂର୍ବରୁ କାହିଁ କାହା ନଚେତ୍ ହସି ହସି ତମ ଗଳ୍ପର ସ୍ୱାଦ ପରି ମୃତ୍ୟୁ ଗୋଟାଏ ବଢ଼ିଆ ସୁଆଦିଆ ଜିନିଷ ବୋଲି ସମର୍ଥନ ଦେଇ ଚିଠି ଗୋଟାଏ ଲେଖି ଦେଇ ପାରିଥା'ନ୍ତ ? ନ ଲେଖିଲ କାହିଁକି ? ମୁଁ ତ ଆଜ କାନ୍ଦ ନଥା'ନ୍ତି, ଏମିତି ବିଚଳିତ ହୋଇ ନଥା'ନ୍ତି ।

ସେଦିନ ପ୍ରାୟ ଦିନ ଦଶଟା ହେବ, କଳାହାଣ୍ଡିର ଆମ ବସାରେ ବସି ତମର ମାର୍ଚ୍ଚ ମାସରେ 'ନବରଙ୍ଗ'ରେ ପ୍ରକାଶ ପାଇଥିବା ଗପ କଥା ଚିନ୍ତା କରୁଥିଲି – ଚିନ୍ତା କରୁଥିଲି ଯେ ତମେ କେତେ କମ୍ ଦିନ ଭିତରେ ଆଗେଇ ଗଲ । ସେଇ ସମୟରେ ଖବର କାଗଜ ଆସି ପହଞ୍ଚିଲା । କାହିଁକି କେଜାଣି ପ୍ରଥମେ ପ୍ରଥମ ପୃଷ୍ଠା ନପଢ଼ି ଭିତର ପୃଷ୍ଠାରେ ଆଖି ପକାଏ ତ ତମର ମୃତ୍ୟୁ ସମ୍ବାଦ ଦେଖିଲି । ବିଶ୍ୱାସ କରିବା କଥାତ ନୁହେଁ । ତା'ପରେ ମୁଁ କାନ୍ଦୁଛି କି ନାହିଁ, ମୁଁ କ'ଣ କରୁଛି, ଦୁଇ ତିନି ଦିନ ପର୍ଯ୍ୟନ୍ତ କିଛି ଜାଣି ପାରିନି ନାହିଁ । କେଇଟା ଦିନ ପରେ ମୁଁ ଶ୍ରାନ୍ତରେ ଅବ୍ୟକ୍ତ ଯନ୍ତ୍ରଣା ଅନୁଭବ କଲି । ଭାବିଲି, ତମ ସହିତ ମୋର କିଛିପୂ ଭେଟାଭେଟି ହେବ ଏଥର । ରାତିରେ ତମକୁ ସ୍ୱପ୍ନ ଦେଖିବାକୁ ଲାଗିଲି । ସତରେ ହେ କହ୍ନେଇ, ତମେ ଯେମିତି ମୋତେ ଧାଁ ଆଡ଼ୋରି ଡାକିଲ । କାହାକୁ ଏକଥା ନ କହି ଛପେଇ ଛପେଇ ବୁଲିଲି, ମନ ମାନି ବସିଲି ସମୟକୁ ନମସ୍ତୁ ।

ତମର ମୋର ବନ୍ଧୁତା କେଇଟା ଦିନର ସତେ ! କାଲିପରି ମନେ ପଡ଼ୁଛି ବାରିପଦା ଯୁବ ଲେଖକ ସମ୍ମିଳନୀ କଥା । ସମ୍ମିଳନୀରେ ତମକୁ, କେ· ପଦ୍ମ ଦାଶ ଏବଂ ହୃଷୀକେଶ ରାୟ ଗାନ୍ଧୀକୁ ଖୁବ୍ ସୁନ୍ଦର ବନ୍ଧୁ ହିସାବରେ ପାଇଥିଲି । ଖୁବ୍ କମ୍ ଦିନ ଭିତରେ ରାୟ ଗାନ୍ଧୀ ମୋତେ ଭୁଲି ଗଲେ କି କ'ଣ ଜାଣେ ନା । ତା'ପରେ ପଦ୍ମ ଦାଶଙ୍କ ସହିତ ବନ୍ଧୁତ୍ୱ ବହୁ ଦିନବ୍ୟାପୀ ଅତୁଟ ରହିଥିଲା ଏବଂ ଚିଠି ପତ୍ର ଦିଆନିଆ ଭିତରେ କୌଣସି କାରଣରୁ ବାଧା ଶିଥିଳ ହୋଇ ଆସିଲା । ଶେଷକୁ ଚିଠି ପତ୍ର ବନ୍ଦ ହୋଇଗଲା । ଆଜି ରହିଲା ତମ ମୃତ୍ୟୁ ପର୍ଯ୍ୟନ୍ତ ଅମର ବନ୍ଧୁତ୍ୱ

ଅଦ୍ଭୁତ ଉକ୍ତିଲ । ଆମର ବନ୍ଧୁତ୍ୱ ସୃଷ୍ଟିର ମୂଳ କାରଣ ଲେଖାଲେଖି ବୋଧହୁଏ, ନା ଅନ୍ୟ କିଛି ? କ'ଣ କେଜାଣି ତମେ ଥିଲେ ଏକ କଥାଟି ପଚାରୁ ଥା'ନ୍ତ । ତମର କୌଣସି ଗୋଟିଏ ଗଳ୍ପ ପଢ଼ି ଚିଠି ଲେଖିଥିଲି । ତା'ପରେ ତମେ ମୋ କବିତା ସମ୍ବନ୍ଧରେ ଚିଠି ଦେଲ ଏବଂ ଏହା ଅବାଧରେ ଧାରାବାହିକ ଚାଲିଲା । କିନ୍ତୁ ହଠାତ୍ ଦିନେ ଜଣେ ଅନ୍ତରଙ୍ଗ ଜୀବନବଆ ବନ୍ଧୁଙ୍କ ଚିଠି ପରି ଚିଠି ଟିଏ ପାଇଲି । ତା'ର ମୂଳ କାରଣ ଥିଲା—ତମର 'କର୍ପୂର' ଗଳ୍ପ । 'କର୍ପୂର' ଗଳ୍ପ ପଢ଼ି ସାରିବା ପରେ ମୋ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହାକୁ ଆଲୋଚନା କରି ଲେଖିଥିଲି ମାତ୍ର ଗୋଟିଏ ଖଣ୍ଡେ ଚିଠିରେ । ତା' ପରେ ପରେ ତମେ ତମର ପ୍ରତ୍ୟେକଟି ଗଳ୍ପର ମାନନିର୍ଦ୍ଧାରଣ ପାଇଁ ମୋ ପାଖକୁ ଚିଠି ଲେଖ । କେତେବେଳେ ହୁଏତ ମୁଁ ଦେଇ ପାରେ ନାହିଁ, ବା କେତେବେଳେ ତମ ଚିଠି ପୂର୍ବରୁ ମୁଁ ମତାମତ ଜଣାଇ ଦେଇ ସାରିଥାଏ । ତମ ଚିଠିରେ ଖାଲି ଗଳ୍ପ କଥା ତ ନଥାଏ, ସୁଖ, ଦୁଃଖ, ଭୃକଭ, "କହିଛ ପାଇବା ପାଇଁ ଉତ୍ୟକ୍ତ ହୋଇ ପଡ଼ିଛି"—ଏଇପରି କେତେ ଆଜୁଡ଼ା ବାଜୁଡ଼ା କଥାମାନ ଥାଏ । ଚିଠି ପତ୍ରର ଏଇ ପ୍ରବହମାନତା ଭିତରେ ହଠାତ୍ କାହିଁକି ମୁଁ ଟିକିଏ ଏମିତି ସେମିତି ହୋଇଗଲି, ବୋହଲାଗଲି । ତା'ର କାରଣ ଥିଲା—ମୋର ଜୀବନରେ ଚରମ ବିଫଳତା, କଲୁଡ଼ପଡ଼ ହାତ ଓ ଗୋଡ଼ ନଷ୍ଟ ହୋଇ ଯିବାର ବ୍ୟଥା ।

ହଠାତ୍ ଚିଠିର ଆଦାନ ପ୍ରଦାନ ବନ୍ଦ । ଦିନେ ହଠାତ୍ ଯାଇ ପହଞ୍ଚିଥିଲି ତମ ଅଫିସରେ । ତମେ ତ ଆଶ୍ଚର୍ଯ୍ୟ ହେବା କଥା । ଆଜ ଆଶ୍ଚର୍ଯ୍ୟ ହୋଇ ଆଖିକୁ ବଡ଼ ବଡ଼ କରି ମୋତେ ସେଇପରି ଜବାକ ଭାବରେ ଚାହିଁ ରହିଥିଲ ଓ ଟିକିଏ ପରେ ଅଭିବାଦନ ଜଣେଇ ବସିବା ଦେଇଥିଲ । ସେ ମୁହୂର୍ତ୍ତଟିକୁ ମୁଁ ମରିବା ପର୍ଯ୍ୟନ୍ତ ଭୁଲି ପାରିବି ନାହିଁ କାହିଁକି ! କିଛି ସମୟ କଥାବାର୍ତ୍ତା ହେବା ପରେ ଅଫିସ ଛୁଟି ହେଇ ଆମେ ସାଇକେଲ ନେଇ ଚଲାଇ ଆସିଥିଲେ । ତା' ପରେ ବୁଲିବା ପର୍ବ ଆରମ୍ଭ ହୋଇ ଯାଇଥିଲା । ଯାଇଥିଲେ ସୌଭାଗ୍ୟ ବାବୁ ଏବଂ ଶତ୍ରୁଘ୍ନ ପଟ୍ଟନାୟକଙ୍କ ନିକଟକୁ । କିନ୍ତୁ ଦୁର୍ଭାଗ୍ୟବଶତଃ ସେମାନେ କେହି ଜଣେ ହେଲେ ନଥିଲେ । ପୁଣି ଫେରିଲେ ରଥ ପଟ୍ଟନାୟକଙ୍କ ନିକଟକୁ । ସେଠାରେ ଯେଉଁ ମଜାକଥାଟି ଘଟିଲା ! ତମେ ଭୁବନେଶ୍ୱରରେ ରହି ଯେଉଁ ମଜା କରୁଚ ଏବଂ ତମ ପରିବାର କେଉଁଭଳି ଦୁଃଖରେ ଚଳୁଛନ୍ତି ଏ ସମ୍ପର୍କରେ ମୋତେ ସାଇକେଲରେ ବସାଇ ଗପ କରିଥିଲ ।

ବସ୍ ଷ୍ଟାଣ୍ଡରେ ମୋତେ ବିଦାୟ ଦେଇଥିଲ । ମୋତେ ଛାଡ଼ିବାକୁ ମନ ନଥାଏ । ବସ୍ ଯେତେବେଳେ ଷ୍ଟାର୍ଟ ହେଲା, ସେତେବେଳେ ହାତରେ ହାତଗୁଞ୍ଜି

ମୁଁ କହୁଥିଲି, କେବେ ଦେଖା ହେବ ? ତମେ ତର୍କକରି କହୁଥିଲ : ପୃଥିବୀ ଗୋଲ ଯେଉଁଠି ହେଲେ ଦେଖା ହେବ । ଗୋଟିଏ ସ୍ଥାନରୁ ବାହାରି ବୁଲି ଆସିଲେ ପୁଣି ସେଇ ସ୍ଥାନରେ ପହଞ୍ଚିବା । ମୁଁ ନୀରବ ହୋଇ ଯାଇଥିଲି । ବସ୍ ଛାଡ଼ ଦେଲା । ତା'ପରେ ତମ ସହିତ ଆଉ ଦେଖା ହୋଇ ନାହିଁ । ଆମର ତ ଏଇପରି କ୍ୱଚିତ ହୁଏ ।

ବାପ୍ ଆମ ପହଞ୍ଚିବାର ତ ବହୁତ ଦିନ ହେଇଗଲାଣି ସ୍ମୃ ଭିତରେ । କାହିଁ ତମ ସହିତ ତ ଦେଖା ହେଉ ନାହିଁ । ଏହା ଭିତରେ ମୁଁ ଯୋଉଠୁ ବାହାରିଛି, ପୁଣି ସେଇ ସ୍ଥାନକୁ ଫେରି ମଧ୍ୟ ତମକୁ ତ କାହିଁ ଦେଖିପାରୁ ନାହିଁ ହେ କନ୍‌ହେଇବାବୁ ! ତମେ ଅଳପ ଦିନ ଭିତରେ ନିଶ୍ଚୟ ଆମକୁ ଛାଡ଼ ଚାଲିଯିବ—ଏକଥା କ'ଣ ସତରେ ଜାଣି ପାରିଥିଲ ? ନହେଲେ ଏମିତି କଥାଗୁଡ଼ାକ ଲେଖୁଥାନ୍ତ କାହିଁକି, କହୁଥାନ୍ତ କାହିଁକି ?

ଏକଦା ଅପୂର୍ବବାବୁଙ୍କ ଦୋକାନରେ ନିତ୍ୟାନନ୍ଦବାବୁଙ୍କ ( ଭଂଜନଗର ) ସହିତ ସାହିତ୍ୟ ବିଷୟରେ ଗପ ଚାଲିଥାଏ । ତମ ଲେଖା (ନୂତନ କବିତା) ସମ୍ପର୍କରେ ଗପ ପଡ଼ିବାରୁ ମୁଁ କହିଲି ; କନହେଇବାବୁ କାହିଁକି ମୃତ୍ୟୁ ସମ୍ପର୍କରେ ଏତେ ଲେଖୁଛ, ଯେମିତି ସେ ଲୋକଟା ମରି ପୁଣି ଫେରି ଆସିଛି । ନିତ୍ୟାନନ୍ଦବାବୁ ହସିଥିଲେ, ମୁଁ ହସିଥିଲି ଏବଂ ସେଇ ହସ ଭିତରେ ନିତ୍ୟାନନ୍ଦବାବୁ ଉତ୍ତର ଦେଇ ଥିଲେ ଯେ ତମେ ସେତେବେଳେ ପାନ୍ଥାଗଡ଼ରେ ରହି ବହୁତ ମୃତ୍ୟୁ ଦୃଶ୍ୟ ଦେଖି ଥିବାରୁ ଏମିତି ଲେଖୁଛ । କିନ୍ତୁ ହାୟ ! ତମ ଅନ୍ତରର କଥାଟିକୁ ଆମେ କେହି ଉଦ୍‌ଘାଟନ କରି ପାରି ନଥିଲୁଁ ।

ତମକୁ ସତରେ ଏଠି କ'ଣ ଖରାପ ଲାଗିଲା ? ପରିବାରର ଆର୍ଥିକ ଅସ୍ୱଚ୍ଛଳତା ତମକୁ କ'ଣ ବିବ୍ରତ କରି ପକାଇଲା ? ତମର ଦେବୀ, ପ୍ରତିମା, ଛୁଆଭାଇ, ଅତି ଭଲପାଉଥିବା, ବେସରଲଗା, ମସିଆ ମା'ର ହାତ ଓ ସ୍ନେହକୁ ଏଡ଼େଇ କିପରି ଯାଇ ପାରିଲ କହ, ଜବାବ ଦିଅ, ସଫେଇ ଦିଅ ହେ କନ୍‌ହେଇ ! ଅନେକ ବନ୍ଧୁଙ୍କୁ ତମରି ପରିବାର ସମ୍ପର୍କରେ କେତେ ପରିମାଣରେ କହିଛ ଜାଣେ ନାହିଁ, କିନ୍ତୁ ମୋତେ ଚିଠିରେ ଲେଖି ଲେଖି ଯେପରି ଆଉଁସି ଅସନ୍ତୁଷ୍ଟ ଥିଲ କି କ'ଣ ସେତେବେଳେ ଦେଖା ଦେଇଛ ସେଇ କଥାହିଁ ଗପ କରିଛ, ପରିବାରର ଆର୍ଥିକ ସ୍ୱଚ୍ଛଳତା ଆସିଲେ ଭାବା ହେବ ବୋଲି ଅନେକଥର କହିଛ । ଏତେ ଦୁଃଖ ଭିତରେ ତମେ ହସ ଓ ହସାଅ । ତମେ ହସାଅ ବୋଧହୁଏ ତମ ଭିତରେ ପୁଞ୍ଜିଭୂତ ଦୁଃଖଗଣି ଜମାଟ ବାନ୍ଧିଥିଲା

ବୋଲି । ସେଇଥିପାଇଁ ତମର ପ୍ରତ୍ୟେକଟି ଲେଖାରେ ଶବ୍ଦ ଅପେକ୍ଷା ଚିତ୍ରର ପ୍ରାଧାନ୍ୟ ବୋଧହୁଏ ବେଶୀ ।

ତମେ ଆଜି କ'ଣ ଫେରିବ ନାହିଁ ? ଥରେ ଯେବେ ଫେରି ଆସି ମୋତେ ତଥା ଦେଖା ନକରି ଯାଇଥିବା ଅନ୍ୟଅନ୍ତରଙ୍ଗ ବନ୍ଧୁମାନଙ୍କୁ ଦେଖାକରି ଯାଅ ହେଲେ । ମନା କରି ଦେଇ ଯାଅ ପୃଥିବୀ ଗୋଲ ନୁହେଁ ··· ଆମେ ଯୋଉଠୁ ବାହାରିବା ସେଠାରେ ଦେଖା ହେବ ନାହିଁ ; ଖାଲି ଦେଖା ହେବ ସ୍ମୃତିରେ ··· ହୃଦୟରେ ! ଯଦି ଫେରିବା ତା' ହେଲେ ଅନ୍ୟ ରୂପ ନେଇ, ଅନ୍ୟ ଧାରଣା ନେଇ ଫେରିବା— ତା' ମୂଲ୍ୟହୀନ । କେ'ଜାଣି ଦିନରୁ ତମର ମାଟିର ଦେହଟି ପାଉଁଶ ହୋଇ ବର୍ଷାରେ ମାଟି ସଙ୍ଗେ ମିଶିଯିବଣି ଖୁବ୍ ଘନିଷ୍ଠ ଭାବରେ । ଆଉ ଥରେ ଉଠେଇ ଆସ ହେ କନ୍ଦେଇ ତମର ଭଲ ପାଇବାର ମାଟିର ସ୍ୱର୍ଗକୁ । ଦେଖିଯାଅ ଶୋକ ବିହ୍ୱଳିତ ମାଟି, ପାଣି, ପବନ ଓ ତମକୁ ଭଲ ପାଉଥିବା ଲୋକଙ୍କୁ । ଆଉ ଥରେ ·· ପୁଣି ଆମେ ଏଥର ସାଂଗ ହୋଇ ଯାଆନ୍ତେ ··· ଗପ ହୁଅନ୍ତେ, ସମସ୍ତଙ୍କୁ ଜଗେଇ ଦେଇ ମୃତ୍ୟୁକୁ ଅମୃତମୟ, ଆନନ୍ଦମୟ କରି ଦିଅନ୍ତେ ।

ନମସ୍କାର ନେବ ହେ ! ଶେଷ ନମସ୍କାର !



# କାନ୍ହେଇଲାଲ ଦାସ

• ସନାତନ ସେଠୀ

ଉପକ୍ରମ :

ଆଲୋକର ଶଯ୍ୟା ପରେ ଅର୍ଥାତ୍ ପ୍ରାତଃସୂର୍ଯ୍ୟର ତେଜ ଉପରେ ହସୁଥିବା କୁଂକୁମ ସୁନ୍ଦରୀର ପ୍ରେମ ଲାଭ 'ମୋ' ପକ୍ଷରେ ସମ୍ଭବ ହୋଇ ପାରିନାହିଁ, କିଂତୁ ଯିଏ ପାଇ ପାରିଥିଲା ସେ ଆଜ ଆଉ ନାହିଁ । ଲୋକେ କହନ୍ତି— କଳ୍ପନା ଅପେକ୍ଷା କାମନା ଶ୍ରେଷ୍ଠତର—ଶ୍ରେଷ୍ଠତମ ପ୍ରାପ୍ତି । ହୁଏ ତ ସେଇଆ ହେଲା । କାନ୍ହେଇ କଳ୍ପନା କରିଥିଲା, କାମନା କରି ନଥିଲା ବୋଧେ ! କୁନିଅପା, ପ୍ରଭାତ, ଗାବ୍ଦୁଲ୍ଲା, ରମା, ଅସୀମା, କୁଂଜବାବୁ, କାନ୍ହେଇର ଏମାନଙ୍କ ସହିତ ଆନ୍ତରିକତା—ନିବିଡ ଘନିଷ୍ଠତା ଥିଲା ବୋଲି କହିଲେ ଭୁଲ ହେବ ନାହିଁ । କିଂତୁ ପ୍ରବୋଧ ଭୂୟାଁ ଏବଂ ମୁଁ କାନ୍ହେଇର ଯେତେ ନିକଟକୁ ଆସି ପାରିଥିଲୁଁ ଏମାନେ ସେତିକ ପାରି ନାହାନ୍ତି । ସାହିତ୍ୟ ଏବଂ ପ୍ରେମ ଜଗତର କାନ୍ହେଇ ବାସ୍ତବ ଜୀବନ ଜଗତର କାନ୍ହେଇ ଅପେକ୍ଷା ଅନେକାଂଶ ସଫଳ ମନେ ହୁଏ । ଦେଖିଥିବାଙ୍କ ସେମାନଙ୍କ ଦୃଷ୍ଟିକୋଣରୁ କାନ୍ହେଇଲାଲ ମୋ' ଦୃଷ୍ଟିକୋଣର କାନ୍ହେଇଲାଲ ଅପେକ୍ଷା ଅନ୍ୟ ଏକ ନୂତନ ସୃଷ୍ଟି ହେବ ଏଥିରେ ସନ୍ଦେହ ନାହିଁ ।

ଆରମ୍ଭ :

ସେଦିନ । ଆଜପରି ହି ଜୀବନ୍ତ ବର୍ତ୍ତମାନ । କାନ୍ହେଇ—ମୋର କଲେଜ ଜୀବନର ସହପାଠୀ ଏବଂ ରତନ ଦେ'ଙ୍କ ଘରେ ଜଣେ ପ୍ରାଇଭେଟ୍ ଟିଉଟର । ଗୋଟିଏ ପ୍ରକାର ନଲି ପ୍ୟାଣ୍ଟ, ବୁସ ସାର୍ଟ, ଏକରକମର ବାଟା ଚପଲ ଏବଂ ଆଖିରେ ସମାନ ଗଠନର ଗଗ୍ଲସ୍ । ସେ ବି ଟିଉଟର ମୁଁ ବି ଟିଉଟର । ସେ ରତନ ଦେଙ୍କ ଘରର ତିନି ମହଲା କୋଠାସ୍ଥିତ ଏକ ପ୍ରକୋଷ୍ଠର କୋଣରେ କାଠପଟା ଉପରେ ଆସର ଜମେଇ ଥାଏ । ମୁଁ ଥାଏ ବାଲେଶ୍ୱରର ପୁରାତନ ଜୁଂଶ କାରଖାନା ବର୍ତ୍ତମାନର 'ବିଦ୍ୟା ମନ୍ଦିର ମେସ୍'ର ଦ୍ୱିଖଣ୍ଡ ମହଲାସ୍ଥିତ ଏକ ପ୍ରକୋଷ୍ଠର କୋଣରେ ଗୋଟିଏ ଖଟ ଉପରେ । ବୟସ ଆମର ସମାନ,—ଦେହ ରଂଗ ବି । ଉଚ୍ଚତାରେ

କନ୍ହେଇ ମୋ'ଠାରୁ ଦେଢ଼ ଇଂଚରୁ ଦୁଇ ଇଂଚ ପର୍ଯ୍ୟନ୍ତ ବେଶୀ ହୋଇପାରେ । ଆମେ ଦୁଇ ବନ୍ଧୁ ଯେତେବେଳେ ରାସ୍ତା ଉପରେ ଯାଉଥିଲୁଁ ଲୋକେ କହୁଥିଲେ ଦୁଇ ଭାଇ ଯାଉଛନ୍ତି ।

ଆଗରେ ଆମର ଥିଲା ଗୋଟିଏ ପ୍ରକାରର ଦର୍ଶନ । 'ଆମ ଚିନ୍ତା ରାଜ୍ୟରେ, ରାଜ୍ୟରେ ଗୋଟିଏ ମାତ୍ର ଅନ୍ଧକାର ପିଣ୍ଡ !' ସାଥିରେ ଆମର ଥିଲା ସବୁ ଦିନର ଅନ୍ତରଙ୍ଗ ଦାରିଦ୍ର୍ୟ । ମୁଣ୍ଡ ଉପରେ ଦରିଦ୍ର ପରିବାରର ବିରାଟ ଏକ ଆଲ୍‌ପସ୍ । ଦୁଃଖରେ ମୁଁ ହସୁଥିଲି — କନ୍ହେଇ ଶୋଇ ପଡ଼ୁଥିଲା । କେତେବେଳେ ସେ ତା'ର ଗଳ୍ପ ପଢ଼ୁଥିଲା — ମୁଁ ମୋର କବିତା ପାଠ କରୁଥିଲି । ଆମ ଜୀବନରେ ଅନେକ ଅବିସ୍ମରଣୀୟ ମଧୁର ଯନ୍ତ୍ରଣା ଅଦ୍ୟାବଧି ଅଲିଭା ରହିଗଲା । ମାଣିକଖମ୍ବ ଏବଂ ଗୋପାଳଗାଁ ମଧ୍ୟସ୍ଥିତ ମିର୍ଜାମୋଖଣ ଅଶ୍ୱତ୍‌ଥ ଗଛ ତଳେ ସେଇଁ ଚନ୍ଦନ ମଣ୍ଡପ — ତା' ଉପରେ ଦୁଇ ବନ୍ଧୁ ଅନେକ ରାତି ମ୍ୟୁନିସିପାଲିଟି ଟାଇମ ପାଣି ପିଇ ଆରାମରେ ଆଲାପ କରିଛୁ — ସତେ ଯେମିତି ପ୍ରତିମାସ ଛଅ ଆଠ ଥର ଉପବାସ ରହିବା ସ୍ୱାସ୍ଥ୍ୟ ପକ୍ଷେ ବଡ଼ ହିତକର । "ଯୋଡ଼ାଗୁହାଳ" ଶ୍ମଶାନରେ ଡାକ୍ତରଖାନାରୁ ବୁହା ହୋଇ ଆସିଥିବା ଶବ ଉପରେ ଚନ୍ଦ୍ରୋଦୟ ଯେମିତି ଆମକୁ ସୁନ୍ଦର ଦିଶୁଥିଲା — କାଳିଘାଟ ବନ୍ଧଙ୍କର ପିଠି ଉପରେ ନୌକା-ବିହାର ଠିକ୍ ସେମିତି ଆମକୁ ପ୍ରୀତିକର ମନେ ହେଉଥିଲା । କେତେବେଳେ ଆମେ ଡମ୍ବମୁଣ୍ଡା ସୁବର୍ଣ୍ଣରେଖାର ପେଟ ତଳେ ପହଁରୁଥିଲୁଁ — ପୁଣି କେତେବେଳେ ବୃନ୍ଦାବନର ଝାଉଁ ଅରଣ୍ୟ ଭିତରେ ଜ୍ୟୋତ୍ସ୍ନା-ଫୁଲ ତୋଳୁଥିଲୁଁ । ମୋ'ର ଠିକ୍ ମନେ ଅଛି ଆମେ ଦୁଇ ଜଣ ଭୁବନେଶ୍ୱର ପ୍ଲାଟଫର୍ମ ଉପରେ ଭଡ଼ି ପିଇ ସାଙ୍ଗରେ ନେଇଥିବା ଖବର କାଗଜ ଉପରେ ଦୁଇ ରାତି ଆରାମରେ ଶୋଇ ସାରିବା ପରେ, କେଦାରଗୌରୀ କୁଣ୍ଡରେ ସ୍ନାନାଦି ନିତ୍ୟକର୍ମ ଶେଷ କରି 'ଏକାମ୍ର କାନନ' ଆମ୍ବ ଗଛରେ ଚଢ଼ି କଞ୍ଚା ଆମ୍ବ ଚୋବାଇ ଖାଇଲୁଁ ଏବଂ ସେଇଦିନ ବିନା ଟିକେଟରେ ବାଲେଶ୍ୱର ଫେରି ଆସିଥିଲୁଁ । ଏମିତି, ସେ ସବୁ ଅନେକ କଥା — ଏଇ ଛୋଟ କଥିକାରେ ସେ ସବୁ କହିବା ସମ୍ଭବ ହେବ ନାହିଁ ।

× × ×

କଲେଜ ଜୀବନରେ ଆମେ ଯେତିକି ସମ୍ଭବ ସେତିକି ସୁସ୍ଥ ଜୀବନକୁ ଉପଭୋଗ କରିଛୁଁ । କନ୍ହେଇ ଗଳ୍ପ ଲେଖୁଥିଲା, ମୁଁ କବିତା ଲେଖୁଥିଲି । ସେ ଗଳ୍ପରେ ରାଜ୍ୟସ୍ତରୀୟ ପୁରସ୍କାର ଲାଭ କରିଛି — ମୁଁ କବିତା, ପ୍ରବନ୍ଧ ଏବଂ ବାର୍ତ୍ତା ପ୍ରତିଯୋଗିତାରେ ରାଜ୍ୟସ୍ତରୀୟ ପୁରସ୍କାର ଲାଭକରିଛି । କଲେଜ ଏବଂ ବାହାର ଅନୁଷ୍ଠାନମାନଙ୍କରେ ବିଭିନ୍ନ ପ୍ରତିଯୋଗିତାମୂଳକ ଗଳ୍ପ, କବିତା, ପ୍ରବନ୍ଧ ଏବଂ ବକ୍ତୃତା ପ୍ରଶ୍ନୋତ୍ତରରେ

ଅଂଶ ଗ୍ରହଣ କରିବାରେ, ଆଲୋଚନା କରିବାରେ ଆମର ଥିଲା ଅପାର ଆଗ୍ରହ । ଦୁଃଖର କଥା ଆମେ ଖେଳ-କସରତରେ ଅନ୍ୟମାନଙ୍କ ତୁଳନାରେ ବହୁତ ପଛରେ ପଡ଼ି ଯାଇଥିଲୁଁ । କଲେଜର ଶେଷ ଅଧ୍ୟାୟରେ ସେ ଥିଲା 'ଏଗ୍ରଜଣ୍ଡ ଦ କଲେଜ'ର (କନ୍‌ହେଇର ଏକ ରମ୍ୟ ରଚନା ଯାହା ଫକୀରମୋହନ କଲେଜ ପତ୍ରିକା The Fakir ରେ ପ୍ରକାଶ ପାଇଁ ଶୃଙ୍ଖଳା ସୃଷ୍ଟି କରିଥିଲା, ସମ୍ପାଦକ) ନାୟକ ଏବଂ ମୁଁ ଥିଲି ଫକୀରମୋହନ କଲେଜ ୟୁନିୟନର ସଭାପତି । ସେ ଶେଷ ଜୀବନ ପର୍ଯ୍ୟନ୍ତ ସାହିତ୍ୟରୁ ବିରତି ନେଇଛି ।

କୌଣସି ଏକ ଘଟଣାକୁ ଆଳ କରି କନ୍‌ହେଇ ଏବଂ ମୋ' ଭିତରେ କିଛିଦିନ ପାଇଁ କଥାବାର୍ତ୍ତା ବନ୍ଦ ହୋଇ ଯାଉଥିଲା । ସେଥିରେ ରାଗ ଅପେକ୍ଷା ଅଭିମାନର ଭୂମିକା ମୁଖ୍ୟ ଥିଲା ବୋଲି ମୋ'ର ମନେ ହୁଏ । ସେ ଯାହା ହେଉ ସେଇଟା ଆମ ଦୁଇଜଣଙ୍କର ଏକାନ୍ତ ଘରୋଇ ବ୍ୟାପାର ଏବଂ ଯାହାର ଅବସ୍ଥିତି ସାମାନ୍ୟ ଗୋଟିଏ ଖିଆଲପରି ଅପସରି ଯାଇଥିଲା । କଲେଜ ଜୀବନରେ ମୁଁ ଟିଉସନ ଟଂକା ପାଉଥିଲି ଏବଂ ବର୍ଷ ଶେଷରେ ଷ୍ଟାଇପେଣ୍ଡ ଟଙ୍କା ବି ମିଳୁଥିଲା । ମୋ'ର ଅତ୍ୟାବଶ୍ୟକ ଖର୍ଚ୍ଚକୁ ବାଦ ଦେଲେ ଅବଶିଷ୍ଟ ପଇସାରେ ଆମର ସିନେମା ଦେଖା, କ୍ୟାଣ୍ଟିନ ଖିଆ ଏବଂ ଅନ୍ୟାନ୍ୟ ସବୁ ଚାଲି ଯାଉଥିଲା । ଆମର ପକେଟରେ ପଇସା ନଥିଲା ବୋଲି କହିଲେ ବରଂ ଭଲ ହେବ । ମୁଖ୍ୟତଃ ଆମେ ଅନେକଟା ଗୁରୁ ଉପରେ ଭରସା ରଖିଥିଲୁଁ । ଏକ ମନେ କରନ୍ତୁ କାହାକୁ ପ୍ରେମ ଚିଠିଟିଏ ଲେଖି ଦେଇ, କାହାକୁ ପ୍ରଶ୍ନୋତ୍ତର ବା ମରକାର୍ଥିଟିଏ ଲେଖି ଦେଇ, ନୋହିଲେ ମିଠା ମିଠା କାଲ୍ପନିକ ଦୁଇପଦ କଥାର ପ୍ରତିବଦଳରେ । କନ୍‌ହେଇକୁ ପ୍ରବୋଧ, କୁନିଅପା, ପ୍ରଭାତ, କଟ, କୁଞ୍ଜବାବୁ ଏବଂ ଗ୍ରାମ ଅନେକ କ୍ଷେତ୍ରରେ ଅନେକଟା ସହାଯ୍ୟ କରିଛନ୍ତି ବୋଲି ମୋର ବିଶ୍ୱାସ । ମହ ପ୍ରବୋଧ, କଟ, ପ୍ରଭାତ ଏବଂ କୁନିଅପାଙ୍କ ସାହାଯ୍ୟ ସମ୍ପର୍କରେ ମୁଁ ନିଶ୍ଚିତ । ... ଏମିତି ଗ୍ରହମିଣା ଆଲୁଅ ଅନ୍ଧାର ଭିତରେ କୋଳାକୋଳି ଏବଂ ପଖାଳ ଶାଗର ସ୍ନେହ ଆଦର ଭିତରେ ଆମର ଜୀବନ ଆଗେଇ ଯାଉଥିଲା । କିନ୍ତୁ ହଠାତ୍ କରି ଏକ ଅପ୍ରତ୍ୟାଶିତ ... ।

ଶେଷ :

ବିଚ୍ଛେଦ ବୋଲି କହି ହେବନି କାରଣ ଆଜିବି ମୁଁ ନିରନ୍ତର ଗଭୀର ଗୌରବ ପ୍ରହରରେ କନ୍‌ହେଇ ସମ୍ବନ୍ଧ କଥା ହେଉଛି ... ତା'ର ଉଦ୍ଧାମ, ଅପୂରଣୀୟ କାମନା ସହିତ ସର୍ବ ସମସ୍ତ ଧରି ଆତ୍ମସମୀକ୍ଷା କରୁଛି ।

× × ×

ସେଦିନ ହଠାତ୍ କବି ଶମ୍ଭୁନାଥ ଦା ସାଇକେଲରୁ ଓହ୍ଲାଇ ପଡ଼ିଲେ ଏବଂ କହିଲେ—କହ୍ନେଇ ମରିଗଲା ସନାତନ ! ମୁଁ କହିଲି, କିଏ କହ୍ନେଇ, ଆମ କହ୍ନେଇ ? ସେ କହିଲେ ହଁ, ଖବର କାଗଜରେ ବାହାରିଛି, ମୁଁ ବର୍ତ୍ତମାନ ପଢ଼ି ଆସିଲି—ଏ. ଜି. ଅଡ଼ିଟର ଯୁବଲେଖକ କହ୍ନେଇଲାଲ ଦାସଙ୍କର ଅକାଳ ବିୟୋଗ ।

... ତାପରେ ଆମେ ଅନେକ ସମୟଧରି ତା'ର ମୃତ୍ୟୁର କାରଣ କ'ଣ ହୋଇ ପାରେ ଚିନ୍ତା କଲୁ । ମୁଁ କହିଲି—ତା'ର ବାପା ଏମିତି ଅକାଳରେ ମରି ଯାଇଥିଲେ, ସେ ବି ମରିଗଲା । କହ୍ନେଇର ବାପା କଲିକତାରେ କୌଣସି ଏକ ଅଫିସରେ କାମ କରୁଥିବାବେଳେ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ ଏବଂ କିଛିଦିନ ପରେ ଡାକ୍ତରଖାନାରେ ତାଙ୍କର ମୃତ୍ୟୁ ହେଲା । ଏଇଟା ତାଙ୍କର ହେରିଡ଼ିଟାରି ଡିଜିଜ, ଏ ସମ୍ପର୍କରେ ମୁଁ ନିଶ୍ଚିତ ହେଲି । ପଢ଼ୁଥିଲା ସମୟରେ ଏବଂ ଆଜି ପର୍ଯ୍ୟନ୍ତ ମଧ୍ୟ କହ୍ନେଇ ସବୁବେଳେ କହୁଥିଲା ତା'ର ଛାତି, ପେଟ ଏବଂ ମଥାରେ ଯନ୍ତ୍ରଣା ହେଉଛି । ମୁଁ କହୁଥିଲି ସେଇଟା 'କଲିକ୍' ଏବଂ ତୁମେ ଆସନ କର, ଆସନ କଲେ ଏବଂ ସମୟ ସମୟରେ ପହଁରିଲେ ଭଲ ହୋଇଯିବ । ମୃତ୍ୟୁର ଠିକ୍ ଗୋଟାଏ ଶନିବାର ପୂର୍ବରୁ ଯା' ଆଗ ଶନିବାର କହ୍ନେଇ ବାଲେଶ୍ୱର ଆସିଥିଲା । ଆମେ ସାଂଗ ହୋଇ ସିନେମା ଯାଇଥିଲୁ ଏବଂ ବ୍ରଜବାବୁଙ୍କ ପ୍ରେସରେ ସାହିତ୍ୟ ତଥା ଅନ୍ୟାନ୍ୟ କଥା ଉପରେବି ଆଲୋଚନା ହୋଇଥିଲା । ସେ କହୁଥିଲା, ବୁଝିଲ ସନାତନ, ମୁଁ ସହସ୍ର ପୃଷ୍ଠାବ୍ୟାପୀ ଏକ ଉପନ୍ୟାସ ଲେଖିବି । ସେଥିରେ ସମ୍ଭବତଃ ପୃଥିବୀର ଅନେକ ମଣିଷର ଚରିତ୍ର ବିଶ୍ଳେଷଣ କରାଯିବ । ମୁଁ କହିଲି—ଚରିତ୍ର ବିଶ୍ଳେଷଣ ଏବଂ ବାସ୍ତବ ଜୀବନ ଉପରେ ପ୍ରତିଷ୍ଠିତ ଉପନ୍ୟାସ ଓଡ଼ିଆରେ ଖୁବ୍ ଅଳ୍ପ, ତୁମେ ଲେଖା ଆରମ୍ଭ କର, ମୁଁ କେତୋଟି ଆବଶ୍ୟକ ପ୍ଲଟ ଦେବାରେ ସାହାଯ୍ୟ କରିବି । ତା'ର ଦୁଇ ଦିନର ରହଣି ଭିତରେ ମୁଁ ଯାହା ଅନୁଧ୍ୟାନ କରିଥିଲି, ସେ ଅତ୍ୟଧିକ ଆଶାବାଦୀ ହୋଇଥିଲା ।

କିନ୍ତୁ କହ୍ନେଇର ସେହି ଶେଷ ଆଶା, ଆଶାରେହିଁ ରହିଗଲା । ଅକାଳ ମୃତ୍ୟୁର ଯବନିକାପାତରେ "ଆଶାରେ ସେ ଆଶା ହେଲା ପରିଣତ ।"



# ପାନ ଦୋକାନ ସାମ୍ନାରେ କେବଳ ଗୋଟିଏ ଅପରାହ୍ନ

• ମାନସ ଦାସ

ଯେମିତି ବହୁ ଲୋକଙ୍କୁ ଅନେକଥର ଦେଖିଲେ ମଧ୍ୟ ଅପରିଚିତ ଅପରିଚିତ ଲାଗେ, ସେମିତି ଖୁବ୍ ଅଳ୍ପ ଲୋକଙ୍କୁ ପ୍ରଥମ ଦେଖାରେ ଖୁବ୍ ପରିଚିତ ଭଳି ମନେ ହୁଏ ।

ବେଶିଦିନ ନୁହଁ,-- ଚଉସ୍ତରି ମସିହା ଡିସେମ୍ବର କିଂବା ଫେବୃଆରୀ, ଜାନୁୟାରୀ କଥା-ଉପକଥା ପାଇଁ ଗଳ୍ପ ସଂଗ୍ରହ କରିବାରେ ପ୍ରାପ୍ତ ଗୁଡ଼ାଏ ଦିନ ନଷ୍ଟ କରିବାକୁ ପଡ଼ୁଥାଏ ।

ପ୍ରତିଷ୍ଠିତ, ସାମାନ୍ୟ ପ୍ରତିଷ୍ଠିତ, ଅଳ୍ପ ପରିଚିତ ସବୁ ପ୍ରକାର ଗାଳ୍ପିକମାନଙ୍କୁ ଭେଟି ଭେଟି ଗଳ୍ପ ଭିକ୍ଷା କରୁ କରୁ ମୋ ଭିତରେ 'ଇଗୋ'ର "ମୁଁ" ଟିକକ ଲୁପ୍ତ ହୋଇ ହୋଇ ଆସୁଥାଏ ।

ଭଲ ଗଳ୍ପଟିଏ ତ କେଉଁଠି ମିଳିବନି, କେବଳ ଏକଦା "ବଣ ଯାଇଥିବା ସୁବର୍ଣ୍ଣ-ନାଁ"କୁ ନେଇ ବଡ଼ାଇ କରୁଥିବା ଗାଳ୍ପିକମାନଙ୍କ ଦୁଆର ପିଣ୍ଡାକୁ ଉଠି ଉଠି କ୍ଳାନ୍ତ, ହୋଇ ପଡ଼ୁଥିବା ସମୟରେ ଏ. ଜି. ଅଫିସ ସାମନାରେ ହଠେ ଅଟକି ଗଲି ।

ସାମନା ପାନ ଦୋକାନରୁ ପାନ ଖଣ୍ଡେ କିଣୁ କିଣୁ ଲଞ୍ଚ ସମୟର ଅଫିସ ଜନସ୍ରୋତ ଭିତରେ ଗୋଟିଏ ଚିହ୍ନା ଚିହ୍ନା ମୁହଁ ଦେଖାଗଲା ।

ମୁଁ ସାମାନ୍ୟ ଝୁଙ୍କି -- ସନ୍ଦେହରେ ପଚାରିଲି—ଆପଣ ··· ··· ··· ··· ।

( ପୁଣି ଥରେ ) କ୍ଷମା କରିବେ — ଆପଣ କନ୍ହେଇଲାଲ ଦାସ ନୁହଁନ୍ତି ତ ?

ଅଳ୍ପ ଉଚ୍ଚର କ୍ଷୀଣ ଶରୀର ଅଥଚ ବେଶ୍ ଆକର୍ଷଣୀୟ ଚେହେରା ମୁହଁଟିରେ ଅଳ୍ପ ଆଶ୍ଚର୍ଯ୍ୟ ଏବଂ ଗୁଡ଼ାଏ ଖୁସି ଝଲକି ପଡ଼ିଲା— ହଁ·· ହଁ···ଆପଣ ? ? ଆପଣଙ୍କୁ ମଧ୍ୟ କେଉଁଠି ଦେଖିଲା ପରି ମନେ ହେଉଛି !

ମୁଁ ଯେ ଏମିତି ଆଶ୍ଚର୍ଯ୍ୟ ସହଜ ଉପାୟରେ ତାଙ୍କୁ ସାକ୍ଷାତ୍କାର କରିବି କଳ୍ପନା କରି ପାରି ନଥିଲି । ତେଣୁ ପ୍ରଥମେ ବହୁତ ଖୁସି ହୋଇ ପଡ଼ିଲି । ମୁଁ କିନ୍ତୁ

ତତ୍କ୍ଷଣାତ୍ ବେଶ୍ ଅହଂକାରୀ ମଣିଷଟିଏ ହୋଇ ପଡ଼ିଲି—ନାଁ, ନାଁ ମତେ ଆପଣ ଆଦୌ କେଉଁଠି ଦେଖି ନାହାନ୍ତି—ମିଛ କହୁଛନ୍ତି... .. ...।

କହ୍ନେଇଲାଲ ଦାସଙ୍କ ହସ ହସ ମୁହଁର ସମ୍ପ୍ରସାରଣ ହଠାତ୍ ବନ୍ଦ ହୋଇଗଲା। ସାମାନ୍ୟ ନିରବ, ସଙ୍କୋଚିତ ମୁହଁରେ ପୁଣି ପଚାରିଲେ—ଆପଣଙ୍କ ନାଁଟା ଦୟାକରି—

ମୁଁ ସାମାନ୍ୟ ବିଳଂବ କରି ନାଁ କହିଲି।

ତା'ପରେ ପୁଣି ଧାଡ଼ିଏ ହେଇ ଆଶ୍ଚର୍ଯ୍ୟ ଖୁସିର ହସ।

ସେଇଥିପାଇଁ ଆପଣଙ୍କୁ ଦେଖିଲି ଦେଖିଲି ଭଳି ଲାଗୁଛି—ମେ ସଂଖ୍ୟା 'ନବରବି'ରେ ଆପଣଙ୍କ ଗଳ୍ପଟି ପଢ଼ିଥିଲି। ଆପଣଙ୍କୁ ଏତେ ଅଳ୍ପ ବୟସ ହୋଇଥିବ ମୋର ଧାରଣା ନଥିଲା।

ଅଗତ୍ୟା ମୁଁ ପାନଟିଏ ଅର୍ଡର କଲି। ପାନ ଖଂଡିକ ନେଇ ନେଉ କହ୍ନେଇବାବୁ ପୁଣି କହିଲେ—କଂଣ ଆପଣ ମତେ ଚହ୍ନିଲେ କେମିତି?

ଫଟ। ସେଇ ପତ୍ରିକାର ଫଟ ପାଇଁ ଆପଣଙ୍କୁ ଚହ୍ନି ହେଲା।

କହ୍ନେଇବାବୁ ତାଙ୍କ ସଙ୍ଗରେ ଥିବା ଅନ୍ୟ ବନ୍ଧୁଟିକୁ କହିଲେ—ସେଇ ଫଟ ପାଇଁ ପୁରୀରେ ସେ ମୋତେ ଚହ୍ନି ନେଇଥିଲା।

କହ୍ନେଇଲାଲ ଦାସଙ୍କ କିଛି ଗଳ୍ପ ପଢ଼ି ମୁଁ ଭାବିଥିଲି—ଭଦ୍ରଲୋକଙ୍କ ହୃଦୟର ନିଶ୍ଚୟ କିଛି କିଛି ଅଂଶ, ବାଲେଶ୍ୱର, ଭଦ୍ରକ, ପୁରୀ, ଭୁବନେଶ୍ୱର ସବୁଆଡ଼େ ରହିଯାଇଛି।

ଏବଂ ସଦ୍ୟ ତାଙ୍କ ମୁହଁରୁ 'ପୁରୀରେ ସେ ମୋତେ ଚହ୍ନି ଦେଇଥିଲା' ଶୁଣି ଭାବିଲି ପୁରୀରେ ତାଙ୍କ ହୃଦୟର କିଛି ଅଂଶ ବହନ କରିଥିବା ମଣିଷଟିକୁ ସେ ସ୍ମରଣ କରୁଛନ୍ତି।

କେଜାଣି କାହିଁକି—ହୃଦୟକୁ ଏମିତି ପାଞ୍ଚ, ଛଅ ଜାଗାରେ ହଜେଇ ବସିଥିବା ପୁରୁଷଙ୍କ ପ୍ରତି ମୋର ଭୟଂକର କ୍ରୋଧ! ତେଣୁ କହ୍ନେଇଲାଲ ଦାସଙ୍କର ହଠାତ୍ ପୁରୀ ସହର ସ୍ମରଣ ମତେ ସୁଖକର ଲାଗିଲାନି।

ମୁଁ କହିଲି—ଆପଣଙ୍କୁ ମୁଁ ଏବେ ଏଇ ଏ. ଜି. ଅଫିସର ମଣିଷ ଜଙ୍ଗଲ ଭିତରେ ବାଉଳା ହୋଇ ଖୋଜୁଥାଂତି। ଭଗବାନଙ୍କର ଅଶେଷ ଦୟା ଏଇଠି ଏମିତି ସହଜରେ ମିଳିଗଲେ। କଥା କ'ଣ କି—'କଥା-ଉପକଥା' ନାମକ ଏକ ପତ୍ରିକା ପ୍ରକାଶ କରିବାକୁ ଆମେ ସବୁ ଉଦ୍ୟମ କରୁଛୁଁ। ସେଥିରେ ଆପଣଙ୍କ ଗଳ୍ପର ପ୍ରୟୋଜନୀୟତା ନିଶ୍ଚୟ ଅନୁଭବ କରି ପାରୁଥିବେ।

ଗଳ୍ପ— କନ୍‌ହେଇଲାଲ ପୁଣି ହସିଲେ, କହିଲେ ; ଗଳ୍ପ ତ ଅଛି, ଉତ୍ତର ନାହିଁ । ବିଶେଷ ଭଲ ମଧ୍ୟ ହୋଇ ନାହିଁ । ତେବେ ଗଳ୍ପଟିକୁ ନିଶ୍ଚୟ ଆପଣଙ୍କ ନିକଟକୁ ଉତ୍ତର ସାରି ପଠାଇ ଦେବି । ଆପଣଙ୍କ ଠିକଣାଟା ଦିଅନ୍ତୁ ।

ଠିକଣା ଦେଇ—ଏ. ଜି. ଅଫିସ କର୍ମଚାରୀମାନଙ୍କ ବିଷୟରେ ସାମାନ୍ୟ ଆଲୋଚନା କରି, ସ୍ତ୍ରାଧାଟ ପରିଷ୍କାର ହେଲା ପର୍ଯ୍ୟନ୍ତ ଅପେକ୍ଷା କରି ମୁଁ ବସ୍‌ଷ୍ଟାଣ୍ଡ ଭିତରକୁ ପଶିଲି ଏବଂ କନ୍ହେଇଲାଲ ଏ. ଜି. ଅଫିସ ଭିତରକୁ ।

ବାସ୍ ତା'ପରେ କନ୍ହେଇଲାଲଙ୍କ ଗଳ୍ପ ଆସିଲା । ଛପା ହେଲା । ମଝିରେ କିଛି ଶଠି ଚିଠି ଦିଆ ନିଆ ହେଲା । କଟକର ଫୋନ୍‌ରେ ସ୍ୱର ଶୁଣା ଗଲା ।

ଏବଂ ହଠାତ୍ ମଝିରେ ଖବର ଆସିଗଲା ।

ଖବର ପାଇବା ଦିନ ମୁଁ ଏକ ବସ୍‌ରେ ଯାତ୍ରା କରୁଥିଲି । ରାତି ସମୟ । ଅନ୍ଧାର ଭିତରେ ମୁଁ କନ୍‌ହେଇଲାଲଙ୍କ ମୁହଁଭଳି ମୁହଁଟିଏ ଖୋଜିବାକୁ ଲାଗିଲି । ପ୍ରଥମ ସାକ୍ଷାତ ପରେ ପ୍ରାୟ ଆଉ ସାକ୍ଷାତ ହୋଇ ନାହିଁ କହିଲେ ଚଳେ । କେବଳ ଚିଠିରେ କେଇପଦ ଭାଷା—ଟେଲିଫୋନ୍‌ରେ କଣ୍ଠସ୍ୱର ।

ସାମନା ସାମନି ଅବଶ୍ୟ ଆଉ ଥରେ ହୋଇ ଯାଇଥିଲୁଁ ।

ବେଶ୍ ବ୍ୟସ୍ତ ବିବ୍ରତ ଦିଶୁଥିଲେ—କନ୍ହେଇଲାଲ ! ! ନମସ୍କାର । ନମସ୍କାର । କେମିତି ଅଛନ୍ତି ? ଏମିତି ଅଛି—ଆଉ ସବୁ ଆପଣଙ୍କ ଭଲ ? ହଁ ସେମିତି ।

ପରେ ବନ୍ଧୁ ଜଣେ କହିଲେ—କନ୍ହେଇଲାଲ ବାହା ହେଉଛନ୍ତି ।

ମୋର ବ୍ୟସ୍ତ ମୁହୂର୍ତ୍ତରେ ମନେ ହେଲା—ହୃଦୟଟା ବୋଧେ ଖଣ୍ଡ ଖଣ୍ଡ ହୋଇ ନଥିଲା, କେବଳ ଇଚ୍ଛା ସବୁ ଏଠି ସେଠି ଛିଟି ଯାଇଥିଲେ । କନ୍‌ହେଇଲାଲ ଶେଷରେ ହୃଦୟ ଦାନ କରୁଛନ୍ତି !

ଏବଂ, ସେ ରାତି ବସ୍ ଯାତ୍ରା ବେଳେ ଅନ୍ଧାରରେ କନ୍ହେଇଲାଲଙ୍କୁ କଳ୍ପନାରେ ପାଇବାର ଅଦ୍ଭୁତ ଇଚ୍ଛାରେ ବୁଝିଲି—ଆମେ ଏକ ଅଦ୍ଭୁତ ପୃଥିବୀରେ ବାସ କରୁଛୁ । ଆମର ବଞ୍ଚିବାଟା ନିହାତି ଆଶ୍ଚର୍ଯ୍ୟ । ଆହୁରି ଆଶ୍ଚର୍ଯ୍ୟ ଆମମାନଙ୍କ ଇଚ୍ଛା ଓ ସମାଜ ।

ଏଣବାଟା କେବେ ହେଲେ ଆବଶ୍ୟକ ହୁଏନ ।

ଏଣପିବାଟା ଏକ ଦୁର୍ଘଟଣା । ଆବଶ୍ୟକତା ଅନୁଭୂତ ହେଉଥିବା ବେଳେ ଏଣ ହୁଏନ ।

କନ୍‌ହେଇଲାଲ ଦାସ ! ! !

ପାନ ଦୋକାନ ସାମ୍ନାରେ ତମର ଅଳ୍ପ ଚଉଡାର ମୁହଁରେ ସଜା ହୋଇଥିବା ଦାଂତମାନଙ୍କୁ ଦେଖିଥିଲି । ପ୍ରାୟ ସପ୍ରସାରିତ ଆଖି ଭିତରେ ଜମିରହିଥିବା—ସୁଖ, ଦୁଃଖ, ଖୁସି, ଯଂତ୍ରଣାକୁ ଦେଖିଥିଲି ।

ତମେ ଜାଣିଥିଲ—ତମେ ଅଳ୍ପ ଦିନରେ ଗୁଡ଼ାଏ ନାମ କରିବ । ତମର ସବୁ ବନ୍ଧୁ, ବାଂଧବ, ତମକୁ ନେଇ ସ୍ମୃତି କାହାଣୀ ଲେଖିବେ, କବିତା ଲେଖିବେ । ତମ ଫଟ ବନ୍ଧା ହୋଇ ତମ ଘରେ ଟାଂଗା ହେବ । ତମ ଅତି ପ୍ରିୟ ଲୋକ ତମ ଫଟକୁ ଚାହିଁ ଆଖି ଛଳ ଛଳ କରୁଥିବ ।

ଆଜି ଭୁବନେଶ୍ୱରରୁ ତମର ଶହେଟି ଗଳ୍ପର ସଂକଳନ ବାହାରିବ ବୋଲି ଘୋଷଣା କରାଯିବ । ବ୍ରଜନାଥବାବୁ, ତମ ପ୍ରଥମ ଶ୍ରାଦ୍ଧ ଅବସରେ 'କନ୍‌ହେଇନାମା' ସଂକଳନ ପ୍ରକାଶ କରିବେ । ମୁଁ ··· ହଁ ·· ନାଁ ··· ହଁ ··· ନାଁ ··· ଭିତରେ — ଗୋଟିଏ ଅଙ୍କିତ ଅପବିତ୍ରର ସ୍ମୃତିକୁ ସ୍ମରଣ କରି ହୃଦୟକୁ ଶୋକାର୍ତ୍ତ କରିବ ।

ବର୍ଷ ପରେ ବର୍ଷ ଆସିବ – ଯିବ । ଆମେ ସବୁ ମରି ମରି ବଂଚି ଥିବୁ । ଜଳଜଳ ପାଉଁଶ ହେଉଥିବୁ । ଘଉଡ଼ିଠି ଧାଉଁଥିବୁ । ଶେଷରେ ଖଂଡ଼ିଆ ଖାବରା ହୋଇ, ଧଇଁ ସଇଁ ହୋଇ, ଦୁର୍ବଳ; କ୍ଳାନ୍ତ ହୋଇ ପଡ଼ିବୁ । ତଥାପି ମଣିମର ବଞ୍ଚିଥିବୁ ।

ତମେ ସବୁ ଦେଖୁଥିବ ତମ ଫ୍ରେମ ହୃଦୟ ଭିତରେ ସବୁ ଯଂତ୍ରଣାକୁ ପୂର୍ବଭଳି ଅଖି ଛଳଛଳ କରୁଥିବ ।

କନ୍‌ହେଇଲାଲ ! ତମେ ଯେଉଁଠି ଅଛ—ଶାଂତିରେ ରୁହ ! ! ଶାଂତିରେ ରୁହ !



# କହ୍ନେର ଓ ପ୍ରେମବାଦ

• ଅଶୋକ ଦାସ

ମୃତ୍ୟୁ ବୋଧହୁଏ ପ୍ରେମର ଶେଷ କଷଟି ପଥର । ସେଇଥିପାଇଁ ରାଧାନାଥଙ୍କ କେଦାର ମୃତ୍ୟୁକୁ ଶ୍ରେୟ ମଣିଥିଲା । ଶ୍ରେୟ ମଣିଥିଲା କ୍ଲିଓପେଟ୍ରା । କହ୍ନେଇଲାଲ କିନ୍ତୁ ଏଥିରୁ ବ୍ୟତିକ୍ରମ । ସେ କେବଳ ନାରୀକୁ ଭଲ ପାଇନଥିଲା, ଭଲ ପାଇ ନଥିଲା ରେଖା, ଅସୀମା, ରାଣୀ, ନମୁନା, ସୀମା ବା ପ୍ରଶାନ୍ତିକୁ । ସେ ଭଲ ପାଇଥିଲା ଜୀବନକୁ, ସାହିତ୍ୟକୁ, ସମାଜକୁ । ଯେ ଦେଶ କଥା ବୁଝେ ସେ ଘର କଥା ବୁଝି ପାରେନା । ଅନେକ ନାରୀଙ୍କୁ ଭଲପାଏ ବୋଲି ସେ ଅନେକଥର କହିଛି, କିନ୍ତୁ ସେ ସବୁ ମୁହଁରେ । ପିଲା ଦିନରୁ ନିଃସ୍ୱ କହ୍ନେଇଲାଲ, ନା ଅଛି ଅର୍ଥ ପ୍ରତିପତ୍ତି, ନା ଅଛି ପୈତୃକ ସମ୍ପତ୍ତି । ବାହାରେ ଝଡ଼ ତୋଫାନ । କଳା ଧୂମର ରାତି । ଚେଇଁ ଉଠିଲା କହ୍ନେଇ । ଧୀରେ ଧୀରେ ନିଜକୁ ଅନୁଭବ କଲା । ଅମା ଅନ୍ଧାରରେ ଅଣ୍ଡାଳିଲା ଜୀବନକୁ । ତାହାରୁ ଶୁଭୁଥିଲା ଝରଣାର କୁଳୁକୁଳୁ ନାଦ । ସେ ଠିକ୍ ବୁଝିପାରୁଛି "ତା ଭିତରେ କେଉଁ ଏକ କୋଣରେ ମାଇକ୍ ଲଗା ହୋଇଛି । ସେଇ ମାଇକ୍‌ରୁ ନିର୍ଦ୍ଦେଶ ଆସୁଛି—ଆଗେଇ ଯା, ଆହୁରି ଆଗେଇ ଯା ।" କାହିଁକି ଜାଣେ ନାହିଁ ତଥାପି ସେ ଆଗେଇ ଚାଲିଥିଲା । ଦୌଡ଼ିଲା କହ୍ନେଇଲାଲ—ଆଗକୁ, ଆଗକୁ । ଝରଣାର ଶବ୍ଦ ବେଶ୍ ସ୍ପଷ୍ଟ ହୋଇ ଉଠୁଛି । ମଝିରେ ରହିଲେ ତା' ବୁଢ଼ୀ ମା', ସାନଭାଇ, ଭଉଣୀ । ମଝିରେ ରହିଲା ତା'ର ପିଲା ଦିନର ଅସ୍ତବ୍ୟସ୍ତ ମୁହୂର୍ତ୍ତର ସ୍ମୃତି, ଘଟଣା ଅଘଟଣର ସୁଖ ଦୁଃଖମାନେ ।

ଜୀବନ-ସଂଗ୍ରାମୀ କହ୍ନେଇଲାଲ ଉଠିଲା ପାହାଡ ପରେ ପାହାଡ । ନିଜ ହାତରେ ତିଆରି କଲା ତା'ର ଘରାବଣୀ । ବିଭିନ୍ନ ପରିସ୍ଥିତିରେ ଭଡ଼ା ଘର ବଦଳାଇଛି । ପୁରୁଣା ଘର ବଦଳାଇ ନୂଆ ଘରକୁ ଯାଇଛି । କିନ୍ତୁ ସବୁଥର ତା' ଲେଖାର ଆଙ୍ଗିକ ଓ ଆତ୍ମିକ ବୈଭବ ପ୍ରତି ସଜାଗ ଦୃଷ୍ଟି ଦେଇଛି । ତାର ସେଇ ଛୋଟିଆ କୁଳଘର । ଘର ଆଗରେ ବଗିଚା । ବାଗ ପଟେ ବେଣ୍ଟପୋଖରୀର କାଚକେନ୍ଦୁ ଜଳ । ଘର ଭିତରେ ପ୍ରଶାନ୍ତି । ହଠାତ୍ ତା'ର ଖ୍ୱାବ୍ ଟୁଟିଗଲା । ସେ

ସ୍ୱପ୍ନିଥିଲା ନିର୍ଭେଜାଲ ନାରୀଠୁ ନିର୍ଭେଜାଲ ପ୍ରେମ । କିନ୍ତୁ ବୁଝିପାରିଲା କହୁଥିଲେ "ଆଜିକାଲି କେଉଁଠି ନିର୍ଭେଜାଲ ଅଛି ଯେ ! ତୁମେ, ମୁଁ, ପ୍ରେମ, ଈଶ୍ୱର ସମସ୍ତେ ଭେଜାଲ ।" କ୍ଲାନ୍ତ କହୁଥିଲେ । ରାତିରେ ଶୋଇଥିଲା ବେଳେ ମଶା ସବୁ ଗୁଣୁଗୁଣୁ କଲେ । ବନ ଆଲୁଅରେ ମାଛି ସବୁ ବେଢ଼ି ଗଲେ ନିଷ୍ଫଳ, ଅସହାୟ କହୁଥିଲେ । ଘର ଭିତରେ ଆଲୁଅ ଜଳି ଉଠିଲା । ନୂତନ ସୂର୍ଯ୍ୟର ନୂତନ ଦୀପ୍ତି । ପ୍ରେମମୟ ଦୁନିଆଁ । ସବୁ କିଛି ସୁନ୍ଦର । ମଧୁମୟ ସୃଷ୍ଟି । ବୁଝିପାରିଲା କହୁଥିଲେ । "ତା' ଭିତରେ ମାଲ୍ ଅଛି । ତା' ଘର ଭିତରେ ବଢ଼ିଆ ଚିଜ ଅଛି ।" ତା' ପରଠୁଁ ସବୁ କଥା ହୃଦୟ ଦେଇ ଦେଖିଲା, ହୃଦୟ ଦେଇ କହିଲା । ସବୁଠି ସେଇ ଗଦ୍‌ଗଦ୍ ଭାବ, ଯାହାକୁ ଦେଖିଲା ତା' ପାଇଁ ହୃଦୟ ଖୋଲି ଦେଲା । ସବୁଠି ସେଇ ଅସହାୟତା ଦେଖି ଫଗେ ଫଗେ ହୃଦୟ ଖୋଲି ଅଞ୍ଜଳିରେ ଗାମୁଛା ଭିଡ଼ିଲା, ତଥାପି ବି ଅସହାୟତା ଓ ନିଃସ୍ୱତାରେ ବଞ୍ଚିତ କହୁଥିଲେ ରାତି ଅଧରେ କେତେବେଳେ କେମିତି ଉଲଗ୍ନ ହୋଇ ଦଉଡ଼ିଯାଏ ସେ ଝରଣା ପାଖକୁ । ସବୁବେଳେ ସେଇ ଜିଦ୍‌ଖୋର ଭାବ । ବହୁତ ଜଙ୍ଗଲ ବୁଲିଛି ସେ । ବହୁତ ଝରଣାର ନିର୍ମଳ ଜଳ ପିଇଛି । ଯେଉଁଠି ଜାଣି ପାରିଛି ତା' ପାଦ ପଡ଼ିଲେ ଝରଣାର ଜଳ ଦୂଷିତ ହେବ ସେ ଧାଇଁ ପଳାଇଛି । "ପ୍ରକୃତରେ ସେ ନିର୍ଦ୍ଦିଷ୍ଟଭାବେ କୌଣସି ନାରୀକୁ ସ୍ୱପ୍ନେ ନାହିଁ । କେବଳ ଖୋଜିବା । ଗାଁ ଗଣ୍ଡା, ସହର ନଗର ଘଞ୍ଚ ଜଙ୍ଗଲ, ପାହାଡ଼, ପର୍ବତ ଭିତରେ ଅଦୃଶ୍ୟ ଝରଣାର ଅନୁସନ୍ଧାନ । ସୀମା, ନମିତା, ମେନକା ସେଇ ଅନୁସନ୍ଧାନର ଗୋଟିଏ ଗୋଟିଏ ଚିହ୍ନ ।" ସମସ୍ତେ କେବଳ ତା'ର ବଞ୍ଚିବାର ସ୍ପୃହା । ଗୋଟିଏ ଗୋଟିଏ ଉପାଦାନ ।

ମୁଁ ଜାଣେ ତା ସ୍ୱଭାବରେ ଅନେକ ନାରୀର ଦେହ ଓ ଅନେକଙ୍କ ଭିତରେ ତା' ପାଇଁ ଶ୍ରଦ୍ଧା ଓ ଭଲ ପାଇବା ଖିନ୍ନ ହୋଇ ରହିଛି । ତା' ଜୀବନରେ ଗୋଟିଏ ବଡ଼ ଦାଗ ଦେଲା ତା' ସହ ଯଦି ଜଣେ ଝିଅ କିଛି ସମସ୍ତ କଥା କହିବ ତା' ହେଲେ ହୁଏତ ତାକୁ ଶ୍ରଦ୍ଧା କରିବ ନ ହେଲେ ପ୍ରେମରେ ପଡ଼ିବ ।

ସ୍ରଷ୍ଟା କହୁଥିଲେ ସୃଷ୍ଟିକୁ ଭଲପାଏ । ସେ ପ୍ରକୃତରେ ଲୋକମାନଙ୍କୁ ଭଲ ପାଏ । ସେମାନେ କରୁଣ ଦେଖା ଗଲେ, ସେମାନଙ୍କୁ ଭଲ ଲାଗେ ସେମାନଙ୍କ ଦୁର୍ଦ୍ଦଶାଗ୍ରସ୍ତ ମୁହୂର୍ତ୍ତରେ । ଦର୍ପଣରେ ସେ ଯେତେବେଳେ ନିଜର କରୁଣ ମୂର୍ତ୍ତି ଦେଖେ ସେତେବେଳେ ତା' ପ୍ରତି ତାର ମମତା ବଢ଼ିଯାଏ, ନିଜକୁ ଭଲ ପାଇବାକୁ ଆରମ୍ଭ କରେ । ନିଜ ଭିତରେ ଦୁନିଆଁକୁ ଦେଖିବାକୁ ଚେଷ୍ଟା କରେ । ନିର୍ଜନ ମୁହୂର୍ତ୍ତରେ ଆଙ୍କିଥିଲେ ତା'ର ସ୍ୱପ୍ନର ଇନ୍ଦ୍ରଧନୁ ।

ସେ ସାହିତ୍ୟରେ ପ୍ରେମ ଓ ଜୀବନକୁ ସାମିଲ କରନ୍ତି । ସୃଷ୍ଟି ଭିତରେ ସ୍ରଷ୍ଟାର ପ୍ରତିଛବି । ସେଇଥିପାଇଁ ବୋଧହୁଏ ତା'ର ଗଳ୍ପଗୁଡ଼ିକରେ ସେ ସବୁବେଳେ ନିଜ କଥା କହିଛି । ଗଳ୍ପର ନାୟକ ସେ ନିଜେ । ନିଜେ ଯାହା ଭାବନ୍ତି, ଯାହା ବୁଝିଛି, ଯାହା ଦେଖିଛି ତାକୁ ରୂପ ଦେଇଛି ।ଏ ଦେଶରେ କଳାକାର ଯାହା କହେ କରେ ତାର ସଂପୂର୍ଣ୍ଣ ବିପରୀତ । A gap of living and believing. କିଂତୁ କନ୍‌ହେଇଲାଲ ଯାହା କହିଛି, ତାହା କରିଛି । ...... ପ୍ରେମ କରିଯାଅ । ଭଲ ପାଅ ଏ ଦୁନିଆଁକୁ । "ପ୍ରେମରେ ହିଁ ମଣିଷ ବଂଚି ପାରିବ ।"

ଆଜିର ସାହିତ୍ୟିକ ଗୋଷ୍ଠୀ ମୃତ୍ୟୁବାଦ ଏବଂ ନୈରାଶ୍ୟବାଦରେ ରୋଗଗ୍ରସ୍ତ ହୋଇଥିବାବେଳେ କନ୍‌ହେଇଲାଲ କିଂତୁ ପ୍ରେମବାଦରେ ବିଶ୍ୱାସ କରିଥିଲା । ମରିବାଟା ବଡ଼ କଥା ନୁହେଁ, ସବୁ କିଛି ନିଜ ଭିତରେ ହଜମ କରି 'ବଞ୍ଚିବାଟା ସବୁଠାରୁ ସତ' । ଏକଥା କହିବାକୁ ଯାଇ ତା'ର ନିଜସ୍ୱ ଏକ ଗଳ୍ପରୁ କିୟଦଂଶ ଉଦ୍ଧାର କରୁଛି – "ହଠାତ୍ ମୋର ମନେ ହୁଏ ଏ ପୃଥିବୀର ଯଥେଷ୍ଟ ମାନେ ଅଛି । ବାଘ, ମାଆ ଗଛଲତା ପୁଣି ହିଂସା, ଘୃଣା, ସନ୍ଦେହର ସ୍ୱତନ୍ତ୍ର ଅର୍ଥ ଅଛି । ପୁଣି ସେଇ ଅର୍ଥର ଅନୁଭବ ଶରୀରର ଅଦ୍ଭୁତ କୋଣର ଚେତନାର କେଉଁ ଅଦୃଶ୍ୟ ତାରରେ ବାଜି ଏକ ଅବ୍ୟକ୍ତ ଝଂକାର ତୋଳେ । ସେ ଝଂକାର ମୋର ପାଦନଖ ଠାରୁ ମୁଂଡବାଳ ପର୍ଯ୍ୟନ୍ତ ସମଗ୍ର ସ୍ନାୟୁକୋଷରେ ସଂକ୍ରମିତ ହୋଇ ପ୍ରମାଣ କରେ ମୁଁ ବଂଚିଛି ଏବଂ ସାଂଘାତିକ ଭାବେ ବଂଚିଛି ।"

ହଠାତ୍ ଜଣେ କହୁଥିଲେ ସକାଳୁ ଉଠି ଦେଖିଲି ପ୍ରଶାନ୍ତ କୁଆଡ଼େ ଚାଲିଯାଇଛି । ସବୁ ଷ୍ଟେସନରେ ଓହ୍ଲାଇ ଖୋଜିଲି ତା'ର ପ୍ରଶାନ୍ତକୁ । ତଥାପି ଷ୍ଟେସନ ପାରି ହେଲା ପରେ କହୁଥିଲେ ଟ୍ରେନରେ ବସି ଧାଇଁ ଚାଲିଥିଲା ଚତୁର୍ଥ ଷ୍ଟେସନ । ଦୂରରେ ଏକ ନାଳ ପୋଷାକ ପିନ୍ଧା ଲୋକ ନାଳ ପତାକାଟି ହଲାଉଥିଲା ।

× × ×

ଗୋଟିଏ ଗଳ୍ପ ଭିତରେ ଏତେ ପରିବର୍ତ୍ତନ । ମୁଁ ମନେ ମନେ କହିଲି — ମାନିନେବାକୁ ହେବ, ଗ୍ରହଣ କରି ନେବାକୁ ହେବ । ଉପାୟ ନାହିଁ । ତଥାପି ବଞ୍ଚିବାକୁ ହେବ । ବଞ୍ଚାଇ ରଖିବାକୁ ହେବ ।



# କନ୍‌ଟେହ୍ୱର ସ୍ମରଣେ

• ଗିରିବାଲା ମହାନ୍ତି

ଯୌବନର ଏ ଭରା ମଧୂମସ୍ତ ସତେ
ଉଙ୍ଗଠ ଲାଗେ ମଧୁଋତୁ ଉରକାରେଶ,
ମୃତ୍ୟୁ ହେ ତୁମେ କାହିଁ ଥାଅ ଦୂଅ ବାସ
ସୁଖର ସାଗର ବେଳାଭୂମି ପରେ
ଅବଲୀଳା ତୁମେ ତରଙ୍ଗ ଅନ୍ତରେ
ଶାନ୍ତ ଓ ଅନୁପମ ॥

ଜୀବନଟି ଯେବେ ସମ୍ଭାବନାରେ ଦହେ
କର୍ମର ଜାଲ ଫିଟି ଫିଟି ମନେଓ ଶକ୍ତିର ସ୍ୱପ୍ନ ରହେ
ମୃତ୍ୟୁ ହେ ତୁମେ କାହିଁ ଥାଅ କଡ ଠାକ
ଜୀବନର ଯେତେ ଅସମତା ଛାଂକ
ସ୍ପୃହା ତଳକାରେ ପରମପ୍ରାପ୍ତିର
ପୂର୍ଣ୍ଣତା ଦଅ ଲେଖି ॥

ବରମାଳା ଗଳେ ଶର ପ୍ରଣାଂକ
କୀର୍ତ୍ତି କଅ ଯେତେ ଜୀବନର ସଜ ଧୂପ,
କାହିଁ ଥାଅ କହ
ମୃତ୍ୟୁ ହେ ଅପରୂପ ! !



## ॥ ଦ୍ୱିତୀୟ ପୃଥିବୀ ପାର ହେବା ପରେ ॥

• ଭଗବାନ ଜୟସିଂହ

କନ୍‌ଫେଇରେ, ମଡ଼ଲଣ ଜନ୍‌ହର ଆଗିରେ
ଏ ପୃଥିବୀ କେତେ ବଡ଼
ଗୃହ ଝଗେ କୋଳାହଳ, କଳହେଣ
ଏ ପୃଥିବୀ ଭାଂଗି ପଡ଼େ
ଖଣ୍ଡଖଣ୍ଡାଂଚ
ଜନ୍ମ ଏବଂ ମୃତ୍ୟୁର ସୀମାରେ
ଆଶା ଏବଂ ନିରାଶାର କଂପନରେ
ଜୀବନଟା ବାର ହୁଏ ନାହିଁ
ଜାଣି ହୁଏ ନାହିଁ
କିଏ କା କାହାର ଏଠି ?
ସମ୍ପର୍କର ଅର୍ଥ କ'ଣ ?  ପ୍ରତ୍ୟାଶାର ଅର୍ଥ କ'ଣ ?
କନ୍‌ଫେଇରେ— ସବୁ ଖାଲି ଅଂଧାର
ଅଂଧାର—ଅଂଧାର—ଅଂଧାର
ଦୁର୍ଦ୍ଦମ ଅଂଧାରରେ କ୍ଷୀଣ ଏକ
ଆଲୋକର ଝଲ୍ଲାଉଚ ସ୍ୱର ॥

ଆଜର ଏ ସକାଳର କୁହୁଡ଼ରେ ଯେତେବେଳେ
ମନେ ପଡ଼େ ତୋ' ମୁହଁ !  ତୋ'ର ସେଇ
ଗୋଲ ଢଳ ଢଳ ବାହୁ, ସରଳିଆ ଆଖି
ମନେ ହୁଏ ପାତାଳରେ ଜଳରଦ୍ ଦୁଃଖ ପଡ଼
ମୁଁ ସନ୍ତୁଷ୍ଟ ତୋ' ପ୍ରେମର ଛନା ତରଙ୍ଗରେ
ଅସଂଖ୍ୟ ଦୁଃଖରେ ମୋତେ ଦଣ୍ଡ ନାହିଁ
ଆଜ ବେଶୀ ରସ୍ତା
( ଯେଉଁ ରସ୍ତା ଦେଇ ଆମେ ନିତ ଫେରୁଥିଲେ )
କେତେ କେତେ ଥିଏଟର ପାର୍କ ଏବଂ ସହରର ରେସ୍ତୁଁରାରେ

୪ରଖା ଏବଂ ରୁଦ୍ରଙ୍କର ମୂର୍ତ୍ତି
ଯନ୍ଧ ସେତେବେଳେ ଦିଶୁଥିଲା ଅତି ଭୟଙ୍କର ॥
ସେତେବେଳେ ତୋ' ଆଖିରେ ନିଦ ଥିଲା
ତୋ' ଆଖିରେ ଲୁହ ଥିଲା ।
ତୋ' ଆକାଶ ଦୂରତାରେ ମୋ' ଆକାଶ
ଫାଟି ପଡୁଥିଲା
ସ୍ନେହ ଡେଗେ ଜମୁଥିଲା ଅନାସକ୍ତ ଚଢ଼େଇଙ୍କ ଅଜଣା ଠିକଣା
କିଏ ଅବା ଜାଣିଥିଲା—ହଠାତ୍ ଉଠିବ ଝଡ଼
ସେ ଝଡ଼ରେ କ୍ଲାନ୍ତ ଶ୍ରାନ୍ତ ପକ୍ଷୀ ପରି
ତୁ ଉଠିବୁ ଉଡ଼ିକି ଓ ହଠାତ୍ ଏକା କରି
ତୁ ହୁଏତ କେବେ ଫେରିବୁନି ॥

କନ୍‌ହେଇରେ—ଏ ଦୁନିଆ ଅଦ୍ଭୁତ !
ଏ ଦୁନିଆ କ୍ଷଣେ କ୍ଷଣେ ଭିନ୍ନ !
ଅନ୍ତଶପୁ ପିଡ଼ା ଲାଗେ, ଏ ଜୀବନ
( ଜୀବନ କି ଜୀବନର ଅନ୍ତର୍ଦ୍ଧାଂର ବୋଝ ? )
ଶୂନ୍‌ଶାନ୍ ନିସ୍ତବ୍ଧିଆ ପ୍ରହରରେ ବୋଧହୁଏ
ଏଥିପାଇଁ ତୁ ବୁଲିଗଲୁ
ଭଲ କଲୁ ।
ଦୁଃଖତର କାମନାରେ ବଞ୍ଚିବାଠୁଁ ବୋଧହୁଏ
ଶ୍ରେୟସ୍କର
ସ୍ନିଗ୍ଧତମ ତୋ' ପୃଥିବୀ ମୋହ ! !



# ଚାଲିଗଲା

• ଚନ୍ଦ୍ରମଣି ପଣ୍ଡା

ସମସ୍ତେ ପଚାରୁଛନ୍ତି —ଗଲା କାହିଁ ଗଲା ?
ମଥୁରାକୁ ଗଲା କାହ୍ନୁ, ସାରି ଗୋପ ଲୀଳା,
"କଥା" ଓ "କବିତା" ତା'ର ଗୋପାଙ୍ଗନାମାନେ
ଚାହିଁ ବସିଛନ୍ତି ପଥ—ଫେରିବ ସେ କେବେ ॥

ବସନ୍ତର ରଜଦୋଳି – ଜାମୁଡ଼ାଳୀ ଗୀତ
ଦଲକା ପବନ ଆଉ ଝାଙ୍କୁରିଆ ଶୀତ,
ଆକାଶର ଭସା ମେଘ, ହାଣ୍ଡି ଘୋଡ଼ା ଛକ
ସେ ଦେଖୁଛି, ଲେଖୁଛି ସେ ଥିଲା କେଣୁ କଥ ?

ତା' ଜୀବନ ପ୍ରତିମାଟି ଏଇ ବାଟେ ଗଲା
ରଥରୁ ଓହ୍ଲାଇ ସାରି କେଉଁଠି ରହିଲା ?
କହ୍ନେଇ ଏମିତି କରେ, ପାଣିରେ ବା ବୁଡ଼େ
ସମସ୍ତେ ଖୋଜନ୍ତି ସିଏ ଲୁଚି ଯାଏ ଭିଡ଼େ ॥

ଅନ୍ତର ସ୍ୱାକ୍ଷରେ ସିଏ ଫେରିବ ଫେରିବ
କଷ୍ଟ ଦେଇ ସିବ ଯାହା ଦେଲା ଅନୁଭବ,
ଆସିଥିଲା ବୋଲି ସିଏ ଯାଇଅଛି ଚାଲି
ଅପେକ୍ଷା କରିବା ସିଏ, ଆସୁଥିବ ଫେରି ॥

—୦—

# କାନ୍‌ଚେହ୍ଲର

• ଶୁଭେନ୍ଦୁ ମୁଣ୍ଡ

ଏ କ'ଣ ସେଇ ବଗିଚ୍ଛ ବୁଦ୍ଧ ସ୍ତାଣୁ
ଖୋଲ ଖୋଲ ସମୟର ଅବଶୃଷ୍ଟ ଠାଣି
ସ୍ତାଣୁ ବୁଦ୍ଧ – ଶେଷ ପ୍ରଶ୍ନ ପ୍ରହସଣ୍ଡ
ତୁମେ କ'ଣ ଜାଣ ନାହିଁ

ହାଟ ବାଟ ଲୋକ ଗହଳରେ ତୁମେ କ'ଣ
ଥମକ ଛୁଞ୍ଚା ହେବ ଏଇଠାରେ ଏଇ ଗଛ ମୂଳେ
ଧରେ ନଅ ଲକ୍ଷେ ବର୍ଷ ପରେ
ଭଂଗା ଚୂଡ଼ି, କଣ୍ଟାବାଳ, ଲୁଗାଧଡ଼ି, ପନାଖଳି
ଓ ସରସ ବଭସ ମୂର୍ତ୍ତି
ତୁମେ କ'ଣ ସତ କହ
ସବୁ ଦିନେ ଏଇପରି ଗାଉଥିବ ଗୀତ
ସତେ, ସତେ,
କାଲି କାଲି କାଲି କାଲି
ମେକ୍‌ବେଥ୍ କହୁଥିଲା ପରି
ଡେଇଁଥିଲା ଶୋଇଲା ଝଟଣ
ଶୋଇଥିଲା ଡେଇଁଲା ଅଲକ୍ଷ୍ୟରେ
ଏବଂ ଟାଣି ନେଲା ତୋତେ, ମୋତେ, ସମସ୍ତଙ୍କୁ
ଅନେକ ଦୂରକୁ

ପଛକୁ ଫାଏନା ଆଖି
ଆଗକୁ ଦୁଏନା ଦୃଷ୍ଟି
ତୁ କେଉଁଠି,
କେଉଁଠି ମୁଁ

# ମରଣ ବିଜୟୀ

• ଶେଷଦେବ ମଲ୍ଲିକ

ସିଏ କିବା ମରି ପାରେ ?
ଏକ୍ସପର ଡାକ୍ତରଖାନାରେ—ହୃଦ ଯଂତ୍ରଣାରେ ?
ସିଏ ଏଠି ଶହ ଶହ ହୃଦୟର
ଯଂତ୍ରଣାକୁ କାଳି କଲମରେ
ଲିପିବଦ୍ଧ କରୁଥିଲା—ଖୋଲୁଥିଲା କାହାଣୀର ପେଣ୍ଡ,
ସେ କି କେବେ ମରି ପାରେ
ରାଜଧାନୀ-ହସ୍ପିଟାଲ ଖଟିଆରେ ପଡ଼ି ?

ଆଶା ଯା'ର ଆକାଶଠୁଁ ବଡ଼,
ଚିନ୍ତା ଯା'ର ସମୁଦ୍ରଠୁଁ ଗଭୀର
ଭାବନା ଯା' ଗନ୍ଧବାନ୍ ଫୁଲରୁ ବଳି,
ପ୍ରାଣ ଯା'ର କାନ୍ଦୁଥିଲା ଅନ୍ୟ ଯଂତ୍ରଣାରେ
ସେ କି କେବେ ମରି ପାରେ ଇତରଙ୍କ ଭଳି ?

ସିଏ ତ ମରିବ ନାହିଁ ଯୁଗ ଯୁଗ ପାଇଁ
ଯେତେ ଦିନ ଏ ଭାଷାର ନୋହିଛି ବିଲୋପ,
ଯେତେ ଦିନ ଏ ଜାତିର ବଞ୍ଚିଥିବ ପ୍ରାଣ ମହାନଦୀ
ଲୋକମାନେ ପଢ଼ୁଥିବେ, ଶୁଣୁଥିବେ ତା' ମୋହକ ଗପ ॥

ସେ ମରିନି, ପାରେ ନାହିଁ ମରି
ତା' ସୃଷ୍ଟିର ସ୍ତମ୍ଭ ନାହିଁ ଲୋଡ଼ା,
ଶହ ଶହ ସୃଷ୍ଟି ସ୍ତମ୍ଭ ଯା'ର ନିଜ ସୃଷ୍ଟି
ସିଏ ଏକ କାଳଜୟୀ-ବିରାଟ ପାଗୋଡ଼ା ॥

ମରଣ ବିଜୟୀ ସିଏ—
ତାଙ୍କୁ କେବେ ଏ କୃତାଂତ ସମସ୍ତଠା ପାରିବନି ମାରି,
ନିଜେ ସିନା ଏ ସମସ୍ତ ମରି ହଜି ଯିବ
ତା' ପାଦରେ ଦେଇ ବିନ୍ଦୁ ଅଶ୍ରୁ ଅର୍ଘ୍ୟ ଢାଳି ।



# ଚାହିଁ ଥିବ

● ତପନକୁମାର ପଟ୍ଟନାୟକ

ସେ ତାରା ଜଳୁଥିଲା କାହାର ଗୋପନରେ
ସେ ତାରା ଲିଭିଗଲା କେଉଁଠି ବହୁ ଦୂରେ
ସେ ତାରା ଆଉ କେବେ ଜଳିବ ଅବା ନାହିଁ
ସେ ତାରା ଜଳୁଥିଲା କାହିଁକି, କାହା ପାଇଁ ?

ସେ ତାରା ଜଳିବାରେ ଦେଲା, କେ' ଆନନ୍ଦକଣ
କାହାରେ କରିଥିଲା କେତେ ସେ ଆମୋଦିତ
କେତେ କା' ଜୀବନର ତମସର ଚିନ୍ତା ଲେଖି
ତା' ପର ପୃଥିବୀକୁ ସଜାଇଥିଲା ସେ' କି ?

ସଧବା ମାଆ ଆଜି ବାତୁଳ ଭଳି ତାର
ଶୂନ୍ୟେ ଚୂର୍ଣ୍ଣ କରୁଥିବେ ସେ ହାହାକାର
କଏସେ ଦେବ ଆଜି ଅଶ୍ୱାସନା ବାଣୀ
ମୁଖରେ ଭାତ ମୁଠେ ଟୋପାଏ ଆଉ ପାଣି ।

ତରୁଣ ବୟସରେ ଯେ' ପାଠ ଲିଭିଯାଏ
ତା' ଠାରୁ ବଳି ଆଉ ଦୁଃଖ କଣ ଥାଏ ?
ତରୁଣ ବୟସର ଅଥିର ରଂଗରେ
ସ୍ୱର୍ଗ ନାଚୁଥାଏ ଗୋଟିଏ ଛଂଦରେ !

ସେ ବେଳେ ଯଦି କେହୁ ନଜଣା ଯାଏ ବୁଡ଼ି
ଜୀବନ ପକ୍ଷୀ କା' ହୃଦୁରେ ଯାଏ ଉଡ଼ି
ସେ କେଉଁ ଗୀତ ଗାଇ ବେସୁରା ରାଗ ସ୍ୱରେ
ଆପଣା ଘର ଛାଡ଼ି ଯାଏ ସେ ବହୁ ଦୂରେ !

ଘରେ ତା' ସ୍ମୃତିଥିବେ— ନଜଳା ନେଇ ମାଟି
ଗଣୁଣି କାଲି ଠାରୁ ଫେରିବ ବୋଧେ ଆଜି !
ସେ ଟିକି ଚଢ଼େଇଟି ଅହାର ପାଇଁ ଯାଇ
ଫେରିବ ବୋଲି କହି ଆଜି ଯେ ଫେରୁ ନାହିଁ !

ମାଆର କ୍ରୋଧ ଅବା ଭାଇର ହତାଦର
ବନ୍ଧୁ ଜନ ଅବା କଲେ କି ଅନାଦର
କଏ କି ମୁହଁ ମୋଡ଼ି କହିଲା ତାକୁ କିଛି
ଘୃଣାରେ ଆତ୍ମୀୟ କଲେ କି କେବେ ଛି, ଛି ?

କାହିଁକି ରାଗ କରି ଗଲା ସେ କେଉଁଆଡ଼େ
ତା'ର ସେ ଅଭିମାନ ସତେବା କା' ଉପରେ
ମୁଁ ତାକୁ ଦେଖି ନାହିଁ ତଥାପି ଖୋଜୁଅଛି
ତା' ରୂପ, ରଂଗ ମୁଁ ମୋ' ମନେ ସଜାଇଛି !

କୁଆଡ଼େ ଗଲା ସେଇ ତରୁଣ କଥାକାର
ଏ' କୂଳେ ଲାଗିଥିଲା ଜୀବନ ନାଆ ତା'ର
ସେ କୂଳେ ଯାଇଛି କି ନାଆ ତା' ବାହି ବାହି
ସେ ପାରେ ବସି କଥା ଲେଖୁଛି କାହା ପାଇଁ !

ନୀରବ ଗୋଧୂଳିରେ ଯମୁନା ତୀରେ ବସି
କାହାର କବରୀରେ କୁସୁମ ସଜାଉଛି !
କାହାର ଓଠ ତୀରେ ଆପଣା ଓଠ ଘଷି
ପ୍ରଣୟୀ ମରମର ଅର୍ଘ୍ୟ ବାଢ଼ୁଅଛି !

କୁଆଡ଼େ ଯାଇଛି ସେ ତରୁଣ କଳାକାର
ଫେରିବ କେତେବେଳେ କହୁ ସେ ଜନ୍ମ ନାହିଁ ?
ଲକ୍ଷେ ଆଖିରେ ମୁଁ ଦେଖୁଛି ତା'ର ଛବି
ଫେରିବ କେତେବେଳେ ତରୁଣ ସେଇ କବି !

ଅନେକ ଦୃଷ୍ଟିରେ ଅନେକ ଆକୁଳତା
ଫେରିବ ନାହିଁ ସେ କି ? ଲେଖୁଛି ଶେଷ କଥା
ତା' ଶେଷ ଉପହାର ପାଇଛି ସେ' କି ଦେଇ
କହୁଛି ଫେରିବନି, ଶେଷ ତା' ଦେଖା ଏଇ !

ସିଏ ତ ନେତା ନୁହେଁ ; ସେ ପ୍ରେମ କଥାକାର
ନଥିଲା ମତବାଦରେ ତରୁଣ କଳାକାର
ତା' ପାଇଁ ତେଣୁ କଏ ଅଶ୍ରୁ ତରପଣ
କରିବ ସେ ଯେ ଏକ ଭଂଗା ଦରପଣ !

ମୋ'ମନେ ଆସେ ନାହିଁ ଯାଇଚି ସେ ଯେ ଛାଡ଼ି
ଏ' ବେଳା ତଟେ ତେଣୁ ଚାହିଁଛି ଚାହିଁଥିବ !!

—o—

# ସ୍ନେହର କନ୍‌ହେଇ

• ବାସନ୍ତୀ ଦାଶ (ରଥ)

କନ୍‌ହେଇ !
ତୁମେ ସ୍ନେହର ଖେଳନା ଶିଶୁ
"ତୁମେ, ପାଣିକଳ, ହାତଘଣ୍ଟା, ଅଫୀମାକୁ ନେଇ
ଇତିହାସର ଆଜ ଏକ ଅଧ୍ୟାୟ"
ତୁମେ ପୁଣି ବିମୁଗ୍ଧ ଦର୍ଶକ
"ଏକ ବିଗ୍ରହ-ହୀନ ମଂଦିର ସାମ୍ନାରେ
ମାଲ୍ ବୋଝାଇ ଲଞ୍ଚଟାର
କିଛି ସମୟ ଅଟକି ଯାଇଥିବା ଦୃଶ୍ୟ"ର
ତୁମେ ପୁଣି—
ଅନେକ "ଘଟଣା"ର କଥାକାର
"ତିଥି ଓ ଚନ୍ଦ୍ରର –
ସେଇ ପୁରୁଣା କଥାମାନଙ୍କୁ ନେଇ"
ପୁଣି "ଏକ ପ୍ରେମ ହୀନ ଚଲ୍ଚିତ୍ରର ଭୂମିକା" ।
ତୁମେ ତୁମ ଜୀବନର, ମାହାତ୍ମ୍ୟର
ନୂଆ ଏକ ପରୀକ୍ଷା, ନିରୀକ୍ଷା ॥

ସୁନ୍ଦର ଆଖିରେ ତୁମ
ଏନ୍ତି ସୃଷ୍ଟି ପ୍ରେମ-ମୟ
ଆଉ ସଭିଏଁ ତ ଅତି ଆପଣାର ;
ତୁମର 'ଭଜନ' ଓଳକ ଖୁବ୍ ମଧୁମୟ
ତୁମର ମମତାଭରା ସ୍ନେହୀ ଭାଷା —
ଆଜି ସବୁ ଅଲଗା ସ୍ୱାକ୍ଷର
ତୁମକୁ କି ଭୁଲି ହେବ କେବେ ?
ତୁମ ସ୍ମୃତି ଅକ୍ଷୟ ଅମର ॥

ସ୍ନେହର କହ୍ନେଇ ମୋର
ବେଦନା କି ଲେଖିହୁଏ ଲେଖଣୀ ମୁନରେ ?
ଲୁହକୁ କି ବାଂଧି ହୁଏ କାଗଜ ପୃଷ୍ଠାରେ ?
ମଧୁର କି ବଂଦ ହୁଏ ଆରମ୍ଭ ବେଳାରେ ?
ମରଣ କି ମେଣ୍ଟପାଏ ସ୍ନେହ, ଶ୍ରଦ୍ଧା, ମମତା ଘ ନରେ ?

ତୁମ ପାଇଁ କାନ୍ଦେ ତେଣୁ ସ୍ନେହଶୀଳ ପ୍ରାଣ
ଥର ଜଟଠ ମହାକାଳ ତୁମରି ସୃଷ୍ଟିରେ
ପୃଥ୍ବୀରେ ଚିର ସତ୍ୟ ହେଲେହେଁ ମରଣ ।



# କନ୍‌ଟ୍ରୋଲ

• ମଧୁସୂଦନ ଦାସ

ଗତ ଫାଲ୍‌ଗୁନୁ　　ଅଂଧାର ହେଲା ;
ସାଥୀ ଆମର,　　ଘୁଞ୍ଚି ଆମର—
କଇତ ହେଲା,　　ଅଂଧାର ହେଲା,
ହେଲ ଅଂଧାର,　　ଅଂଧାର ହେଲା ।
ଆକାଶବାଣୀ　　ଘୋଷଣା କଲା,
କାଗଜବାଲା　　ମିଛ କହିଲା,
ପ୍ରତେ ନୋହିଲା

କିଏ କହିଲା　　କେମିତି ହେଲା
'କନ୍‌ଟ୍ରୋଲ' ଆମ,　　ଆମ 'କନ୍‌ଟ୍ରୋଲ,'
ଏତେ ସଞ୍ଜଳ　　ଛଦାପ୍ସୁ ନେଲା !!
ମନେ ପଡ଼ିଲେ　　ଚୋହ୍ଲର କଥା
ଘୁରୁଛି ମଥା,　　କେତେ ଯେ କଥା,
ନିଦଇ ଦେଇକା　　କଥାରେ କଥା
ନପିଛୁଁ କେତେ,　　ହସିଛୁଁ କେତେ
ଏବେ ସେ ହସ,　　ହସର କଥା
ଦେଉଛନ୍ତି ଯାହା　　ମରମ ବ୍ୟଥାରେ
ମରମ ବ୍ୟଥା ॥

ଦୁଇ ବଜର　　ଦୁନଆଟାକୁ
ଭଲ ପାଇଲୁ　　ପାଇଲୁ ଭଲ,
ଭଲ ପାଇ ତୁ　　କସ ପାଇଲୁ ?
ଭେଲ ପାଇଲୁ ନା　　ଭଲ ପାଇଲୁ ?
ଏଇଠି ଭଲ ନା　　ସେଇଠି ଭଲ ?
ଛାଡ଼ି ଭୁଲି ଗଲୁ　　ଦୁନଆ ଖେଳ
ତୋଅର ଭଲକୁ　　ଆମର ଭଲଟ
ହୋଇଲା ନାହିଁ ।
ଆମର ମାଆର　　କୋଳ ଖାଲି ହେଲା
ପୂରବ ନାହିଁତ,　　ପୂରବ ନାହିଁ ॥

—o—

# ମହାଯାତ୍ରା

• ପଞ୍ଚାନନ ଦାଶ

କନ୍‌ହେଇରେ ! ତୋ' ପାଇଁ ତ ସବୁ ଦ୍ୱାର ଖୋଲାଥିଲା
ତୁ କେମିତି-ହଠାତ୍ ଅଟକି ଗଲୁ
ସେ ନିଷିଦ୍ଧ କୋଠରୀରେ,
ଯେ କୋଠରୀ ଦ୍ୱାର ଆଜି
ପାରିବୁନି ଆମେ ଖୋଲି ଆମ ଜୀବନରେ ।
କନ୍‌ହେଇରେ ! ତୋ ବାଟ ଚାହିଁଛି ସିଏ ତୋ' କଥାରେ ରଣ୍ଡି ହେଇ
ଯାହାକୁ ତୁ' ନେଇଥାନ୍ତୁ ତୋ ନବବଧୂଟିକୁ ଆଗାମୀ ଦିନରେ,
ତା' ଆଖିରୁ ଲୁଣି ଲୁହ ଶୁଖିବା ଆଗରୁ
ଆପଣା ବାଟରେ ଆପେ ଗୋଡ଼ ଦେଇ ଚାଲିଗଲୁ,
ବୋଝ ତୋର ଝୁରି ମରେ ବେଦନାର ପାହାଡ଼ ମଝିରେ ।
କନ୍‌ହେଇରେ ! ବ୍ରହ୍ମାଣ୍ଡ ଗୋଲକଟା ପାଣିରେ ଗୋଡ଼ ଖେଳେଇଲୁ
ଏକାବେଳେ ବାଇଶି ଚାନ୍ଦ୍ରର ଭଳି ଚାଲିଗଲୁ ତଳକୁ ତଳକୁ
ତକାଆଖି ତୋ' ଆଖିରେ ଭେଲକି ଲଗେଇ ଦେଲା
ଦଧି-ନଉଟରୁ କେଉଁଠି କାଢ଼ି ନେଲା ମହାସମୁଦ୍ରକୁ ;
ଅକାଳରେ ତୋ' ସାମ୍ରାଜ୍ୟ ଲୋଥରକ ଭୁଷୁଡ଼ି ପଡ଼ିଲା
ଶବ୍ଦରେ ତେ' ତାରକସୀ ଧାତୁଖାନ
ଜଳକା ଆଖିରେ ଏବେ ଜଳ-ଜଳ ତୋ ଚେଣ୍ଡି ଚାହିଁଲା ।
କନ୍‌ହେଇରେ ! ଆଜି ଖାଲି ବାରବାର ମନେ ପଡ଼େ
ଆଖିରେ ଲହଡ଼ି ମାରେ
ତୋ' ବୃନ୍ଦାଣୀ, ତୋ' ଭସାର, ତୋ' ବଂଶୀବାଲା
ମନେ ପଡ଼େ "ଜନ୍ମଭିଟା" ଶାଗର ତରଙ୍ଗ,
ତୁ' କ'ଣ ଶପଥ ନେଇ ଆସିଥିଲୁ
"ଜମାଜମି" ଅଧା କରି ଏ' ପୃଥିବୀ ମୋହ ଛାଡ଼ି
ଫେରିବାକୁ ସାଥୀ କରି ଏକାକୀ ଅଂଧାର ??

—o—

# ଗୋଟିଏ ସୂର୍ଯ୍ୟାସ୍ତର ସ୍ମୃତି

• ଗୌରୀଶଙ୍କର ଶତପଥୀ
• ରବୀନ୍ଦ୍ରନାଥ ଦାସ

ଇସ୍, କି କଦର୍ଯ୍ୟ ଦୃଶ୍ୟ ଏଠି
କାଳର ଏ' ମଶାଣିରେ ଲକ୍ଷ ଲକ୍ଷ ସୂର୍ଯ୍ୟଙ୍କର ଶବଦାହ ଭଳି
କି ବୀଭତ୍ସ ଦୃଶ୍ୟ ସତେ !
କିନ୍ତୁ ଏଥି ନାହିଁ କିଛି ଆଶ୍ଚର୍ଯ୍ୟ ହେବାର ।

ଆଶ୍ଚର୍ଯ୍ୟ ଏଥିରେ କିଂତୁ ସନ୍ଧ୍ୟା ହେବା ବହୁତ ପୂର୍ବରୁ
ବିଜୁ ଓ ବିଚାଷ ଡେଇଁ
ସଂଗ୍ରାମରେ ରତ ଥିବା ଏଇ ଆମ କନ୍‌ହେଇର
ଶବଦାହ ହେଲା ॥

ହେ କନ୍‌ହେଇ ! ତୁମେ ଏକ ଉତ୍କଳ ସୂର୍ଯ୍ୟର ଜ୍ୟୋତି ।
ଅର୍କକ୍ଷେତ୍ର ନିସ୍ତନିଆ ଏଠି
କୋଣାର୍କର ମୂର୍ତ୍ତିମନ୍ତ ସତ୍ତା ପୂର୍ବରୁ
କିଏ ସତେ ଭାବିଥିଲା ଅସ୍ତାଚଳେ ତୁମେ ଅସ୍ତମିତ ।

ରହିଗଲା ଏ କୋଣାର୍କ ଅପୂର୍ଣ୍ଣ ଏଠାରେ
ଅସମୟେ ଏ ସୂର୍ଯ୍ୟର ଶବଦାହ ହେଲା
ସନ୍ଧ୍ୟା ଏବେ ହେଲା ବୋଲି ସୂର୍ଯ୍ୟର ଗୌରବ କିନ୍ତୁ
ଟଳେ ହେଲେ ଲିଭିଲା ଯେ' ନାହିଁ
ହେ' କନ୍‌ହେଇ ଗୋପପୁରେ କିନ୍ତୁ ତୁମ ମୋହନ ମୁରଲୀ
ରହି ରହି କାଂଦେ କହିଁ କହିଁ ॥






## ॥ ଭଲପର ଭଲ ॥

ଭଲରେ ଭଲ, ଭଲରେ ଭଲ
କେବଳ ଭଲ, ପାଇବା ଭଲ
ଭଲରେ ଭଲ, ଭେଲରେ ଭଲ
ଏଇଠି ଭଲ, ସେଇଠି ଭେଲ
ସେଇଠି ଭଲ, ଏଇଠି ଭେଲ
ସବୁଠି ଭଲ, ସବୁଠି ଭେଲ
ସବୁଠୁ ଭଲ, ପାଇବା ଭଲ
ତୋହର ଭଲ ମୋହର ଭଲ
ଯାଙ୍କ ଇଚ୍ଛାକୁ ଭେଲରେ ଭେଲ ।

ଯାହା ଖୋଜିବୁ ପାଇବୁ ନାହିଁ
ଯାହା ପାଇବୁ ଖୋଜିବୁ ନାହିଁ
ମୁଁ ଖୋଜୁଛି ପାଇବା ପାଇଁ
ତୁ ପାଉଛୁ ଖୋଜିବା ପାଇଁ
ପାଇବା ପାଇବା ସବୁ ପାଇବା
ଭଲ ପାଇବା ।
ପାଇବୁ ଭଲ ଖୋଜାରେ ଥରେ
ଖୋଜା ତୁ ମତେ

ଥରେ ଖୋଜିଲେ ମତେ ପାଇବୁ
ମତେ ଖୋଜିଲେ ତୋତେ ପାଇବୁ
ମୁଁ ଖୋଜିଲେ, ତୁ ଖୋଜିଲେ, ମୁଁ ଖୋଜିଲେ
ପାଇବ ଭଲ ସବୁ ପାଇବ
ଭଲ ପାଇବ; ପାଇବ ଭଲ
ତୋହର ଭଲ, ମୋହର ଭଲ ।

ଦୁଇଦନର ଦୁନଆଁଟାରେ
ମୁଁ ଖୋଲୁଛି, ତୁ ଖୋଲି ଦେ
ଗଣ୍ଠି ଖୋଲିଦେ ଗଣ୍ଠିକୁ ମିଶା
ଗଣ୍ଠିରେ ମୋର, ଗଣ୍ଠିକୁ ତୋର
ତୋହର ଗଣ୍ଠି ମୋହର ଗଣ୍ଠି
ମିଶାଇ ଦେବା ଭଲ ପାଇବା—
ପାଇବା ଭଲ ।
ତୋଅର ଭଲ ମୋର ପାଇବା
ମୋଅର ଭଲ ତୋର ପାଇବା
ଭଲ ପାଇବା ଭଲ ପାଇବା
ତାକ୍‌ଧିନାଧିନ୍ ଭଲ ପାଇବା
ଭଲ ପାଇବା— ଭଲ ପାଇବା
ପାଇଲେ ଭଲ, ସବୁ ପାଇବା
ସବୁ ପାଇବା, ସବୁ ଖାଇବା, ସବୁ ପାଇବା ।

—o—

## ॥ ସୁରକ୍ଷା ॥

ମୋର ବା ଭୟ କାହାକୁ ? ଯଦବା ବୋମ୍ବେଇ ଲକ୍ଷ
ମୋ ନସ୍ତ୍ର ସାଇକେଲ ଉପରକୁ ମାଡ଼ିଆସେ, ମୋ
ନାକ ଉପରେ ନଇଁ ପଡ଼େ କାହାର ମୁଷ୍ଟିବଦ୍ଧ ହାତ,
ବଜାର ଦରର ଟିଣ ତଲୱାର ଲହ ଲହ ଜିଭ କାଢ଼ି ମୋତେ
ଭୟ ଦେଖାଏ, ଅନେକ ଜୀବାଣୁ ଉଡ଼ ଉଡ଼ ମୋ' ଝର୍କାକୁ
ଆସନ୍ତି, ମଇଁଷି ପିଠିରେ ଯମ ଚଢ଼ି ଆସି ମୋ ଦୁଆରେ
ଧକ୍କା ମାରେ । ତଥାପି ମୋର ବା ଭୟ କାହାକୁ ?
ମୁଁ ସମ୍ପୂର୍ଣ୍ଣ ଭାବେ ସୁରକ୍ଷିତ କାରଣ ମୋ ବାଁରେ ଜନ୍ମ
ମାଳ ଆଖିର ଅଭିଶାପ ଓ ଡାହାଣରେ ବୋଉ ଆଖିର
ଆଶୀର୍ବାଦ ।

—o—

# ॥ ମୋ ଠାରୁ ଦୂରକୁ ॥

ଦୂର ଦିଗ୍‌ବଳୟ ତଳେ ନୀଳ ନୀଳ ପାହାଡ଼ର ଆମନ୍ତ୍ରଣ
କେତେବେଳେ ଧାଇଁ ଆସି ମୋ ସ୍ୱପ୍ନରେ ଛୁଣ୍ଡାହୁଏ
ଗଛ ଲତା ଧୀରେ ଆସି ପଥ ଓଗାଳନ୍ତି
କେଉଁ ଅଜଣା ରାଜ୍ୟରୁ ଝରଣା ବି ଆସି ଆସି କୁଳୁ କୁଳୁ ଗୀତ ଗାଏ
ଚୁପ୍ ଚାପ୍ ଧୀର ସ୍ଥିର ହୋଇ ମୁଁ ବସି ଅନୁଭବ କରେ ।

ପାହାଡଛକୁ ସରୁ ସରୁ ବଙ୍କା ବଙ୍କା ଉଠାଣି ଗଡାଣି ରାସ୍ତା
ଧୂଆଁଯାଏ ନିର୍ଜନତା ବୁଣି ବୁଣି ଅନେକ ପଛକୁ ।
ବହୁ କୋଳାହଳ ଆଉ ସମ୍ମେଳନୁ ଫେରୁଥିବା କବି ଲେଖକର
ମୁଣ୍ଡ ଡେଇଁ ଖୁବ୍ ଦୂର ଜଙ୍ଗଲରେ ଦେଖେ
ଜଣେ କିଏ ଚୁପଚାପ ବସିରହେ ପୁଣି
ପାହାଡରେ ଛୁଣ୍ଡା ହୋଇ ସୂର୍ଯ୍ୟାସ୍ତ ବି ଦେଖେ
ସିଏ ପୁଣି ଝରଣାର କୂଳେ କୂଳେ ଚୁପ୍‌ଚାପ୍ ଚାଲିଯାଏ ଅନେକ ଦୂରକୁ ।

ସମ୍ମେଳନୁ ଫେରୁଥିବା ଲେଖକର ନିମଗ୍ନତା କୋଳାହଳ ଅତିକ୍ରମି
ଜଣେ କିଏ ଚାଲିଯାଏ ଅନେକ ପାହାଡ଼ ଟପି
ଅନେକ ଝରଣା ଡେଇଁ ଅନେକ ଶୂନ୍ୟତା ନେଇ ଅନେକ ଦୂରକୁ
ହଠାତ୍ ମୁଁ ଅନୁଭବ କରେ ଆଉ ଚମତ୍କୃତ ହୁଏ
ମୋ ଅନ୍ତର ମୁଁ ବାନ୍ଧି, ମୋ ସ୍ଥାନ ଖାଲି ।

—o—

## ଏଗଉଣ୍ଡ ଓ କଲେଜ

ବନ୍ଧୁହେ, ଏଠାକାର ସବୁ ଦର୍ଶନୀୟ ସ୍ଥାନ ବୁଲି ଦେଖି ସାରିଲା ପରେ ଏଇଠି ଟିକିଏ ଅଟକିଯାଅ । ଦେଖୁଛ ଏ ବିରାଟ କୋଠାଟିକୁ ? ଏଇଟା ପରା କଲେଜ । ତୁମ ଆଖି କ୍ୟାମେରାରେ ଏହାର କିଛି ଫଟୋ ନେଇନିଅ । ଟିପାଖାତାକୁ ଖୋଲିପାର ।

କହିପାରିବ ଏ ବିଦ୍ୟାପୀଠର ରଙ୍ଗ ? ଏଁ ହଳଦିଆ ? ହେଃ ଦେଖିପାରୁନ । ଏହାର ପ୍ରତ୍ୟେକ ପରମାଣୁ ତାରୁଣ୍ୟର ରଙ୍ଗରେ ରଙ୍ଗୀନ । ତେଣୁ ଏଇଠି କେତେ ସନେଟ୍ ଗୁଣୁଗୁଣେଇ ଉଠେ, କେତେ ଏଲିଜି ମଧ୍ୟ ଅସ୍ପଷ୍ଟ ସ୍ୱରରେ ବିଳପି ଯାଏ । କେତେ ଅନୁରାଗର ସ୍ୱର ଏଇଠି ଧୀରେ ଧୀରେ ମୁଣ୍ଡ ଟେକେ । କେତେ ବିରହର ଧ୍ୱନି ବି ଏଇଠି ଧୀରେ ଧୀରେ ହଜିଯାଏ । ଏ ମହାବିଦ୍ୟାଳୟର କେତେ ଦରିଦ୍ର ଛାତ୍ର ଗ୍ରାଜୁଏଟ୍ ହେବା ପାଇଁ ବିନା ଅନ୍ନରେ ଜୀବନ ଯୁଦ୍ଧକୁ ଲମ୍ଫ ଦିଏ ପୁଣି କେତେ ଧନିକ ଛାତ୍ର ବି ଜୀବନ ଯୁଦ୍ଧ ପାଇଁ ଟେରେଲିନ୍ ଟେରିକଟ୍‌ରେ ସଜ୍ଜିତ ହୋଇ ବାହ୍ୱାସ୍ଫୋଟ ମାରେ ।

ଉତ୍ତରକୁ ଦେଖ । କଲେଜ ବାରଣ୍ଡାରେ କେତେ ନଳୀପେଣ୍ଟ ଓ ଶର୍ଟ ସାଲୱାରର ଭିଡ଼ । ସହଶିକ୍ଷା କିନା ! ଦେଖିବ ସହଶିକ୍ଷାର ରୋମାନ୍ସ ? ଥରେ ଦୃଷ୍ଟି ଦିଅ ଶ୍ରେଣୀର ଦ୍ୱାରବନ୍ଧ ଉପରକୁ । ପୃଥିବୀର ବିଗତ ମହାସମରରୁ ଖଣ୍ଡେ ଛୁଟିକି ଆସିଛି ଯେପରି, ଆରମ୍ଭ ହୋଇଛି ତୀବ୍ର ସଂଘର୍ଷ ! ଆରେ ବୁଝି ପାରୁନ ? ଏଇ ବର୍ତ୍ତମାନ ସଂଘର୍ଷ ପାଇଁ ଷ୍ଟେସନର ଘଣ୍ଟା ଭଳି ଘଣ୍ଟା ବାଜିଲା ପରା । ଏ ସଂଘର୍ଷଟା ପ୍ରବେଶ ଆଉ ପ୍ରସ୍ଥାନ ମଧ୍ୟରେ । ପ୍ରବେଶ ତାର ବିଜୟ ପ୍ରତିଷ୍ଠା ପାଇଁ ବାଧା ଶମୂଠା ପେଲାପେଲି ଆରମ୍ଭ କରିଛି ; ପ୍ରସ୍ଥାନ ବି ତାର ପ୍ରତିରୋଧ କରି ଧସ୍ତାଧସ୍ତିର ଶରଣ ପଶିଛି । ବେଶ୍ ଅନେକ ସମୟ ପରେ ସନ୍ଧି ସ୍ଥାପିତ । ଫଳରେ କାହାର ଧୋବଫରଫର ଜାମାରୁ ଇସ୍ତ୍ରୀ ସସମ୍ମାନେ ପ୍ରସ୍ଥାନ କରିଛି, କାହାର ନୂଆ ଟେରିକଟ୍ ପେଣ୍ଟର ଅବସ୍ଥା ସାଂଘାତିକ, ପୁଣି କାହାର ବି ପଟେ ଚପଲ ହାଜିବାଙ୍କର

ଆରପଟେ ଏବେବ ଅପେକ୍ଷା କରୁଛି । ତାହାର ମଧ୍ୟ ଖାତାର ଉପର ପୃଷ୍ଠା ଦଠାବୁ ନରୁଦ୍ଧି ଷ୍ଟ । କନ୍ତୁ କଣ ପାଇଁ ଏ ଗାଇଲ୍ଲ ପ୍ରଦର୍ଶନ ? ଆରେ ବୁଝି ପାରୁନ ? 'ଗାରଭୋଗ୍ୟା ବସୁନ୍ଧର' ପଢ । ଅର୍ଥାତ୍ ଗାରମାନେହିଁ କେବଳ ବସୁନ୍ଧରା ନାମ୍ନୀ ସୁନ୍ଦରୀ ସ୍ତ୍ରୀଙ୍କୁ ଭୋଗ କରିପାରନ୍ତି । ଏଁ ତଥାପି ପରିଷ୍କାର ହେଉନାହିଁ କଥାଟା ? ତେବେ ଦୃଷ୍ଟିଦିଅ ଏଇ ଦଳ୍‌ର ସାମ୍ନା ବେଞ୍ଚରେ ବସିଥିବା ଶତଳା ପିଲାଟିକୁ । ମନେ ମନେ ଦେବାନନ୍ଦ ଏକା ? ଗୋଟିଏ ମନରେ ବସି ପିଇ ଯାଉଛି ଅଧ୍ୟାପକଙ୍କ ମୁଖନିଃସୃତ ବାଣୀ । କନ୍ତୁ ଯେତେବେଳେ ଅଧ୍ୟାପକଙ୍କ ଆଖିଡୋଳା ପିଠଠିଷ୍ଟ ଭୁଏର ମୁଖମଣ୍ଡଳ ଉପରୁ ବଳ୍ପିର କଳାକଲା ଅକ୍ଷର ଉପରକୁ ଓହ୍ଲାଇ ଯାଉଛି, ସେତେବେଳେ ତାର ଆଖି ବି ଓହ୍ଲାଇ ଯାଉଛି ସାମ୍ନା ବେଞ୍ଚରେ ବସିଥିବା କଳ୍ପଲଟଣା ଆଖିର ଉପତ୍ୟକାକୁ । ମାଷ ହାସ୍ୟ ! ଏ ଯେ ଇଂରାଜୀ ଅଧ୍ୟାପକ ! ବେଶ୍ ଭଲ କରି ଦୁଇପଦ ଶୁଣାଇ ଦେଲେ ଗୁଡ଼ ଆଉ ଗୁଡାଖୁ ମିଶାଇ !

ବନ୍ଧୁବର, ଏପଟକୁ ଟିକେ ପାଦ ଚଳାଅ । ହିଁ ହିଁ ଏଇଟା କଲେଜ କେଣ୍ଟିନ । କେତେ ଭିଡ଼ ଜମି ଉଠିଲଣି ସେଇଠି । ଇମ୍ପ୍ଲେଟର ଟୁଂ ଟାଂ ଜାପାନୀ ସିଉଜକ ସହ ସୁଆଦିଆ ଜଳଖିଆର ବାସ୍ନା 'ଆନନ୍ଦ ଅର୍ଦ୍ଧ ଭୋଜନଂ' ହୋଇ ସାରିଲାଣି । ଦଳେ ଗୁଲ ଖାଇବା ଟେବୁଲରେ କେଉଁ ଏକ ଗମ୍ଭୀର ଆଲୋଚନାରେ ବ୍ୟସ୍ତ । ଗୁ' ଜମ୍ ଗୁରମିନାର ଗାନ୍ଧରେ ଉଷ୍ଟ୍ରନ୍ ହୋଇ ଉଠିଲଣି । ତଥାପି ଆଲୋଚନାର ଶେଷ ନାହିଁ । ସେମାନେ ଟେବୁଲ୍‌ର 'ପ୍ରେମପ୍ରକାଶ'ର ଫୁଲା ଗୁଲାଛି । ଉତରମଟି 'ଏ ଦିଲ୍ ଦିବାନା ହୋ ··'ରେ ମସ୍‌ଗୁଲ ଦଳେ । ଅନେକ ଅନୁରୋଧ ପରେ ଗାୟକ ଦୁଇଥର ଗଳାଖିଙ୍କାରି ଅତିବୃଦ୍ଧ ଧୀରେ ଧୀରେ କେଉଁ ଏକ ଅଦ୍ଭୁତ ରାଗିଣୀରେ ସ୍ୱର ଉତ୍ତୋଳନ କରୁଅଛନ୍ତି । ସେ ବର୍ତ୍ତମାନ ଷୋଳକଳାରେ ରଫି । ଅନ୍ୟ ଅନୁଚରମାନେ ଟେବୁଲ ବାଡେଇ ଏତେ ଜୋର ମୃଣ୍ଡ ହଲେଇବାକୁ ଆରମ୍ଭ କଲେଣି ଯେ, ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ମେଡିକେଲ ଷ୍ଟୋର ନ ଗଲେ ଚଳିବନି । ଆଉ ଏମିତେ ନୂଆ ନୂଆ କଲେଜକୁ ପଶିଥିବା ପିଲାଟିକୁ ଦେଖ । ଗାଧ ପିଠିରେ ବାଘର ପୋଷାକ ! ଫଳୀଭେଣ୍ଟ, ଚଉଡ଼ା ବେଲ୍ଟ, ପଏଣ୍ଟେଡ୍ ସୁ, ଡାହାଣ ହାତ ପାପୁଲିର ପିଠି ଉପରେ ରିଷ୍ଟୱାଚ୍ ; ପୁଣି ତାଙ୍କର ଉର୍ଜାରେ ଧରିଥିବା ହାତରେ ଚୁଡ଼ା ହୋଇ ହାତର ସିଗାରେଟ୍‌କୁ ଦୁଇ ଆଙ୍ଗୁଠି ଭିତରେ ଚାପି ଶୋଷି ନେଉଛି । ଜଣା ପଡ଼ୁଛି ଅନଭ୍ୟସ୍ତ, ନ ହେଲେ ଏମିତି ବେଡମ ହୋଇ କାଶନ୍ତା କାହିଁକି ?

ଓହୋ ସେଇଟା ? ସେଇଟା ପଢ଼ା କମନ୍‌ରୁମ୍ ! କମ୍ପ୍ଲିଟ ଗ୍ଲାସ, ନୋଟିସବୋର୍ଡ, ଅଧାଚିରା ଚଟିକା ଖବର କାଗଜ, ମଜାଗଜ୍, ସିନେମା ଖବର ସବୁ ସେଇଠି । ଏଇ ସେ କୋଣରେ ମେଞ୍ଚାଏ ପିଲା ଖବର କାଗଜର ସିନେମା ବିଭାଗ ପୃଷ୍ଠା ଉପରେ ହୁମୁଡ଼ିଇ

ପଡ଼ିଛନ୍ତି । ସେ ପଟରେ ଦଳେ ବେଙ୍ଗ ଏକ ବାଉଁଶରେ ବାଜି ମଦ୍ୟପର ନାଚୁଛନ୍ତି । ଲମ୍ବା କଲ ରଖିଥିବା ପିଲା କେତେ ଜଣ ଟେବୁଲ ଟେନିସ୍ ଭିତରେ ହଜି ଗଲେଣି । ଏଠି ଦଳେ ନୋଟିସବୋର୍ଡରେ ଲଗାଯାଇଥିବା ନୂଆ ନୋଟିସ ଦେଖିବା ପାଇଁ ଧସ୍ତାଧସ୍ତି ଆରମ୍ଭ କଲେଣି । କେତେ କେରମ୍‌ବୋର୍ଡ ଗୁଣ୍ଡପଟେ ପ୍ରବଳ ପାଟିଗୁଣ୍ଡ । ଆଜି ଏଠାରେ ଦଳେ ଚେସର ଘୋଡ଼ାହାତୀ, ରଜାମନ୍ତ୍ରୀ ନେଇ ପୃଷ୍ଠରେ ମାତି ଗଲେଣି । ଉଭୟ ପକ୍ଷ ମୂର୍ତ୍ତିରେ ଚିନ୍ତାର ଗଭୀର ରେଖା । କପାଳ କୁଞ୍ଚିତ ଭ୍ରୂ ଉଠିଥିବ, ମୁଖମଣ୍ଡଳର ଶରଦର୍ଣ୍ଣ ହାତ ପାପୁଲି ଉପରେ ନଥିବ । ଯୁଦ୍ଧରେ ପରାଜିତ ନେପୋଲିୟନ ମୂର୍ତ୍ତିରେ ବି ଏ ପ୍ରକାର ଚିନ୍ତାର ରେଖା ଅଙ୍କା ହୋଇଥିବ କି ନା ସନ୍ଦେହ ।

ସେପଟେ ବ୍ଲକଟି ପରା ବିଜ୍ଞାନ ବିଭାଗ । ଦେଖୁଛ ଲେବୋରେଟରୀରେ କେତେ ବୈଜ୍ଞାନିକଙ୍କ ପରୀକ୍ଷା ନିରୀକ୍ଷା । ନିଉଟନ, ଗାଲିଲିଓ, ଜଗଦୀଶ ଏଇମାନେହିଁ । ମଲ୍ ବେଙ୍ଗ, ଏସିଡ୍, ଟେଷ୍ଟଟିଉବ, ଯନ୍ତ୍ରପାତି ଭିତରେ ହଜିଯାଇଛନ୍ତି ସେମାନେ । କଳାଛାତ୍ର ଯେତେବେଳେ ଏକ ଫୁଲର ବାହ୍ୟସୌନ୍ଦର୍ଯ୍ୟରେ ତନ୍ମୟ ହୋଇ ବର୍ଣ୍ଣନାମୂଳକ କବିତା ଲେଖେ, ଏମାନେ ସେତେବେଳେ ସେଇ ଫୁଲକୁ ଛିନ୍‌ଭିନ୍ କରି କାଟି ତାର ଅଙ୍ଗପ୍ରତ୍ୟଙ୍ଗର ବର୍ଣ୍ଣନାର ଚିତ୍ରରେ ସେମାନଙ୍କ ଲମ୍ବାଲମ୍ବା ଖାତା ଭରି ଦିଅନ୍ତି ।

ଆରେ, ତୁମେ ଏତେ କାନ୍ଥ, ବାଡ଼, ପାଚେରିଆଡ଼େ ଚାହୁଁଛ କାହିଁକି ? ସେଗୁଡ଼ା ପରା ଐତିହାସିକ ନାମ । ସେ ନାମ ମହାକାଳର ଖାତାରେ ଅସ୍ପଷ୍ଟ ହୋଇ ଗଲେ ବି ଏ ପାଚେରି କାନ୍ଥ ଦେହରେ କାଳଜୟୀ ହୋଇ ରହିବ । କାରଣ ସେମାନେ ଏ କଲେଜ ଇଲେକ୍‌ସନ ଜଣେ ଜଣେ ମହାରଥୀ । ଆଉ ଏ ଝିଅଙ୍କ ନାମ ? ସେମାନେ ଏ କଲେଜର ବିଉଟି କୁଇନ୍, ଗ୍ଲାମେରଇନ୍ ଇତ୍ୟାଦି । ପ୍ରତିବର୍ଷ ପ୍ରତିମୁହୂର୍ତ୍ତ କାନ୍ଥ ପାଚେରିରେ ଏ ନାମଗୁଡ଼ା ଲିଖିତ ହୁଏ । ତୁମେ ଯଦି କେବେ ଶ୍ରେଣୀ ଭିତର କଳାପଟା ଉପରେ ଆଖି ପକାନ୍ତ, ତାହାହେଲେ ଦେଖନ୍ତ କେତେ କିସମର ଛବି, କେତେ ପ୍ରକାର ନାମ, କେତେ ପ୍ରକାରର କବିତା ସେଇଠି ଲେଖା । ସହଶିକ୍ଷାର ରୋମାନ୍‌ସ ସବୁଆଡ଼େ ।

ବନ୍ଧୁ ହେ, ଏଥର ଫେରିଆସ ଫାଟକ ପାଖକୁ । ସେଠାରୁ ବୃଦ୍ଧିଜୀବି ବରଗଛମୂଳର ପାଚେରି ଉପରକୁ । ସେଇଠି ଗୋଟିଏ ବଶିଷ୍ଟ ଦଳ ସେମାନଙ୍କ ବିଶେଷ ଆଲୋଚନାରେ ମସଗୁଲ । ଦୁନିଆର କାହାରିକୁ ସେମାନଙ୍କ ଭୟ ନାହିଁ ।

କାରଣ ସେମାନେ ଏ ଯୁଗର ତରୁଣ । ଛାତ୍ର-ଛାତ୍ରୀ, ଅଧ୍ୟାପକ-ଅଧ୍ୟାପିକା, ବାଦଗଳ - ସମସ୍ତେ ଏମାନଙ୍କ ମନ୍ତବ୍ୟର ଶିକାର ହୁଅନ୍ତି । ଦେଖୁଛ ଗୋଟିଏ ଝିଅ ଲମ୍ବା ବେଣୀ ଦୋହଲାଇ ଫାଟକ ଭିତରକୁ ପ୍ରବେଶ କରୁଛି । ସେ ଦଳରୁ ଜଣେ ବଡ଼ ପାଟି କରି ସାଙ୍କେତିକ ଭାଷାରେ କଣ ଗୋଟେ କହିଦେଲା । ସମସ୍ତେ ହୋ ହୋ ହସି ଉଠିଲେ । ହସ ହସେ ଶେଷ ହେଲା । କିନ୍ତୁ ଝିଅଟି ସମ୍ପୂର୍ଣ୍ଣ ନୀରବ । ପାହାଡ଼ ଉପରକୁ ଟେକା ପକାଇଲେ ଟେକା ପିନା ଭାଂଗିଯାଏ, ପାହାଡ଼ର କିନ୍ତୁ ନିର୍ବିକାର । ଏଇ ତରଳ ଝିଅ ସେମାନଙ୍କ ସାମ୍ନାଦେଇ ଚାଲିଯାଉଛନ୍ତି । ତା ଭିତରୁ କେହି ସୁଲେଖା କାଳି ରଙ୍ଗର ମୁଣ୍ଡି ଉପରେ ମୋଟେ ଚୂନ କାମ କରିଛି, କେହି ଏଣ୍ଡ଼ୁ ଆଖି କୋଣରେ କଜ୍ଜଳର ଚଳଣ୍ଡ଼ାର ଆଙ୍କିଛି, କିଏ ମୁଖଭ୍ରୂଣର ଉପତ୍ୟକାକୁ ଅସଜଡ଼ା ଚୂର୍ଣ୍ଣକୁନ୍ତଳ କେତୋଟି ଲମ୍ବାଇ ଦେଇଛି, କିଏ ହଂସୁଳି ଚାଲିର ସୁନାମ ଅର୍ଜିବା ପାଇଁ ଅଣ୍ଟାଭଳ ଦୋହଲାଇ ଚାଲିବାର ଅଭ୍ୟାସ କରୁଛି, କିଏ ବାରମ୍ବାର ନିଜ ଦେହର ବକ୍ଷର ଉପତ୍ୟକା ଉପରକୁ ଏକ ବିହଙ୍ଗମ ଦୃଷ୍ଟି ବୁଲାଇ ନେଉଛି । ସେମାନଙ୍କ ମଧ୍ୟରୁ କେତେକ ମନେ ମନେ ଭାବନ୍ତି କୁଇନ୍, କେତେକ ମନେ ମନେ ବ ମିସ୍ ଇଣ୍ଡିଆଗରସ୍ । କିନ୍ତୁ ପାଚେଶ ଉପରୁ ସେ ଦଳର ଗୋଟିଏ ପିଲା ପାଟିରେ ଆଙ୍ଗୁଠି ପୁରାଇ ଛୁଇଁଲା ଗୋଟେ ଲମ୍ବା ହୁଇସିଲ । ହସ୍ତୀ ବନହରିଣୀ ଯେପରି ସିଂହର ଗର୍ଜ୍ଜନରେ ପଛକୁ ଟିକେ ଫେରି ଚାହେଁ, ସେହିପରି ଟିକେ ଅର୍ଦ୍ଧବୃତ୍ତରେ ଚାହିଁ ଆଗକୁ ଆଗେଇ ଚାଲିଲେ ପଥିର ଦଳ ।

ସେପଟକୁ ଟିକେ ଚାହଁ । ଦେଖ ସେ କଦଳୀ ବିକୁଥିବା ଲୋକଟାର ଅବସ୍ଥା । ଉଜନେ କଲେଜ ଟୋକା ଖିଆ ଖିଆ ଛାଡ଼ି ଦୁଇ ଡଜନ କଦଳୀ ଆତ୍ମସାତ୍ କରି ଦେଲେଣି । ଲୋକଟି କିଛି କହିବାକୁ ପାଟି ମେଲା କରିବା ପୂର୍ବରୁ ତଳେ ତାକୁ ଇଂରାଜୀ-ହିନ୍ଦୀ-ଓଡ଼ିଆ ଅଭିଧାନରୁ ବଡ଼ବଡ଼ ଶବ୍ଦ ବାଛି ତା କାନରେ ପୁରାଇ ଦେଲେଣି । ସେ ପଟରେ ଆଉ ଜଣେ, ଚିନାବାଦାମ ଦୋକାନୀ ପାଖରୁ ଦଶ ଇଞ୍ଚର ଚିନାବାଦାମ ନେଇ ତାକୁ ଦଶଟଙ୍କିଆ ନୋଟ ଦେଖାଇ ଦେଉଛି । ଦୋକାନୀ ପାଖରେ ଖୁଚୁରା ନାହିଁ କହିବାରୁ ପିଲାଟି ଖୁସି ମନରେ ବାଦାମ ଚୋବେଇ ବୁଲୁଛି ।

ଏଠୁ ଚାଲିଯିବା ଆଗରୁ ଶେଷଥର ପାଇଁ ଚାହିଁଦିଅ ବଗିଚା ଆରପଟେ ଗାର୍ଲସ୍ କମନ୍‌ରୁମ୍ ଆଡ଼େ । କିଏ କ୍ଲାସର ସୁନ୍ଦରୀ ଝିଅ ସଙ୍ଗେ ବେଶୀ ସମୟ କଥାବାର୍ତ୍ତା ହୋଇ ପାରିବ ସେ କଥା ନେଇ ପ୍ରତିଯୋଗିତା । ତେଣୁ ସେ କମନରୁମ ପାଖରେ ଇଷ୍ଟମୀ ବିଆ ନଳୀଚେଷ୍ଟ, ସୁନ୍ଦର ସୁନ୍ଦର ଡେକ୍ ପାର୍କ ସିନେମା ଷ୍ଟାର ହେୟାରକଟିଂର ହାଟ ଲାଗି ଯାଇଛି ।

ବନ୍ଧୁତ୍ୱ, ଏପଟରେ ତାରୁଣ୍ୟର କାମନା, ଉଦ୍ଦାମତାର ଅସ୍ଫାଳନ, ଡ୍ରେନ-ପାଇପ୍‌ପେଣ୍ଟ, ଚଉଡ଼ା ବେଲ୍ଟ, ଲମ୍ବାକଲି, ସେକ୍ସ ସିନେମା ପଲିଟିକ୍‌ସର ଆଲୋଚନା ; ସେ ପଟରେ ଚପଳତାର ଢେଉ, କେଶର ଗନ୍ଧ, ଚପା ସାଲ୍‌ଓ୍ୱାର, ଟପ୍‌ଲେସ୍ ବ୍ଲାଉଜ, ଟେମ୍ପୁଲେଟ୍ କାମନା, ମୁଠା ମୁଠା ସ୍ୱପ୍ନ, ଖିଲ ଖିଲ ହସ । ଏ ବିଦ୍ୟାୟତନ ଏକ ଜଙ୍କସନ । ଘଣ୍ଟା ବାଜେ । ବିପରୀତ ଦିଗରୁ ଟ୍ରେନ୍ ଆସେ । ଛୁଡ଼ା ହୁଏ । ଭାବ ଆଦାନ ପ୍ରଦାନ ହୁଏ । ଘୁଟେଲ୍ କଣା ହକା । ଟେ୍ୱି ହଲ୍ଲା । ପୁଣି ଶେଷ ଘଣ୍ଟା ବାଜେ । ଜୀବନ ପୁସ୍ତକର ତାରୁଣ୍ୟ ଅଧ୍ୟାୟର କେତୋଟି ଚଞ୍ଚଳ ଚପଳ ମୁହୂର୍ତ୍ତକୁ ଏଇଠି ଛାଡ଼ି ପୁଣି ନୂଆ ଦିଗନ୍ତ ତଳକୁ ମୁହଁ କରେ ସେ ।

ଏହାହିଁ କଲେଜର ରଙ୍ଗୀନ ଜୀବନ । ଏଠାକାର ପ୍ରତ୍ୟେକ ମାହାଳ ଇନ୍ଦ୍ର-ଧନୁର ରଙ୍ଗରେ ରଙ୍ଗୀନ । ଶୋକ-ବେଦନା-ଯନ୍ତ୍ରଣା ଏଠି ଇଅସପ୍ସ ଗଳ୍ପ । ଜୀବନ ଝଞ୍ଜାର ସମ୍ମୁଖୀନ ହେବା ପୂର୍ବରୁ ଏହା ଉପଭୋଗ୍ୟ ଶାନ୍ତ ପ୍ରକୃତି । ଧୂସର ଦିଗନ୍ତ ଏଠୁ ଅନେକ ଦୂରରେ ।

—o—

## କନ୍‌ହେଇର ଦିନଲିପିରୁ କିୟଦଂଶ

ତା ୩-୧-୭୩ ।

ଅସମୟ ବୃଷ୍ଟି ପରେ ପୃଥିବୀ ସମସ୍ତଙ୍କୁ ଭୁଲିଯାଏ ଓ ନିଜ ଦୁଃଖରେ ନିଜେ ନୂତନ ସବୁଜିମା ବିଞ୍ଚିଯାଏ । ମୁଁ ଜାଣେ ମୋତେ ସମସ୍ତେ ପ୍ରଥମେ ଖୁବ୍ ଭଲ ପାଆନ୍ତି, କିନ୍ତୁ ପରେ ବାନ୍ଧିକି ଟେକିଜାଣି, ଅଭିନୟରେ ହେଉ ବା ବାସ୍ତବରେ ହେଉ ମୋ ଠାରୁ ଦୂରେଇ ଯାଆନ୍ତି ।

ତା ୧୬-୧-୭୩ ।

ବୋଧହୁଏ ସାହିତ୍ୟ ମୋତେ ଦୁଃଖରୁ ଅସମୟ ମୁକ୍ତି ଦେଉଛି । ମୁଁ ଜାଣେ ମୋର ପାର୍ଥିବ ସମ୍ପତ୍ତି ବା ପଦାର୍ଥ କିଛି ନାହିଁ । ମୁଁ ସ୍ୱପ୍ନ-ସମ୍ରାଟ ।

ତା ୨୧-୩-୭୪

ଏଇ କେତେଦିନ ହେଲା ଦେହ ଭଲରହୁନି । ଟେଷ୍ଟ-ପରୀକ୍ଷା ଶେଷପର୍ଯ୍ୟନ୍ତ ଖୁବ୍ ଦଉଡ଼ିବା ପଡ଼ିବ । × ×

ମୋତେ ଏ ଭିତରେ ଅନେକ କାମ କରିବାକୁ ହେବ । ଜାଣେ ମୋ ସମୟ ପାଖେଇ ଆସିଲାଣି ।



# ଦୃଶ୍ୟାନ୍ତର

## ( ମିନି ଗଳ୍ପ )

ମୁଁ ସେଦିନ ରଞ୍ଜନବାବୁଙ୍କ ସାମ୍ନାରେ ସାଂଘାତିକ ଭାବେ ଧରାପଡ଼ି ଯାଇଥିଲି । କାରଣ ସେ ଯେତେବେଳେ ତାଙ୍କ ଘର ସାମ୍ନା ରାସ୍ତା ପାରହୋଇ ମୋ କବାଟକୁ ସନ୍ଦେହ ବଶତଃ ଖଡ଼ ଖଡ଼ କଲେ ମୁଁ ଓ ସିପ୍ରା ବ୍ୟସ୍ତ ଥିଲୁଁ । ଅବଶ୍ୟ ସିପ୍ରା ତାଙ୍କ ଝିଅ । ମୁଁ ତାଙ୍କର ଏକ ବିସ୍ଫୋରଣର ମୂର୍ତ୍ତିକୁ ଅପେକ୍ଷା କରି ରହିଲି ।

ସେ ମୋତେ ତାଙ୍କ ଘରକୁ ଡାକି ନେଇଗଲେ, ଅନେକ କଥା ଏଣୁ ତେଣୁ କହିଲେ, ଶେଷରେ ହଠାତ୍ ସେଇ ସାଂଘାତିକ କଥାଟି କହି ବସିଲେ : "ବୁଝିଲ ତୁମେ ବିଶ୍ୱ-ବିଦ୍ୟାଳୟର କୃତବିଦ୍ୟ ହୋଇପାର, କିନ୍ତୁ ଚରିତ୍ରବାନ ନହେଲେ କେବେ ବଡ଼ ମଣିଷ ହୋଇ ପାରିବ ନାହିଁ ।" କାନ ଉପରେ ଦୁଇ ଦୁଇ ଧଳା ବାଳ ଥିବା, ଗମ୍ଭୀର ବ୍ୟକ୍ତିତ୍ୱ ସଂପନ୍ନ ଏବଂ ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟିକ ଓ ସମାଲୋଚକ ରଞ୍ଜନ ବାବୁଙ୍କୁ ଲକ୍ଷ୍ୟକରି ମୁଁ ସେଦିନ ଝାଳେଇ ଉଠିଥିଲି ।

ତାପରେ ଅବଶ୍ୟ ସିପ୍ରା ମୋ ପାଇଁ ତା ମାମୁଁ ଘରକୁ ଚାଲାଣ ହୋଇ ଯାଇଥିଲା ।

ଆଜି ମୁଁ ଅନେକ ଦିନ ପରେ ବାଧ୍ୟ ହୋଇ ରଞ୍ଜନ ବାବୁଙ୍କ ଘରକୁ ଯାଇଥିଲି, କାରଣ ସିପ୍ରା-ମା'ଙ୍କ ଦେହ ଭୀଷଣ ଅସୁସ୍ଥ । ସିପ୍ରା ମା'ଙ୍କ ସହ ସାକ୍ଷାତ କରି ଯେତେବେଳେ ରଞ୍ଜନ ବାବୁଙ୍କ ଲାଇବ୍ରେରୀ ରୁମ୍‌ର ପର୍ଦ୍ଦା ଉଠାଇଦେଲି ଏକ ଭିନ୍ନ ପ୍ରକାର ଦୃଶ୍ୟ ଦେଖି ମୁଁ ସ୍ତବ୍ଧ ହୋଇଗଲି ।

ସିପ୍ରା-ମା'ଙ୍କ ଶୁଶ୍ରୂଷା ପାଇଁ ନିଯୋଜିତ ନର୍ସ ଲୁଗା ସଜାଡ଼ି ମୁଣ୍ଡବାଳ ସାଉଁଳାଇ ପର୍ଦ୍ଦାଟେକି ବାହାରି ଆସିଲା ।

ସିଧା ବସାକୁ ଫେରି ଗତମାସର 'ସିନ୍ଧୁ' ପତ୍ରିକାରେ ରଞ୍ଜନ ବାବୁଙ୍କ ଲେଖା 'ଚରିତ୍ର ଓ ସମାଜ ଜୀବନ' ପ୍ରବନ୍ଧଟି ଓଲଟାଇବାକୁ ଲାଗିଲି ।

# ଧୃତରାଷ୍ଟ୍ରର ଆଖି

ନଈ କୂଳରେ ବାସ କରୁଥିବା ଲୋକମାନେ ସକାଳେ ବିଛଣାରୁ ଉଠି ଦେଖିଲେ ନଈର ପାଣିର ରଙ୍ଗ ବଦଳି ଯାଇଛି । ଖଇରିଆ ରଙ୍ଗର ପାଣି, ମେଞ୍ଚା ମେଞ୍ଚା ଫେଣ । ଖପୁରିବାଲା ପଣ୍ଡିତ, ଦେଶସେବୀ, ରାଜନୀତିଜ୍ଞ, ସାମ୍ବାଦିକ, ସମସ୍ତେ ଆସି ନଈ କୂଳରେ ଠୁଳ ହେଲେ, ପର୍ଯ୍ୟବେକ୍ଷଣ ଆରମ୍ଭ କଲେ । ସମସ୍ତେ ଏକା ସାଙ୍ଗରେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇ ମତ ପ୍ରକାଶ କଲେ ଯେ ନଈ ପାଣିରେ କୌଣସି ମୃତ ଦେହର ରକ୍ତ ମିଶିଯାଇଛି, ତେଣୁ ରଙ୍ଗଟା ଏମିତି କଳାଚିଆ ନାଲି ଦେଖାଯାଉଛି । କିନ୍ତୁ ନଈ କୂଳରେ କେଉଁଠି ଶବଟା ପଡ଼ିଛି ଖୋଜି ବାହାର କରିବାକୁ ପଡ଼ିବ । ଗଣତାନ୍ତ୍ରିକ କାର୍ଯ୍ୟକ୍ରମ ଆରମ୍ଭ ହେଲା । ସମସ୍ତେ ମିଶି ଜଣେ ଲେଖକକୁ ନିର୍ବାଚନ କଲେ ।କାରଣ ଲେଖକ ଜଣକ କୌଣସି ଦଳଗତ ରାଜନୀତିର ଦଲାଲ ନୁହନ୍ତି । ତାଙ୍କ ଆଖିରେ ପାଓ୍ୱାରଫୁଲ୍ ଲେନ୍‌ସ । ସେ ଅତୀତ ବର୍ତ୍ତମାନ ଭବିଷ୍ୟତ ସବୁ ଦେଖି ପାରନ୍ତି । ସେ ସବୁ ଦୃଶ୍ୟ ଘଟଣା ଉପରେ ନିର୍ଭୁଲ ରାୟ ଦେଇ ପାରନ୍ତି । ତେଣୁ ଲୋକମାନେ ତାଙ୍କୁହିଁ ବାଛିଲେ । ଶେଷରେ ଲେଖକ ଜଣକ ଚୂଡ଼ା ଗୁଡ଼ଳ ବାନ୍ଧି, ଖାତାକଲମ ଧରି ବାହାରିଲେ । ରକ୍ତର ଉତ୍ସଟା ଖୋଜି ବାହାର କରିବାକୁ ପଡ଼ିବ । ନଈ କୂଳରେ ଉତ୍ସ ଆଡ଼େ ଚାଲିଲେ ଲେଖକ ଅନେକ ପାହାଡ଼, ପର୍ବତ, ବଣ ଜଙ୍ଗଲ ଅତିକ୍ରମ କରି । ଦିନ ପରେ ଦିନ ବିତିଗଲା, ଲେଖକ ଚାଲିଛନ୍ତି ଚାଲିଛନ୍ତି ଆଉ ଚାଲିଛନ୍ତି ।

ଚାଲିଛି ଧୃତରାଷ୍ଟ୍ର, ସାମ୍ନାରେ ଚଟିଆ । ପ୍ରତିଦିନେ ସକାଳେ ସେମାନେ ଏମିତି ଯାଆନ୍ତି । ଧୃତରାଷ୍ଟ୍ରର ହାତ ଚଟିଆର କାନ୍ଧରେ । ଧୃତରାଷ୍ଟ୍ର ଅନ୍ଧ । ତାର ଭଲ ନାମ ଧୃତରାଷ୍ଟ୍ର । ଅନ୍ଧ ବୋଲି ତାର ବାପା ମା ବୋଧହୁଏ ଏମିତି ତା ନାଁ ଦେଇଥିଲେ । କିଏ ତାର ବାପା ମା, କେଉଁଠି ତାର ଉତ୍ପତ୍ତି ସ୍ଥଳ କେହି ଜାଣନ୍ତି ନାହିଁ । ସମସ୍ତେ ଦେଖନ୍ତି ଧୃତରାଷ୍ଟ୍ର ସକାଳ ହେଲେ ରାଜଧାନୀକୁ ବାହାରିଯାଏ, ଫେରେ ରାତିରେ । ଭିକମାଗେ ଧୃତରାଷ୍ଟ୍ର । ଧୃତରାଷ୍ଟ୍ର କାଳକ୍ରମେ ଲୋକଙ୍କ ନଜର ମାହାତରେ ଓହ୍ଲାଇ ଓହ୍ଲାଇ ଧୃତରାଷ୍ଟ୍ର ପାଖରେ ଲଟକି ପାଇଛି । ଧୃତରାଷ୍ଟ୍ର ଅନ୍ଧ ବୋଲି ତା ମନରେ ଟିକିଏ ବି ଦୁଃଖ ନାହିଁ । ସେ ଜାଣେ ଆଖି ଥିବା ଲୋକେ ସବୁ ଅନ୍ଧ, ଶାସନ ଅନ୍ଧ, ଶାସକ

ଅନ୍ଧ, ସଂସ୍କୃତ ଅନ୍ଧ । କେବଳ ସେସବୁ ଅନୁଭବ କରେ । ଖୁବ୍ ବେଶୀ ଖୁସି ହେଲେ ନଷ୍ଟଲକ ଆଖି ଦୁଇଟା ଥର ଉଠେ । ଦୁଃଖ ପାଇଲେ ଆଖିପତା ମିଞ୍ଜି ମିଞ୍ଜି କରେ ।

ସେଇ ଧ୍ରୁବ ବୁଲୁଛି ରାଜଧାନୀ । ତା ଗାଲରେ କଞ୍ଚା ପାଚିଲା ଦାଢ଼ୀ, ମୁଣ୍ଡରେ ଆଲପିନ ଭଳି କଣ୍ଟାଳିଆ ବାଳ । ଚୂଟିଆ ଦେହରେ କଲରପଚରିଆ ଛିଣ୍ଡା ଜାମା । କେଉଁ ଦୟାଳୁ ଭଦ୍ରଲୋକର ଉପଢୌକନ ବସ୍ତ୍ର । ଚୂଟିଆ ଖୋଷଣ ଚାଲକ । ତା' ଆଖି ମିଟ୍ ମିଟ୍ କରୁଥାଏ ସବୁବେଳେ । ସବୁବେଳେ ସୁଯୋଗକୁ ଅପେକ୍ଷା କରେ । ଚୂଟିଆର ଆଗକୁ ଝାମ୍ପି ଆସି ଆଖି ଉପରେ ପଡୁଛି ମୁଣ୍ଡବାଳ । ମୁଣ୍ଡର ଚୂଇ ଉପରେ କେତୋଟି ବାଳ ନଡ଼ା ଭଳି ଠିଆ ହୋଇ ରହିଛି । ଧ୍ରୁବ ଚୂଟିଆର କାନ୍ଧରେ ହାତ ରଖି ବୁଲୁଛି । ଚୂଟିଆର ହାତରେ ଗୋଟିଏ କଲେଇକରା ଟାଟିଆ, ଯେଉଁ ଟାଟିଆକୁ ଓହ୍ଲାଇ ଆସିବ ଦାତାମାନଙ୍କ ହାତରୁ ଅନୁକମ୍ପା ଦାନ । ରାସ୍ତା କଡ଼ରେ ବସଗାଡ଼ ହଗକୁ ଗଡ଼ିଯାଉଛି ମଣିଷଭର୍ତ୍ତି ଟ୍ରାନ୍ସପୋର୍ଟ ବସ୍, ମାଲ୍ ବୋଝେଇ ଲରି । ରାସ୍ତା କଡ଼କୁ ଥପ୍ ଥପ୍ ପାଦରଖି ଘୂଞ୍ଚି ଯାଉଛି ଧ୍ରୁବ ଚୂଟିଆର କାନ୍ଧରେ ହାତ ରଖି । ଆଜି କେତେଦୂର ଆସେମ୍ବ୍ଲି ଘର । ଆସେମ୍ବ୍ଲି ମାନ୍ନା ବରଗଛ ମୂଳରେ ଛିଡ଼ା ହୁଏ ଧ୍ରୁବ । ଅନେକ ଲୋକଙ୍କ ଗହଣରେ ଆଗେଇ ଯାଉଥିବା ନେତା ଦୟାର ଅବତାର ବୋଲି ଜଣାଇ ଦେବା ପାଇଁ କଲେଇକରା ଟାଟିଆରେ ଖସାଇ ଦିଅନ୍ତି ଦଶ ପଇସି, ପଚାଶ ପଇସି । କେତେବେଳେ ସାଙ୍କୁଳେଇ ଧ୍ରୁବ ପିଠିରେ ହାତ ମାରି ଭଲମନ୍ଦ ପଚାରନ୍ତି । ଧ୍ରୁବ ସବୁ ବୁଝେ । ଦୂର ଗାଁ ଗଣ୍ଡାରୁ ଆସେ ଦରିଦ୍ର ପ୍ରଜା-ନେତାଙ୍କ ପାଖରେ ହାତ ଗୁହାରି ଜଣାଇବା ପାଇଁ । କେତେବେଳେ ରିଲିଫ ବ୍ୟବସ୍ଥା, କେତେବେଳେ ସ୍କୁଲ, ଲାଇବ୍ରେରୀ ପାଇଁ ଟଙ୍କା, କେତେବେଳେ ମରୁଡ଼ି ବାତ୍ୟା ବନ୍ୟା ସାହାଯ୍ୟ ପାଇଁ । ନେତାଙ୍କ ପଛେ ଗୁହାରି ଶୁଣାଇ ବୁଲିଲା ବେଳେ ଲମ୍ବିଆସେ ଧ୍ରୁବର କଲେଇକରା ଟାଟିଆ । ନେତାଙ୍କ ଆଗରେ ଦୟାଳୁ ପରୋପକାରୀ ବୋଲି ଜଣାଇବା ପାଇଁ ଖୁବ୍ ଉଁଚ୍ଚକରି ଖସାନ୍ତି ପାଞ୍ଚ ପଇସି କମ୍ବା ବଡ଼ ଦଶପଇସି । ବେଶ୍ ଠକ୍ କରି ଶବ୍ଦ ହୁଏ । ଟାଟିଆରେ ପଇସା ପଡ଼ିବା ଶବ୍ଦ ଶୁଣି ଧ୍ରୁବ କହି ଦେଇ ପାରେ କେତେ ପଇସା ପଡ଼ିଲା । ଚୂଟିଆ ଟାଉଟ ଆତୁର ବାଳକ । ସେ ଯେତେବେଳେ ସୁବିଧା ପାଏ ନିଜ ହାତ ପଶାଇ ମାରିନିଏ । ପଇସା ଟାଟିଆରେ ପକାଇବାକୁ ଦିଏ ନାହିଁ । ସେଇଟା ଚୂଟିଆର ଉପରି ରୋଜଗାର । ସେଇଟା ଧ୍ରୁବର ଅଜାଣତରେ ଚୂଟିଆର ପେଣ୍ଟ ପକେଟକୁ ଚାଲିଯାଏ । ପରେ ଚୂଟିଆ ସେଇ ପଇସାରେ କିଣି ଖାଏ ଆଇସ୍କ୍ରୀମ । ଧ୍ରୁବ ସବୁ ବୁଝେ କିନ୍ତୁ ଧରି ପାରେ ନାହିଁ ।

ସବୁଦିନ ଭଳି ଧୂର୍ତ୍ତବର ଓ ଚୁଟିଆ ଆସି ଛିଡ଼ାହୋଇ ପଡ଼ିଲେ ଆସେମ୍ବ୍ଲି ସାମ୍ନାରେ । ଆସେମ୍ବ୍ଲି ଅଧିବେଶନ ଆରମ୍ଭ ହେବ । ଜଣେ ବ୍ୟସ୍ତ ମନ୍ତ୍ରୀ ଗଳି ଯାଉଥିଲେ ଭିତରକୁ । ସାମ୍ନାରେ ଚୁଟିଆର କଲେଇକଗ ଛାଟିଆ ଲମ୍ବି ଆସିଲା । ସେ ଛିଡ଼ା ହୋଇ ପଡ଼ିଲେ । ଖୁବ୍ ବିରକ୍ତିରେ ତା' ଆଡ଼କୁ ଚାହିଁଲେ । ଯେତେ ଖାଦ୍ୟ ଦେଲେ ବି ଏ ଦେଶରୁ ଭିକାରି ସଂଖ୍ୟା କମିବ ନାହିଁ — ଏ ଧରଣର ମନ୍ତବ୍ୟ କରି ଗୋଟିଏ ନାଲି ଟୋପି ପୋଲିସକୁ ଡାକି କଣ ସବୁ କହିଲେ । ପୋଲିସ ଆଗେଇ ଆସିଲା । ଚୁଟିଆକୁ କହିଲା—ହଟୋ ହଟୋ । ଧୂର୍ତ୍ତବର ଜାଣେ ଏ ପୋଲିସଗଣ ସବୁଦିନେ ଚଳିବ ନାହିଁ ସେ ଅନୁମାନରେ ମନ୍ତ୍ରୀ ଛିଡ଼ା ହୋଇଥିବା ସ୍ଥାନ ଆଡ଼କୁ ମୁହଁ କରି କହିଲା—ବାବୁ ଅନ୍ଧ ଭିକାରୀକୁ ପଇସା ମିଳୁ । ପଇସା ଦେବାକୁ ତାଙ୍କର କୁଣ୍ଠା ନାହିଁ । କିନ୍ତୁ ଆସେମ୍ବ୍ଲି ସାମ୍ନାରେ ଭିକମଗା ନିଷିଦ୍ଧ ହେବା ଉଚିତ । ମୁଖ୍ୟମନ୍ତ୍ରୀ ଦେଖିଲେ ତାଙ୍କ ଧାରଣା କଣ ହେବ ! ମନ୍ତ୍ରୀ ଚଉଆଡ଼କୁ ଚାହିଁଲେ ! ତାଙ୍କ ପଛରେ ଦେଶର ସହୃଦୟ ଜନତା । ପକେଟରେ ହାତ ପୂରାଇଲେ । ପଚିଶ ପଇସି ହାତରେ ବାଜିଲା, ସେଇଟାକୁ ଗୋଟିଏ କୋଣକୁ ଆଉଜେଇ ଦେଇ ଆଠଣି ଅଣ୍ଡାଳିଲେ । ସେଇ ପଚିଶ ପଇସି । ତା ଛଡ଼ା ଆଉ କିଛି ନାହିଁ । ପଛରେ ତାଙ୍କର ଏ ଦେଶର ଦାନଶୀଳ ଜନତାର ଗହଳି । ମୁହଁରେ ହସ ଖେଳାଇ ପଚିଶ ପଇସିଟା ବାହାର କରି ଛାଟିଆରେ ପକାଇ ଦେଲେ । ତା'ପରେ ମନ୍ତ୍ରୀଙ୍କ ପାଦ ଗୋଡ଼ାଇଲା । ତାପରେ ଅନେକ ଗୋଡ଼ଣିଆ ପାଦ । ଛାଟିଆରେ ମନ୍ତ୍ରୀଙ୍କୁ ଅନୁସରଣ କରି ପଡ଼ିଲା ଦଶ ପଇସି, ପାଞ୍ଚ ପଇସି, ଦଶ ପଇସି, ତିନି ପଇସି, ଦୁଇ ପଇସି, ପାଞ୍ଚ ପଇସି – ପାଞ୍ଚ ପଇସି । ଚୁଟିଆ ମନେ ମନେ ଗାଳି ଦେଲା ଦୁଇ ତିନି ବାଲାଙ୍କୁ । ଧୂର୍ତ୍ତବର ଆଉ ହିସାବ ରଖି ପାରିଲା ନାହିଁ, ଗୋଳମାଳ ହୋଇଗଲା । ଏ ମୁହୂର୍ତ୍ତ ସବୁ ଚୁଟିଆ ବୁଝେ । ଉଠାଇ ନେଲା କେତୋଟି ଦଶ ପଇସି ଏବଂ ତା ଭେସ ପକେଟକୁ ଚାଲାଣ କରି ଦେଲା । ତା'ପରେ ଧୂର୍ତ୍ତବରକୁ ଶୁଣେଇ ଶୁଣେଇ ଦୁଇ ପଇସି ତିନି ପଇସି ବାଲାଙ୍କୁ ଗାଳି ଦେଲା — ଏତେ କାଙ୍ଗାଳ କାହିଁକି ? ଅସ୍ତୁନ ଗୋଟିଏ ଛାଟିଆ ଧରି ଏଇଠି ଛିଡ଼ା ହେବ । ଆମ ସହ ଖସ ବର୍ଷାରେ ଏଇଠି ମେହନତ କରିବ । ଚୁଟିଆ ଦେଖିଲା ଧୂର୍ତ୍ତବରର ଆଖିଟା ଖୁବ୍ ଭିତରେ ଘୂରୁଛି । ତା ସାମ୍ନା ଦେଇ ଗୋଟିଏ ବଉଦ୍ଧ କୁଷ୍ଠରୋଗୀ ଚାଲିଗଲା । ଚୁଟିଆ ତାକୁ ଇସାରା କରି ଡାକିଲା । ଆଉ ଥରେ ଧୂର୍ତ୍ତବର ମିଞ୍ଜି ମିଞ୍ଜି ଆଖିକୁ ଚାହିଁଲା ଏବଂ ଖୁବ୍ ସନ୍ତର୍ପଣରେ ଛାଟିଆରୁ ପାଞ୍ଚ ପଇସି ଗୋଟିଏ ଉଠାଇ ନେଇ ଫିଙ୍ଗି ଦେଲା କୁଷ୍ଠରୋଗୀ ଆଡ଼େ । କୁଷ୍ଠରୋଗୀଟା ତାକୁ ମଇଳା କୋଥଳି ନେଇ ମୁରୁକି ହସିଲା । ଚୁଟିଆ ମନେ ମନେ ଭାବିଲା ସେ ମୁଖ୍ୟମନ୍ତ୍ରୀ ହୋଇ ଯାଇଛି । ମାଗି ଆଣିବା ପଇସା ଦାନ କରିବା ଏତେ ମଜା ।

ହଠାତ୍ ଦୂରରେ ଗୋଟିଏ କୋଳାହଳ ଶୁଣାଗଲା । ଧ୍ରୁବ କାନଡେରି ହୋଇ ଶୁଣିଲା । ଚନ୍ଦ୍ରିକାକୁ ପଚାରିଲା - କଣ କରେ ଏ ଗୋଳମାଳ । ସବ୍ଜାନ୍ତା ଚନ୍ଦ୍ରିକା ବରଗଛ ମୂଳର ଉଁଚ୍ଚ ଜାଗାକୁ ଚଢ଼ିଯାଇ ଆଖି ଉପରେ ହାତ ଦେଇ ଦେଖିଲା । କହିଲା – ଲୋକେ ସବୁ ପତାକା ଧରି ଆସୁଛନ୍ତି ଏ ଆସେମ୍ବ୍ଲି ଘରଆଡ଼େ । କୋଳାହଳ କ୍ରମେ ଦ୍ରୁତତର ହେଲା । ଧ୍ରୁବ ମଇସାଗୁଡ଼ାକୁ ଗାମୁଛା କାନରେ ତାଳ ବାନ୍ଧିଲା, ତା'ପରେ ଅସ୍ଥାନରେ ଗୁଡ଼ାଇ ଦେଇ କହିଲା···ଚାଲ ଏଠୁ ପଳାଇବା ସେମାନେ ମାଡ଼ି ଆସୁଛନ୍ତି ।

ମାଡ଼ି ଆସୁଛନ୍ତି ଦେଶର ହଜାର ହଜାର ବେକାର ଜନତା । ହାତରେ ସେମାନଙ୍କର ପତାକା ଆଉ ପ୍ଲା-କାର୍ଡ୍ । ସାମ୍ନାରେ ବଡ଼ ପତାକା ଧରି ଚାଲିଛି ଯିଏ ସିଏ ଏକ ନମ୍ବର ବିପ୍ଳବୀ । ଶୋଭାଯାତ୍ରାର ନେତା । ମୋଟା ହାତଟା ଉଠି ଯାଉଛି ଆକାଶକୁ । ପୁଣି ବଜ୍ର ଭଳି ତଳକୁ ଆସୁଛି । ସବୁ ଆଇନ-କାନୁନ, ଶାସନ ଖସଡ଼ା ଭାଙ୍ଗି ଦେବାର ମୁଦ୍ରା ତା' ଗୋଲ୍ଡ ହାତ ଆଖିରେ । ତାର ଦୁଇ ଜନଜଣ ପଛରେ ଗୋଟିଏ ଅଳ୍ପ ବୟସର ତରୁଣ । ଏଇ ବୟସରେ କଲେଜରେ ଏମାନେ ନେତା ହୁଅନ୍ତି । ତା ମୁହଁଟା ଝାଉଁଳି ପଡ଼ୁଛି । ଯେତେ ପୋଲିସ ଭେନ୍ଟା ପାଖେଇ ଆସୁଛି ସେତେ ତା ନାକ ମୁହଁରୁ ଗରମ ବାଷ୍ପ ବାହାରୁଛି । ମଝିରେ ମଝିରେ ଡର ଲାଗୁଛି ତେବେ ତାକୁ । ସେ ଏଇ ଲାଇନରେ ପ୍ରଥମ କଥା ।

ଶୋଭାଯାତ୍ରାର ଲୋକମାନେ ଝାଉଁଳି ପଡ଼ଲେଣି ଖରାରେ । ସବୁ ଶୋଭାଯାତ୍ରାରେ ଏଇ ଗୋଟିଏ ଚେହେରାର ଲୋକ । ହୁଏତ ଏମାନଙ୍କ କଛି କାମ ଦାମ ନାହିଁ । ବିପ୍ଳବ କରିବା ଏମାନଙ୍କ ବ୍ୟବସାୟ । ଏମାନଙ୍କ ପାଦରେ ରବର ଜୋତା, କାନ୍ଧରେ ଥଳି । ଥଳି ଭିତରେ ଥାଏ ଖୋର୍ଦ୍ଧା । ଗାମୁଛା, ଚୂଡ଼ା କମ୍ବା ଭୁଜା, ଗୋଟିଏ ଶାଳପତ୍ରରେ ମେଞ୍ଚାଏ ଗୁଡ଼ାଖି । ବିପ୍ଳବ ଆଗେଇ ଯାଉଛି । ମଣିଷର ସ୍ରୋତ ଉପରେ ନାଚୁଛି ପତାକା । ରିକ୍ସା ଉପରେ ମାଇକ୍ ବାନ୍ଧି ପତଳା ଲୋକଟା ଚଣ୍ଡି ଫାଟାଇ ଚିତ୍କାର କରୁଛି, ଅନ୍ୟମାନେ ଗାନ ଧରୁଛନ୍ତି । ଦଳେ ଲୋକ ରାସ୍ତା କଡ଼ର ଲୋକବାକ, ଅଫିସ, ଦୋକାନ, ବଜାର ଦେଖି ଦେଖି ଧାଡ଼ିରେ ମହା ଆଗ୍ରହରେ ଚାଲିଛନ୍ତି । · ବିପ୍ଳବ ଆଗେଇ ଚାଲିଛି ।

ହଠାତ୍ ଶୋଭାଯାତ୍ରା ପୋଲିସ ଘେରରେ ଥିବା ସଚିବାଳୟ, ଅସେମ୍ବ୍ଲି ହଲ୍ର ନିକଟାଞ୍ଚଳର ସାମ୍ନା ହେଲା । ପୋଲିସ ଲାଠି ଦେଇ ଶୋଭାଯାତ୍ରା ଅଟକାଇ ଦେଲା । ଶୋଭାଯାତ୍ରାର ଚିତ୍କାର ବଢ଼ିଗଲା । ବ୍ରେକ ଦେଇ ସବୁ ଉବା ଛିଡ଼ା ହୋଇ ପଡ଼ିଲା ।

ସାମ୍ନାର ନେତା ଟିକଏ ଫୁଟାଣି ଦେଖାଇ ଆଗକୁ ବଢ଼ି ଯିବାକୁ ଚାହିଁଲେ । ପୋଲିସ ନେତାଙ୍କ ପେଟରେ ଲାଠି ଦେଇ ପଛକୁ ଠେଲି ଦେଲା । ଠେଲି ହୋଇଗଲେ ନେତାଙ୍କ ପଛରେ ଥିବା ଦୁଇ ତିନି ଜଣ ଚପ୍ଲୁସା । ହଠାତ୍ ଛରକା ଗୋରୁପରି ଲଙ୍ଗୁଡ଼ ଟେକି ଉଆଁ ମାରିଲା ସେଇ ଅଳ୍ପ ବୟସ୍କ ତରୁଣ । ହଠାତ୍ ଆତଙ୍କ ଗ୍ରସ୍ତ ଶୋଭାଯାତ୍ରାର ଗୃହଆଡ଼େ ହୁଲୁସ୍ଥୂଲ ପଡ଼ିଗଲା । କ୍ରୋଧ କ୍ଷୁବ୍ଧ କେତେଜଣ ଉତ୍ତେଜିତ ହୋଇଗଲେ । ରାସ୍ତାକଡ଼ରୁ ଉଠାଇ ଆଣିଲେ ଟେକା ପଥର । ପୋଲିସ ଜୁଲୁମ ବନ୍ଦ କର, ପୋଲିସ ରାଜ ଚଳିବ ନାହିଁ, ଚିତ୍କାର କରି କରି ପୋଲିସ ଉପରେ ପଥର ବର୍ଷା ଆରମ୍ଭ କଲେ ।

ଆରମ୍ଭ କରିଥିଲେ ଦୌଡ଼ିବା ପାଇଁ ଧ୍ରୁବ ଆଉ ଚୁଟିଆ । କିନ୍ତୁ ଚୁଟିଆ କହିଲା – ଆମ ଗୃହପଟେ ପୋଲିସ ଘେରି ଗଲେଣି । ବାହାରିବାର ଉପାୟ ନାହିଁ । ତୁମେ ଏଇଠି ଲୁଚି ରୁହ, ମୁଁ ବରଂ ରାସ୍ତା ଖୋଜେ । ଲୁଚି ହୋଇ ରହିଲା ଧ୍ରୁବ ପୋଲିସ ଘେରରେ ଚୁଟିଆକୁ ଅପେକ୍ଷା କରି । କେତେବେଳେ ଚୁଟିଆ ଆସିବ ତା ହାତ ଧରି ତାକୁ ମୁକୁଳେଇ ନେବ । କାନ ଡେରି ଶୁଣିଲା ଧ୍ରୁବ, ଗୋଳମାଳ କ୍ରମେ ବଢ଼ୁଛି । ତା ପାଖ ଦେଇ ଭାରି ବୁଟର ଧାଁ ଦଉଡ଼ । ଗୋଟାଏ ପୋଲିସ ତା ଦେହରେ ଧକ୍କା ଦେଲା ବୋଧହୁଏ, ଉଡ଼େ ଯାଇଁ ଯାଇଁ ସମ୍ଭାଳି ନେଲା ନିଜକୁ । ସେ କ୍ରମେ ବୁଝି ପାରିଲା ତାକୁ ସମସ୍ତେ ଘେରି ଗଲେଣି । ତାକୁଇ ଘେରି ଚପ୍ଲୁସା ଓ ପୋଲିସର ଖଣ୍ଡ ଯୁଦ୍ଧ ଆରମ୍ଭ ହୋଇ ଗଲାଣି । ହଠାତ୍ ତା ମୁଣ୍ଡ ଛଲୁ ହୋଇଗଲା ଭଳି ଲାଗିଲା । ନିଆଁ ହଲକାଏ ବାହାରି ଗଲା । ମୁଣ୍ଡର ତାତିଲା ରକ୍ତରେ ହାତ ଦେଇ ବୁଝିଲା ତା ମୁଣ୍ଡରେ ପଥର ବାଜିଛି । ସେ ଏଣେ ତେଣେ ହାତ ପକାଇବାକୁ ଲାଗିଲା ଅନ୍ଧାରରେ ହାତ ବୁଲାଇ ବୁଲାଇ । ତା ମୁଣ୍ଡ ବୁଲାଇ ଗଲା ଭଳି ଲାଗିଲା । ସେ ତଳେ ପଡ଼ି ଯାଉଁ ଯାଉଁ ଅନୁଭବ କଲା ତା ପିଠିରେ ଗୋଟିଏ ଲାଠି ପାହାର ବାଜିଲା । ସେ ତଳେ ପଡ଼ି ଛଟପଟ ହେବାକୁ ଲାଗିଲା । ଜଣେ ଦୁଇ ଜଣ ତା ହାତ ଆଉ ପିଠିରେ ପାଦ ପକାଇ ମାଡ଼ି ଚାଲି ଗଲେ । ତାର ଚେତା ଏକା ଥରେ ଲୋପ ପାଇବା ଆଗରୁ ସେ ଶୁଣିଲା ଖୁବ୍ ଦୂରରେ କେଉଁଠି ଯେମିତି ଅନେକ ଗୁଳି ଫୁଟୁଛି, ଗୃହଆଡ଼େ ବାରୁଦ ଗନ୍ଧ, ଯେମିତି ସମୁଦ୍ରର ଲହଡ଼ି ହୁ ହୁ ହୋଇ ତା ଉପର ଦେଇ ମାଡ଼ି ଯାଉଛି । ଆକାଶଟା ମଶାଣି ଭଳି ତା ଚାରିପଟେ ଘେରି ଗଲାଣି । ସମୁଦ୍ରର ଢେଉ ପରେ ଢେଉ ତା ଉପର ହୁସ୍ ହୁସ୍ ବହିଗଲା, ଶେଷଥର ପାଇଁ ଗୋଟିଏ ବିରାଟ ଢେଉ ତା ଉପରେ ଦେଇ ଯେ ଡେଇଁ ପଡ଼ିଲା ଆଉ ଓହ୍ଲାଇଲା ନାହିଁ । ସବୁ ଦିନ ପାଇଁ ସ୍ଥିର ହୋଇ ରହିଗଲା ।

କ୍ରମେ ସବୁ ସ୍ଥିର ହୋଇଗଲା, ଯେତେବେଳେ ଆକାଶରୁ ଓହ୍ଲାଇ ଆସିଲା ବରକୋଳିଆ ଟୋପା ବର୍ଷା । ବିପ୍ଳବୀମାନେ ଛତ୍ରଭଙ୍ଗ ହୋଇ ପଳାଇଲେ । କେତୋଟି ଶବ ଆଉ କେତୋଟି ଜଖମ ବିପ୍ଳବୀ ପୋଲିସ ଭ୍ୟାନ୍‌ରେ ଚଢ଼ିଗଲେ । କେବଳ ଆସେମ୍ବ୍ଲି ସାମ୍ନାରେ ପଡ଼ି ରହିଲା ଧୃତରାଷ୍ଟ୍ରର ଶବ । ଧୃତରାଷ୍ଟ୍ରର ଆଖିରୁ ବହିଗଲା ରକ୍ତ ସ୍ରୋତ ବୃଷ୍ଟିଜଳ ନର୍ଦ୍ଦମାକୁ । କ୍ରମେ ନର୍ଦ୍ଦମାର ପାଣି ସହରର ସବୁ ଗଳିକନ୍ଦି ଅତିକ୍ରମ କରି ରାଜଧାନୀ ଉପକଣ୍ଠ ଦେଇ ନଦୀରେ ମିଶିଲା । ଶେଷରେ ବହିଗଲା ବଡ଼ ନଦୀରେ ଧୃତରାଷ୍ଟ୍ରର ଆଖି ରକ୍ତର ଝରିଆ ପାଣି । ନଈ କୂଳର ଲେଖକ ସ୍ରୋତର ପ୍ରତିକୂଳରେ ଚାଲି ଚାଲି ଆସି ଉତ୍ସ ଖୋଜି ପାଇଲେ ଆସେମ୍ବ୍ଲି ସାମ୍ନାରେ । ସେ ତାଙ୍କ ଖାତାରେ ଟିପି ନେଲେ--"ଆସେମ୍ବ୍ଲି ସାମ୍ନାରେ ମୁହଁମାଡ଼ି ପଡ଼ିଛି ଅନ୍ଧ ଧୃତରାଷ୍ଟ୍ରର ଶବ । ତା ଆଖିରୁ ରକ୍ତର ସ୍ରୋତ ବାହାରି ସାରା ଦେଶରେ ମାଡ଼ିଯାଉଛି ।"

ଲେଖକ ଯାହା ଦେଖିଲେ ସବୁ ଲିପିବଦ୍ଧ କଲେ । ସବୁ କାହାଣୀ ସଂଗ୍ରହ କଲେ । ସେ ଚାଲିଲେ ଦେଶର ଏ ସମ୍ବାଦ ଲୋକଙ୍କ ପାଖରେ ପହଞ୍ଚାଇ ଦେବାପାଇଁ ।



## ଚିଠିଟିଏ : ବିଶ୍ୱାସ ଓ ଆତ୍ମ-ପ୍ରତ୍ୟୟର

K. L. Das, O. A. II Section
A. G. Office, Bhubaneswar.

ବ୍ରଜବାବୁ,

× × ଏଇଠି ଏତେ ଲୋକ ଯେ, ମନେ ହେଉଛି ମୁଁ ମୋର ସତ୍ତା ହରେଇ ଆସୁଛି । ଅଫିସ ଶେଷ ହେଲେ ଯେତେବେଳେ ରାସ୍ତା କେବଳ କିରାଣୀ ଭିଡ଼ରେ ଭର୍ତ୍ତି ହୋଇଯାଏ ସେତେବେଳେ ମୁଁ ବି ସେମାନଙ୍କ ସହ ମିଶି ଏକାକାର ହୋଇଯାଏଁ । ମୁଁ କେବଳ ଅଂଶ ବିଶେଷ ଏଇ କଥାଟା ଅନୁଭବ କରି କେମିତି ବିମର୍ଷ ହୋଇ ଉଠେଁ । ମୋର ଅପରାହ୍ନର ଦୀର୍ଘ ଛାୟା ଉପର ଦେଇ ଯେତେବେଳେ ସିନେମା ପୋଷ୍ଟରର ଭଳି ନାରୀ-ପୁରୁଷମାନେ ମାଡ଼ି ଚାଲନ୍ତି, ସେତେବେଳେ ମୋ ଭିତରୁ ଏକ ପ୍ରକାର ଚିତ୍କାର ଉଠେ । କିନ୍ତୁ ବଞ୍ଚିବାର ଚିତ୍କାର ସେ ଚିତ୍କାରକୁ ବଳିଯାଏ ବୋଲି ଭାବେଁ । ଯେତେବେଳେ ବାହ୍ୟିକ, ପାରିପାର୍ଶ୍ୱିକ ପରିବର୍ତ୍ତନ ହେଲେ ମଧ୍ୟ ମୋର "ମୁଁ"କୁ କେହି ଛୁଇଁ ପାରିବେ ନାହିଁ ଏକଥା ବିଷୟରେ ମୁଁ ସଚେତନ । ଇତି । —କନ୍‌ହେଇ

କନ୍‌ହେଇ ବାଲେଶ୍ୱର ଛାଡ଼ି ଭୁବନେଶ୍ୱର ଏ: ଜି: ଅଫିସରେ କାର୍ଯ୍ୟରେ ଯୋଗ ଦେଲା ପରେ ଏ ଚିଠିଟି ଲେଖିଥିଲା ଏବଂ ବାଲେଶ୍ୱରରେ ତାହା ତା ୩୧-୭-୭୨ ରିଖରେ ମିଳିଥିଲା ।

—ସମ୍ପାଦକ

# ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର

ତୁମକୁ କେତେ ବର୍ଷ ବୟସ ହେଲା ଈଶ୍ୱର ! ତୁମେ ନିଶ୍ଚୟ ମୋ'ଠୁ ସାନ । ଏବେ ମୋର ପଚିଶ ବର୍ଷ ଚାଲିଲା । ତୁମର ଏପାଏଁ ତ ନିଶଦାଢ଼ୀ ଉଠିନାହିଁ । ତୁମେ ଏବେ ବି ଅପ୍ରାପ୍ତ ବୟସ୍କ ।

ତୁମେ ମାଇକିଆ ନିଶ୍ଚୟ । ନ ହେଲେ ନାକ ତଳ ତ କଳା ପଡ଼ିଥାନ୍ତା । ତୁମ କାଖ ତଳେ କିଣ ବାଳ ନାହିଁ ? ତୁମ ଛବି ଆଉ ମୂର୍ତ୍ତି ଯେତେ ଜାଗାରେ ଦେଖିଛି, ମୁଁ ଭଲ କରି ଲକ୍ଷ୍ୟ କରିଛି, ତୁମ ଗୁପ୍ତରେ ବାଳ ନାହିଁ । ତୁମ ଦେହର ଅନ୍ୟ ସବୁ ଜାଗାରେ ।

ତୁମେ ବଡ଼ ସ୍ୱାର୍ଥପର । ଥରେ ଗୋଟିଏ ବିଭତ୍ସ ଚେହେରାର ଭିକାରୀ ରାସ୍ତା କଡ଼ରେ ବସି ଭିକ ମାଗୁଥିଲା । ପ୍ରକୃତରେ ଦୟା ହେଲା ତା ପ୍ରତି । ପକେଟ ଅଣ୍ଡାଳିଲି । ବଡ଼ ଦଶ ପଇସି ଗୋଟିଏ ହାତରେ ପଡ଼ିଲା । ଟିକିଏ ଇତସ୍ତତଃ ହୋଇ ତା ଆଡ଼େ ଫୋପାଡ଼ି ଦେଲି । ସେ ଗୋଟାଇ ନେଲା । ତାପରେ—"ଈଶ୍ୱର ତୁମର ମଙ୍ଗଳ କରନ୍ତୁ । ବଡ଼ ଦୟାବାନ ପ୍ରଭୁ ।"

ମୁଁ ତାକୁ ଦୟା ଦେଖାଇଲି, ଆଉ ତୁମେ ହେଲ ଦୟାବାନ । କାମ ମୋର ନାମ ତୁମର । ବାଃ ବାଃ ।

ତୁମର ଗୋଟିଏ ଛଳନା, ତୁମେ ନିରାକାର ଆଉ ସର୍ବବ୍ୟାପୀ । ପବନ ବି ନିରାକାର ଆଉ ସର୍ବବ୍ୟାପୀ ପବନ କିଣ ତୁମର ସୃଷ୍ଟି ? ପରମାଣୁ ବି ତୁମର ସୃଷ୍ଟି ବୋଲି ବାହାଦୁରୀ ନେବାକୁ ପଛେଇବନି ଯେ !

ତୁମେ ଗୋଟିଏ ମଣିଷ ହୁଅନ୍ତ କି ! ଠିକ୍ ମୋ ଭଳି ଗୋଟିଏ ମଣିଷ ହୁଅନ୍ତ କି ! ମଜା ବୁଝନ୍ତ । ତା ନାହିଁ, ଅଦୃଶ୍ୟରେ କେଉଁଠି ଲୁଚିଛ । ନାକରେ ସୋରିଷ ତେଲ ପକାଇ କେଉଁ ଏକ ସୁନ୍ଦରୀ ତରୁଣୀ କୋଳରେ ଶୋଇ ଘୁଙ୍ଗୁଡ଼ି ମାରୁଛ । କିଣ ନା ଈଶ୍ୱର !

ଈଶ୍ୱର, ଯିଏ ଯାହା କହନ୍ତୁ ପଛକେ ମୁଁ ଜାଣେ ତୁମେ ମୃତ । ମୁଁ ଆଜି ତୁମକୁ ଜୀବନ୍ୟାସ ଦେବି । ତୁମକୁ ମଣିଷ କରି ଗଢ଼ିବି । ତା ପରେ ଖୁବ୍ ଅସହାୟ

କରି ନିଜ ହାତରେ ତୁମକୁ ଖୁନ୍ କରିବ । ତାହାଲେ ବୁଝିବ ମଣିଷର ଦୁଃଖ କେତେ, ଯନ୍ତ୍ରଣା କେତେ । ମଣିଷ କେତେ ନିଃସଙ୍ଗ ଆଉ କେତେ ଅସହାୟ ।

ତୁମେ ମଣିଷ ଜନ୍ମଗ୍ରହଣ ପରେ ମୋ ସହ ଦୋସ୍ତି କରିବ ? କେହି ତୁମକୁ ମୋ ସହ ପରିଚୟ କରାଇବା ଦର୍କାର ନାହିଁ । ମୁଁ ଏ ଘରେ ବର୍ତ୍ତମାନ ଏକା । ତୁମେ ଆସି ଠିକ୍ ଏଇ ମୁହୂର୍ତ୍ତରେ କବାଟ ଖଟଖଟ କରନ୍ତ । ମୁଁ ଯାଇ କବାଟ ଖୋଲି ଦିଅନ୍ତି ।

ତୁମେ ମୋତେ ନମସ୍କାର କରି କହନ୍ତ– ମୁଁ ଈଶ୍ୱର ।

ମୁଁ ବି ତୁମକୁ ନମସ୍କାର କରନ୍ତି—ଆରେ ଈଶ୍ୱର ବାବୁ ଯେ ! ଆସନ୍ତୁ ଆସନ୍ତୁ । ଅନେକଥର ଆପଣଙ୍କ ନାଁ ଶୁଣିଛି ।

ତୁମେ ଟିକେ ହସନ୍ତ । ଭିତରକୁ ଆସନ୍ତ । ମୁଁ କହନ୍ତି—ଏକା ଏକା ବୋର୍ ହେଉଥିଲି । ଆସିଲେ ଯାହା ହେଉ ଭଲ ହେଲା ।

ତୁମେ ମୋ ଖଟ ଉପରେ ବସନ୍ତ । ମୁଁ ଖଟ ଉପରେ ପଡ଼ିଥିବା ବନ୍ଧା ଲୁଙ୍ଗି ଅଣ୍ଡରୱେୟାର ଘୁଞ୍ଚାଇ ଦେଇ ତୁମର ବସିବା ପାଇଁ ଜାଗା କରି ଦିଅନ୍ତି ।

ତୁମେ ଟିକେ ଥକା ମାରିବା ଭଙ୍ଗୀରେ ପଚାରନ୍ତ—ଆଉ ସବୁ କେମିତି ଚାଲିଛି । ସବୁ ଭଲ ତ !

ମୁଁ କହନ୍ତି – ଭଲ ଆଉ କଣ । ଭଲ ମନ୍ଦ ମିଶାମିଶି ।

ତା ପରେ ମୁଁ ଉଠି ଯାଆନ୍ତି । ଜଗନ୍ନାଥକୁ ପଠାନ୍ତି ଗାନ୍ଧି ଦୋକାନରୁ ଚା', ରାମକୃଷ୍ଣ ପାଖରୁ ଜର୍ଦ୍ଦାଦିଆ ପାନ ଆଉ ସୁନ୍ଦିଭାର ଆଣିବାକୁ ।

ମୋ ପାଖରେ ପଇସା ନଥିବା ହୁଅନ୍ତା । ମୁଁ ବ୍ୟସ୍ତହୋଇ ମୋ ପକେଟ ଖୋଜନ୍ତି । ଡ୍ରୟାର ତଳେ ଖୋଜନ୍ତି । ତୁମେ ତୁମ ପକେଟରୁ ଟଙ୍କାକିଆ ନୋଟ ଗୋଟିଏ ବାହାର କରି ଜଗନ୍ନାଥକୁ ବଢ଼ାଇ ଦେଇ କହନ୍ତ – ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଦେଉଛି ।

ମୁଁ ଆହୁରି ବ୍ୟସ୍ତ ହୋଇ ଉଠନ୍ତି । ମୋ ପାଖରେ ଗୋଟିଏ ଦଶଟଙ୍କିଆ ନୋଟ ବ୍ୟତୀତ ଆଉ କିଛି ନାହିଁ । ସେଥିରେ ପୁଣି ଚଳିବା ଦେବାକୁ ଆଉ ଦଶ ଦିନ ବାକି । କେବଳ ମୁହଁରେ ବ୍ୟସ୍ତତାର ଅଭିବ୍ୟକ୍ତି ନେଇ ଚୁପ୍‌ଚାପ୍ ରହି ଯାଆନ୍ତି ।

ଆମର କଥାବାର୍ତ୍ତା ଚାଲନ୍ତା । ଆମେ ଆପଣରୁ ତୁମେକୁ ଓହ୍ଲାଇ ଆସନ୍ତେ । ଜଗନ୍ନାଥ ଚା' ଆଣି ହେଣ୍ଡେଲ ଭଙ୍ଗା କପ୍‌ରେ ତୁମକୁ ପିଇବାକୁ ଦିଅନ୍ତା । ତୁମେ

ମନ ଖୁସିରେ ପିଅନ୍ତ । ସୁମିନାର ଲଗାଇ ଧୂଆଁ ଛାଡ଼ନ୍ତ । ପାନ ଚୋବାଇ ଝର୍କା ରେଲିଂ ଦେଇ ପାନପିକ ବାହାରକୁ ପକାଇ କହନ୍ତ—ଟିକେ ନିଦ ଲାଗିଗଲା ।

ହଠାତ୍ ତୁମେ ଏଠାକୁ ଆସିବାର କାରଣ କହନ୍ତ । ଗୋଟିଏ ଦର୍କାର ଗୋଟିଏ । ଏ. ଜି. ଅଫିସରେ ଇଣ୍ଟରଭ୍ୟୁ ଦେବାକୁ ଆସିଛ ।

ତୁମେ ପଚାରନ୍ତ—ଧରାଧର ଚଳେନା ? ଯେତେ କଷ୍ଟ ଟଙ୍କା ଲାଗେ ତା ର ବ୍ୟବସ୍ଥା କରିବ । କିନ୍ତୁ ଗୋଟିଏ ନ ହେଲେ ବହୁତ ଅସୁବିଧା ।

ସେତେବେଳେ ମୋତେ ତୁମ ଅପେକ୍ଷା ଅଧିକ ସୁଖୀ ଦେଖା ଯିବା କଥା । କିନ୍ତୁ ମୁଁ ସେ ସବୁ ବାହାରେ ପ୍ରକାଶିତ ହେବାକୁ ଦିଅନ୍ତ ନାହିଁ । କେବଳ ଗୁରୁଜନ ଭଳି ଉପଦେଶ ଦିଅନ୍ତ—ଇଣ୍ଟରଭ୍ୟୁରେ ଭଲ କର, ହୋଇ ଯାଇପାରେ ।

ତା ପରେ କଥା ପ୍ରସଙ୍ଗରେ ତୁମ ପ୍ରେମ କାହାଣୀ କହନ୍ତ । ପ୍ରେମିକାର ବାପା ଯେ ତୁମ ଭଳି ବେକାର ଅପଦାର୍ଥକୁ ଝିଅ ଦେବେ ନାହିଁ ସେ କଥା ବି କହନ୍ତ । ତୁମେ ଆହୁରି କହନ୍ତ—ଗାଁରେ ତୁମର ଅଳ୍ପ ଚାଷ ଜମି । ଘରେ ବିଧବା ମା । ବାହା ହେବା ପାଇଁ ଦୁଇଟି ଭଉଣୀ । ଅଷ୍ଟମ ଶ୍ରେଣୀ ପଢ଼ୁଛି ତୁମ ସାନ ଭାଇ । ବାପା କରି ଯାଇଥିବା ଋଣର ସୁଧ ବଢ଼ି ଚାଲିଛି । ଗଲା ଥର ବର୍ଷେ ବନ୍ୟାରେ ଫସଲ ଧୋଇ ଯାଇଛି ।

ମୁଁ ମୌଖିକ ସାନ୍ତ୍ୱନା ଦିଅନ୍ତ - ସମସ୍ତଙ୍କ ଅବସ୍ଥା ସେମିତି । ଗୋଟିଏ ଚାକିରି ପାଇଲେ ସବୁ ଠିକ୍ ହୋଇଯିବ ।

ତୁମେ ହଜାର ହଜାର ବେକାରଙ୍କ ଗହଣରେ ଇଣ୍ଟରଭ୍ୟୁ ଦିଅନ୍ତ । ସମସ୍ତଙ୍କ ଭଳି ବାହାରକୁ ଆସି କହନ୍ତ—ହେବନି । ଖରାପ ହୋଇଛି ।

ସଞ୍ଜରେ ତୁମକୁ ନେଇ ମୁଁ ଷ୍ଟେସନ ଯାଆନ୍ତ । ଇଣ୍ଟରଭ୍ୟୁର ଖରାପ ହୋଇଛି ବୋଲି ତୁମେ ଚିନ୍ତା କରନ୍ତ ନାହିଁ । ଉଲ୍ଟା ଟିକେ ଯାଆନ୍ତ ।

ଟ୍ରେନ୍‌ରେ ବସିଲା ପରେ ମୁଁ କହନ୍ତ—କେବେ ସମୟ ପାଇଲେ ଆସ । ତୁମେ କେମିତି ଏକ ପ୍ରକାର ଅସହାୟତାର ଆଖି ନେଇ ମୁଣ୍ଡ ହଲାନ୍ତ । ମୁଁ ତୁମର ସେଇ ମୁହଁ ଦେଖି ଭିତରେ ଖୁସି ହୋଇ ଉଠନ୍ତ । ତାପରେ ଟ୍ରେନ୍‌ର ଚକ ଗଡ଼ିଲେ ତୁମ ପାଇଁ ହାତ ହଲାଇ ଦେଇ ମୁଁ ଅଳ୍ପ ସମୟ ପାଇଁ ଉଦାସ ହୋଇ ଉଠନ୍ତ ।

ତୁମେ କେବେ ଗଞ୍ଜେଇ ଟାଣିଛ ଈଶ୍ୱର, କେବେ ମଦ ପିଇଛ ? କେବେ ବେଶ୍ୟା ଘରକୁ ଯାଇଛ ?

ମୁଁ ଜାଣେ ତୁମକୁ ମଣିଷ ରୂପ ଦେଲା ପରେ କେଉଁଠି ନା କେଉଁଠି ଏସବୁ ଧନ୍ଦା ଆରମ୍ଭ କରିବ । ଯଦି ପୃଥିବୀରେ ମୋ ପାଖାପାଖି ରହିବ, ତାହେଲେ ମୋ ସହ ଦୋସ୍ତୀ ଜମିଯିବ । କାରଣ ଚୋରକୁ ଚୋର ଚିହ୍ନେ ପରା !

ତୁମର ପ୍ରେମିକା ଅଛନ୍ତି ? କେବେ ତାଙ୍କୁ ଚୁମା ଖାଇଛ ? କେବେ ତାର ବ୍ଲାଉଜ ବୋତାମ, ବ୍ରା'ର ହୁକ୍ ଖୋଲିବାର ଚେଷ୍ଟା କରିଛ ?

ଈଶ୍ୱର, ତୁମର କେହି ନାହାଁନ୍ତି । ତୁମେ କେବେ କିଛି କରି ପାରି ନାହିଁ । ମୁଁ ଚ୍ୟାଲେଞ୍ଜ ଦେଉଛି ତୁମେ ଏଇ ଈଶ୍ୱର ଜନ୍ମରେ କିଛି କରି ପାରିବ ନାହିଁ । ତେଣୁ ଆସ, ବରଂ ମଣିଷ ହୋଇ ବଞ୍ଚ । ବେଦ, ଉପନିଷଦ, କୋରାନ୍, ବାଇବେଲ୍ ପୃଷ୍ଠାରେ ରହି ତୁଚ୍ଛାଟାରେ ଆଉ ସଡ଼ ନାହିଁ ।

ସମସ୍ତେ କହନ୍ତି ପରା—ତୁମେ ଯେତେବେଳେ ଯାହା ଚାହିଁବ ତା ପାରିବ । କିନ୍ତୁ ମୁଁ ତୁମକୁ ଚ୍ୟାଲେଞ୍ଜ ଦେଇ କହୁଛି – ଏଇ ମୁହୂର୍ତ୍ତରେ, ଠିକ୍ ଏଇ ମୁହୂର୍ତ୍ତରେ ପାରିବ ମୋତେ ମାରି ଦେଇ ?

ପାରିଲ ନାହିଁ । ମୁଁ ଆଗ ଭଳି ଲେଖୁଛି । ଏଇ ମୁହୂର୍ତ୍ତରେ ଲେଖୁଛି । ମୁଁ ବଞ୍ଚିଛି । ତୁମେ ହାରିଗଲ । ଏଇ ଧରଣର ଚ୍ୟାଲେଞ୍ଜ ନ ହାରିବା ପାଇଁ ସମସ୍ତଙ୍କୁ ବୋଧହୁଏ ଶିଖେଇ ଦେଇଛ – ଈଶ୍ୱର ମଙ୍ଗଳମୟ । ସେ କାହାର କ୍ଷତି କରନ୍ତି ନାହିଁ ।

ଠିକ୍ ହେଲା, ତୁମେ ମଙ୍ଗଳମୟ । ତୁମେ ମୋର ମଙ୍ଗଳ କର ! ଏଇ ମୁହୂର୍ତ୍ତରେ ମୋ ହାତକୁ ଲକ୍ଷେ ଟଙ୍କା ଆଣି ଦେଲ ! ତୁମେ ନିଶ୍ଚୟ ପାରିବ । ପାରିବ ନାହିଁ ? ସେ ଯାଏ ତୁମର ନାହିଁ । ଏ ଧରଣର ଚ୍ୟାଲେଞ୍ଜରୁ ନ ହାରିବା ପାଇଁ ତୁମେ ବୋଧହୁଏ ସମସ୍ତଙ୍କୁ ମୁଖସ୍ତ କରାଇ ଦେଇଛ — ଶ୍ରମଂ ଫଳନ୍ତି ସର୍ବଦା !

ଶୁଣିଛି ସ୍ୱର୍ଗରାଜ୍ୟ ଖୁବ୍ ନିଃସଙ୍ଗ । ତୁମେ ଯଦି ସେମିତି ଏକ ରାଜ୍ୟରେ ଥାଅ ତା' ହେଲେ ଖୁବ୍ ନିଃସଙ୍ଗ ହୋଇ ପଡ଼ୁଥିବ ନୁହେଁ ? ତୁମେ କଣ ଥରେ ଥରେ ନିର୍ଜନରେ ବସି କାନ୍ଦ ? ବେଶୀ ନିଃସଙ୍ଗ ହେଲେ ମୋ ଭଳି କ'ଣ ସିଗାରେଟ ଟାଣ ?

ତୁମେ ମୋର ବନ୍ଧୁ ହୋଇ ଆସ । ମୁଁ ତୁମକୁ କେତେ ଝିଅ ଘରକୁ ବୁଲାଇ ନେବି । ତୁମକୁ ସାଇକେଲ ଆଗରେ ବସାଇ ସହରର ପରିକ୍ରମା କରିବି । ସଞ୍ଜରେ ସାଇକେଲ ରଖି ରାସ୍ତା ଉପରେ ଘୁରି ବୁଲିବା । ସିଗାରେଟ ଭିତରେ ଗଞ୍ଜେଇ ଭର୍ତ୍ତି କରି ଟାଣିବା । କେତେବେଳେ ପୁଣି ପଇସା ହେଲେ ଦି ପେଗ୍ ପକାଇ ନେବା । ରାସ୍ତା

କଡ଼ରେ ଛିଡ଼ା ହୋଇ ବାଦାମ ଖାଇବା । ନହେଲେ ନେହ୍ରୁନଗର ନିକଟ ନଦୀର ଅନେକ ଅନେକ ଦୂରକୁ ଗ୍ଲାସିବା ।

ମୋର ଅନେକ ଦିନର ଧାରଣା ଥିଲା ତୁମେ ଗୋଟିଏ ସୁନ୍ଦର । ମୁଁ ତୁମକୁ ଅନୁଭବ କରିଛି ଅନେକଥର । ସେତେବେଳେ ମୁଁ ଖୁବ୍ ସାନ । ମା' ମୋତେ ନେଇ ମନ୍ଦିର ଯାଉଥିଲେ । ମୁଁ ଛିଡ଼ା ହୋଇ ତୁମର ଆଖି ନାକ କାନ ଦେଖୁଥିଲି । ଘଣ୍ଟା ବାଜିଲା । ଆରତି ହେଲା । ମୁଁ ଏକ ପ୍ରକାର ବାସ୍ନା ପାଇଲି । ଝୁଣା ଧୂପ ଫୁଲ ଚନ୍ଦନର ସମ୍ମିଳିତ ଏକ ପ୍ରକାର ଥଣ୍ଡା ବାସ୍ନା । ମା'କୁ ପଚାରିଲି, ସେ କହିଲେ ତୁମର ବାସ୍ନା । ସେଇଟା ପ୍ରଥମେ ମୋର ତୁମକୁ ମୋର ଅନୁଭବ ।

ତାପରେ ଆଉ ଦିନେ ସଞ୍ଜରେ ନଈ କୂଳରେ ଏକା ବସି ପଶ୍ଚିମ ଆକାଶ ଦେଖୁଥିଲି । ରଙ୍ଗୀନ ଆକାଶ । ନଈ ପାଣିରେ ଆକାଶ । ଧାନ କ୍ଷେତରେ ଆକାଶ । ଚାରିଆଡ଼େ ଆକାଶଟା କେମିତି ମାଡ଼ି ପଡ଼ି ରହିଥିଲା । ଦୂର ଗାଁ ଉପରେ ଧୂଆଁର ରେଖା ଗୋଟିଏ ଲେପି ହୋଇ ଯାଉଥିଲା । ମୋ ମୁଣ୍ଡ ଉପର ଦେଇ ଚିରର୍ ଚିରର୍ ଚଢ଼େଇ କେତେଟା ଉଡ଼ିଗଲେ । ମୁଁ କେମିତି ଆଚ୍ଛନ୍ନ ହୋଇ ଆସିଲି । ସେତେବେଳେ ତୁମ ବାସ୍ନା ପାଇଲି । ମନ୍ଦିର ଭିତରର ସେଇ ବାସ୍ନା । ବୁଝି ପାରିଲି ତୁମେ ସୁନ୍ଦର ସୁନ୍ଦର ନିର୍ଜନ ସ୍ଥାନରେ ଘୁରିବୁଲ ।

ଆଉ ଦିନେ ତୁମେ ବୋଧହୁଏ ଆସିଥିଲ ଦେବୀ ଘର ଆଡ଼େ । ତୁମେ ହୁଏତ ଜାଣ — ମୋର ସେଇ ବେମାରି ଥରେ ଥରେ ଦେଖା ଦିଏ । ଦେବୀର ପାଦରେ ଚୁମା ଦେବାର ବେମାରି । ମୁଁ ସେଦିନ ତାର କପାଳ ଚୁମ୍ବନ କଲି । ଆନତମୁ କେଶ ଝୁଲାଇ ଦେବୀ ଆଖି ବନ୍ଦ କରି ଛିଡ଼ା ହୋଇ ରହିଲା । ମୋ ଭିତରେ ତାକୁ ପ୍ରଣାମ କରିବାର ଇଚ୍ଛା ଧୀରେ ଧୀରେ ଜାଗି ଉଠୁଥିଲା । ସେତେବେଳେ ତୁମର ସେଇ ବାସ୍ନା ପାଇଲି । ଖୁବ୍ ଥଣ୍ଡା ସ୍ନିଗ୍ଧ ବାସ୍ନା । ତୁମେ ବୋଧହୁଏ ଆମର ଖୁବ୍ ପାଖ ଦେଇ ଗ୍ଲାଗଲ । ମୁଁ ତୁମକୁ ମୋର ସ୍ନାୟୁରେ ଅନୁଭବ କଲି ଏବଂ ଦେବୀର ପାଦ ଛୁଇଁ ପ୍ରଣାମ କଲି ।

ତୁମେ କେବେ ମରିବ ମୁଁ ଜାଣେ । ଯେଉଁ ଦିନ ମୋର ସବୁ ଅନୁଭବ ଶକ୍ତି ଲୋପ ପାଇବ । ସେଇ ଯେଉଁଦିନ ଚାରିଜଣ ବାଉଁଶ ଉପରେ ପକାଇ ଲୋକମାନେ ତୁମକୁ ଡାକି ଡାକି ମୋତେ ମଶାଣୀ ଆଡ଼େ ନେଇ ଯିବେ, ସେଦିନ ତୁମକୁ ମୋ ସହ ଯିବାକୁ ହେବ ଯେ ! ତୁମର ସେଦିନ ରକ୍ଷା ନାହିଁ । କାରଣ ମୁଁ ଯେ ତୁମକୁ ତିଆରି କରିଛି । ତୁମେ ଯିନା ବ୍ରହ୍ମାଣ୍ଡର ସ୍ରଷ୍ଟା । ମୁଁ ସେ ତୁମର ସ୍ରଷ୍ଟା ।

ଏତେ ସବୁ ବାଜେ କଥାରୁ କଣ ମିଳିବ । ତୁମେ ଆସ । ଯଦି ଏ. ଜି. ଅଫିସରେ ତୁମ ଚାକିରି ମିଳିଯାଆନ୍ତା ତାହେଲେ ଦୁହେଁ ସାଙ୍ଗ ହୋଇ ଗୋଟିଏ ଜାଗାରେ ରହନ୍ତେ । ତୁମର ଯଦି ଚାକିରିଟା ନ ମିଳେ ?

ଚାକିରି ନ ମିଳିଲେ ଅବଶ୍ୟ ଖୁବ୍ ଅସୁବିଧାରେ ପଡ଼ିବ । ପୃଥିବୀରେ ବଞ୍ଚିବା ପାଇଁ ପଇସା ଦରକାର । ଗୋଟିଏ କାମ କରିବ ?

କାମଟା ହେଲା ସ୍ମଗ୍‌ଲିଂ କରିବା । ବହୁତ ପଇସା । ଏଇ ଦେଖୁନ ଏଠି ଯେଉଁମାନେ ବଡ଼ ହୋଇଛନ୍ତି ସେମାନେ ସମସ୍ତେ ସ୍ମଗ୍‌ଲିଂ କରିଛନ୍ତି । ଅବଶ୍ୟ ଏଇ ଧରଣର ହେବା ମୋ ଜୀବନର ଲକ୍ଷ୍ୟ ନୁହେଁ । ନହେଲେ କେଉଁ ଦିନରୁ ଆରଂଭ କରି ଦିଅନ୍ତିଣି । କିନ୍ତୁ ତୁମେ ମୁଁ ହାତ ମିଳେଇ କାମ ଆରଂଭ କରି ଦେବା ।

ଅବଶ୍ୟ ଏ ଧନ୍ଦାରେ ଖୁବ୍ ରିସ୍କ ଅଛି । ଜେଲରେ ପଡ଼ିବାର ଭୟ ଅଛି ।

ତୁମେ ସିନେମା ଷ୍ଟାର ହୋଇ ପାରିବ ଈଶ୍ୱର ! ବହୁତ ପଇସା, ବହୁତ ଆରାମ । କିନ୍ତୁ ଇନ୍‌କମ୍‌ଟେକ୍ସ ଅଫିସରମାନଙ୍କୁ ସବୁବେଳେ ଡରି ଚାଲିବାକୁ ପଡ଼ିବ ।

ବରଂ ତୁମେ ଏଥର ଇଲେକ୍‌ସନରେ ଛିଡ଼ା ହୁଅ । ତୁମ ନାଁ ସମସ୍ତେ ଜାଣିଛନ୍ତି । ମୁଁ ତୁମ ପାଇଁ ପ୍ରଚାର କରିବ । ଥରେ ନେତା ହୋଇଗଲେ ତୁମ ସାତ ପୁରୁଷ ଆରାମରେ ବସି ଖାଇ ପାରିବେ । କିନ୍ତୁ ସେଥିରେ ବି ଅସୁବିଧା ଅନେକ ।

ଛାଡ଼ ଏସବୁ ଧନ୍ଦା । ପ୍ରେମ କର । ଯେତେ ଦିନ ବଞ୍ଚିଛ ମଣିଷ ଭଳି ସବୁ ଅନୁଭବ ଉପଲବ୍‌ଧିର ଝର୍କା କବାଟ ଖୋଲି ବଞ୍ଚିରହ ।

ତୁମର ପ୍ରେମିକା ନାହାନ୍ତି ଈଶ୍ୱର ! ବ୍ୟସ୍ତ ହୁଅନ । ତୁମେ ମୋ ସହ ଦେଶ ଘରକୁ ଚାଲ । ଦେଶ ସହ ତୁମର ପରିଚୟ କରାଇ ଦେବି । ଚମତ୍କାର ଝିଅ ଦେଶ । ସେ ସକାଳେ ଗାଧୋଇ ସାରିଲା ପରେ ତାର ଚମତ୍କାର ଆଖି, ଖୋଲା କେଶ, ବଳିଷ୍ଠ ଦେହ ଦେଖିବାକୁ ମୋତେ ଭାରି ଭଲ ଲାଗେ । ମୁଁ ଜାଣେ ତୁମକୁ ବି କେଶ ଭଲ ଲାଗିବ । ଦେଶ ଗପିବାକୁ ଖୁବ୍ ଭଲ ପାଏ ।

ତାପରେ ଯାହା ସହ ତୁମର ପରିଚୟ କରାଇ ଦେବି ସେଇ ହେବ ତୁମର ପ୍ରେମିକା । ଦେଶର ସାନ ଭଉଣୀ ମାନସୀ । ଭୀଷଣ ବଦମାସ ଝିଅଟି । କଣେଇଆ । ତାର ସମସ୍ତ ଅବୟବରୁ ଧୀରେ ଧୀରେ ସଙ୍ଗୀତର ସ୍ୱର ଉଠି ଆସୁଛି । ଅଦୃଶ୍ୟ ଫୁଲ

ଫୁଟି ଆସୁଛି ତାର ପ୍ରେମ ରୂପରେ । ମେ ବ ତୁମ ସହ ଜମିଯିବ । ବେଶ୍ ସମସ୍ତ କଟିଯିବ । କୈଶୋର ପ୍ରେମ ଖୁବ୍ ମିଠା ।

ବୟସ ତୁମର ତ ଅଳ୍ପ । ତା ସହ ବେଶ ମାନିବ ।

ମୁଁ ଜାଣେ ତୁମେ ବିଶ୍ୱାସଘାତକ । ତୁମେ ଯଦି ନା ଯଦି ସୁଯୋଗ ପାଇଲେ ମାନସୀକୁ ଛାଡ଼ି ଦେବୀ ଉପରେ ଆଖି ପକାଇବ । ସେଦିନ ମୁଁ ତୁମକୁ ଶେଷ କରି ଦେବି । ମୁଁ ତୁମକୁ ସୃଷ୍ଟି କରିଛି ମାନେ ମୋତେ ନିଜ ହାତରେ ତୁମକୁ ଖତମ କରି ଦେବାକୁ ହେବ । ଅବଶ୍ୟ ଗୋଟିଏ କାମ କରାଯାଇ ପାରେ । ଅନେକ ଦିନ ହେଲା ଭାବୁଛି କଥାଟା । ଦେଖ, ଆମ ଜୀବନରେ ତ କିଛି ଘଟଣା ଘଟିନି । ତେଣୁ—

ମନେକର ତୁମେ ମୋ ସହ ବିଶ୍ୱାସଘାତକତା କଲ । ଯଦି ମୋ ଅବର୍ତ୍ତମାନରେ ଘରେ ବସି ଦେବୀ ସହ ଜମେଇଲ । ମାନସୀ ସେଠାରେ ଉପସ୍ଥିତ ନଥିବା ବେଳେ ଦେବୀକୁ ଆଲିଙ୍ଗନ କଲ । ମନେକର ସେ ଚିତ୍କାର କଲା । ତା' ମୁହଁରେ ତୁମ ମୁହଁ ମାଡ଼ି ଦେଲ ।

ସେଇ ସମୟରେ ମୁଁ ହଠାତ୍ ପଶି ଆସିଲି । ଏ ଦୃଶ୍ୟ ଦେଖି ନୀରବରେ ହସିଲି । କିଛି କହିଲି ନାହିଁ । ତୁମେ ସେତେବେଳେ ସାବ[illegible] ପଜାମାରେ ଛୁରା ହୋଇ ରହିଲ [illegible] । ମୁଁ ଭିତର ପଟୁ କବାଟ ଲଗାଇ ଦେଲି । ବାପରେ ପକେଟରୁ ଛୁରୀ ବାହାର କରି ତୁମ ଗ୍ଳୁଭ ପେଟ ବେକ ମୁହଁ ଗ୍ଳୁଭ ପେଟ ଗୋଡ଼ ହାତ ଗ୍ଳୁଭ ବେକ ମୁହଁରେ ବସାଇ ଗଲି । ରକ୍ତଜବା ପରି ତୁମେ ଖସି ପଡ଼ିଲ । ଦୁଇ କ୍ଷଣ ଥରି କଡ଼ ଲେଉଟାଇ ନୀରବ ହୋଇଗଲ ।

ଦେବୀକୁ ଚାହିଁଲି । ସେ ଅଚେତ ହୋଇ ଯାଇଥିଲା । ମୁଁ ତାକୁ ବିବସ୍ତ୍ର କଲି । ତୁମର ରକ୍ତାକ୍ତ ଦେହ ପାଖରେ ତାକୁ ସଙ୍ଗମ କଲି ଏବଂ ସେଇ ଛୁରୀ ତାର ଗ୍ଳୁଭ ପେଟ ବେକ ମୁହଁ ଗ୍ଳୁଭ ପେଟ ଗୋଡ଼ ହାତ ଗ୍ଳୁଭ ବେକ ମୁହଁରେ ବସାଇ ଦେଲି ଏବଂ ଶେଷରେ ସେଇ ଛୁରୀ ମୋ ଗ୍ଳୁଭ—ଗ୍ଳୁଭ—ଗ୍ଳୁଭ—ପେଟ—ପେଟଏଟ—.

କେମିତି ହୁଅନ୍ତା ଈଶ୍ୱର ! ଖୁବ୍ ଜମନ୍ତା ନୁହେଁ ? ମୁଁ ଜାଣେ ତୁମେ ମୋର, ମୁଁ ତୁମର ଅନ୍ୟ ଏକ ସତ୍ତା !

ତେଣୁ ଏ ପୃଥିବୀ ଛାଡ଼ି ଅନ୍ୟ ଏକ ସୁନ୍ଦର ପୃଥିବୀରେ ମୁଁ ତୁମକୁ ଖୁବ୍ ଆରମ୍ଭରୁ ଭଲ କରିବା ଶିଖିବି ।

# ଚୟନିକା

[ କଥାଶିଳ୍ପୀ କନ୍‌ହେଇଲାଲଙ୍କ ଲଭିନ୍ନ କଥା ଓ କାହାଣୀର ନିର୍ବାଚିତ ଅଂଶ ବିଶେଷ ]

॥ ନୂତନ ଉପ୍ରକ ॥

"ମୋତେ ମନେ ହେଲା ପୃଥିବୀର ସବୁଟା ମିଛ । 'ସମ ନାମ ସତ୍ୟ ହେ' ବି ମିଛ । ଶରୀରହିଁ ସତ୍ୟ । ଶରୀରର ସ୍ଥିତି ବିନା ପୃଥିବୀର ସବୁ ଶୂନ୍ୟ, କିଛି ମାନେ ହୁଏନା । ସୃଷ୍ଟି ଭାବପ୍ରବଣତା ନିରର୍ଥକ । ଦେହର ଦାହ, ପ୍ରାପ୍ତି ଉପଭୋଗ ଇତ୍ୟାଦି ସ୍ଥୂଳ ଉପଲବ୍ଧିହିଁ ପ୍ରକୃତ ବସ୍ତୁ । ମନ, ହୃଦୟ, ବିବେକର ସୃଷ୍ଟ ଆକାଙ୍‌କ୍ଷା ନାଦନିକତା, ତନ୍ମୟତା, ଇତ୍ୟାଦି ଅର୍ଥହୀନ । ଚରିତ୍ର, ନ୍ୟାୟ, ପୁଣ୍ୟ ଇତ୍ୟାଦି ଶବ୍ଦ ମୃତ୍ୟୁ ପାଇଁ ନିରର୍ଥକ । ମୃତ୍ୟୁ ଅବଶ୍ୟମ୍ଭାବୀ । ମଣିଷର ସବୁ ନ୍ୟାୟ, ଧର୍ମବୋଧ, ପବିତ୍ରତା ସତ୍ତ୍ୱେ ଯଦି ଅତର୍କିତରେ ମୃତ୍ୟୁ ଆସେ ତାହାଲେ ଜୀବନକୁ ଉପଭୋଗ କରି, ଅଭିଳାଷରେ ପୂର୍ଣ୍ଣତା ଆଣି ମୃତ୍ୟୁ ପାଇଁ ପ୍ରସ୍ତୁତ ହେବା ଉଚିତ ।"

॥ କୁହେଳି ॥

× × × ହଠାତ୍ ମୋତେ ମନେ ହୁଏ ମୁଁ ଯେପରି ସ୍ଲେଜରେ ବସିଛି । ମୋତେ ଦୁଇଟା କୁକୁର ଟାଣି ଗୁଲିଛନ୍ତି । ମାଇଲ ମାଇଲ ବ୍ୟାପୀ କେବଳ ବରଫ ଆଉ ବରଫ, ଅଥଚ ମଣିଷ ନାହାନ୍ତି । ମୁଁ ଜାଣେ ମୁଁ କେବେ ତୁନ୍ଦ୍ରା ଅଂଚଳକୁ ଯାଇ ନାହିଁ । ତଥାପି ଏ ଧରଣର ଦୃଶ୍ୟ କେମିତି ମୋ ଭିତରେ ଜମି ଗଲା ବୁଝି ପାରୁ ନାହିଁ । ମୁଁ ଯାହା କହିବି ସେ କଥାଟା ଠିକ୍ ଏଇ ଧରଣର, ମାନେ ମୋର ପ୍ରାୟ ଅନେକ ସମୟରେ ମନେ ହୁଏ ଟ୍ରେନ୍‌ରେ ଯାଉଁ ଯାଉଁ ଗୋଟିଏ ସୁନ୍ଦର ପାହାଡ଼ ତଳେ ଷ୍ଟେସନରେ ଓହ୍ଲାଇ ପଡ଼ିଛି । ଷ୍ଟେସନ ପାଖରେ ସୁନ୍ଦର ଫୁଲ ବଗିଚା । ବାହାରେ ଗୋଟିଏ ଯୋଡ଼ାଏ ସୁନ୍ଦର ଦୋକାନ । ସେ ଦୋକାନରେ ଥାକ ଥାକ ସଜା ହୋଇଛି ଖାଦ୍ୟ ପଦାର୍ଥ । ସେ ଖାଦ୍ୟରେ କିଛି ଭେଜାଲ ନାହିଁ କି ତା' ଉପରେ ଧୂଳି ମାଛିର ଭିଡ଼ ନାହିଁ । ମୁଣ୍ଡରେ ଶ୍ୱେତ ଚନ୍ଦନ ଟୋପା ଲଗାଇ ଦୋକାନୀ ଖୁବ୍ ବିନମ୍ରୀ ହୋଇ ଆହ୍ୱାନ କରୁଛି ଭିତରେ ବସ । ସେ ଦୋକାନ ପାର ହେଲେ ସୁନ୍ଦର ଫୁଲର ବଗିଚା ଭିତର ଦେଇ ଅଣଓସାରିଆ ରାସ୍ତା । ସେ ରାସ୍ତାରେ ଗାଡ଼ି ମଟର ସହ ଧକ୍‌କା ହେବାର ଭୟ ନାହିଁ । ଦୁଇ ପାଖରେ ଫୁଲ ଚଢ଼େଇ, ଚଢ଼େଇ ଫୁଲ, ଫୁଲ ପ୍ରଜାପତି, ପ୍ରଜାପତି ଫୁଲ ଏବଂ ଫୁଲ । ମୁଁ ଆଗେଇ

ଗୃହଲାଗୁ ସେ ଗସ୍ତାରେ । ଅବଶ୍ୟ ଗସ୍ତାସାଗ କେମିତି କୁହୁଡ଼ି ଘୋଟି ରହିଛି । ଖୁବ୍ ଭୋରରୁ ଉଠି ଗାଧୋଇ ପଡ଼ିଲେ ଯେପରି ଅକାରଣରେ ପବିତ୍ର ଲାଗେ ସେଇ ସମୟରେ ସେମିତି ପବିତ୍ର ଲାଗୁଛି । ସାମ୍ନାରେ ସୁନ୍ଦର ବଗିଚା ଘେରା ଗୋଟିଏ ଶ୍ୱେତ ଗୃହଘର । ମୁଁ ଯାଇ ସେ ଘରର କବାଟରେ ହାତ ଦେଲା ମାତ୍ରେ ଖୋଲି ଯାଉଛି କବାଟ । ଭିତରକୁ ପ୍ରବେଶ କଲା ମାତ୍ରେ କେମିତି ତନ୍ମୟ ହୋଇ ଦେଖୁଛି ଘରଆଡ଼େ ହାଲୁକା ସବୁଜ ରଙ୍ଗ । ଡାହାଣ ପାଖ ଦର୍ଜା ଖୋଲି ଦେଖୁଛି କାଚ ଆଲମାରୀରେ ଲୋଭନୀୟ ଖାଦ୍ୟ ସବୁ ସଜା ହୋଇଛି । ବାଁଆଡ଼େ କବାଟ ଖୋଲି ଦେଖୁଛି ପଦ୍ମ ପୋଖରୀ । ସେ ପୋଖରୀରେ ପଦ୍ମ ମଝି ତଳେ ତଳେ ମାଛ ଚହଟି ଯାଉଛି । ପୋଖରୀ ତୁଠରେ ନଡ଼ିଆ କଦଳୀ ଗୁଆର ବଗିଚା । ବାଁପଟ କବାଟ ବନ୍ଦ କରି ଅବଶିଷ୍ଟ ବନ୍ଦ ଦରଜା ଖୋଲି ଦେଲା ମାତ୍ରେ କସ୍ତୁରୀର ସୌରଭରେ ମୁଁ ମୋହାଚ୍ଛନ୍ନ ହୋଇ ଯାଉଛି । କୋଠରୀର ଗୋଟିଏ କୋଣରେ ମହମବତୀର କ୍ଷୀଣ ଫିକା ଆଲୋକ । ସେଇ ମହମବତୀର ଆଲୋକରେ ମୁଁ କେମିତି ଅନୁଭବ କରୁଛି ମୋ ଭିତର ବେଶ୍ ଆଲୋକିତ ହୋଇ ଉଠିଲାଣି । ସେଇ କ୍ଷୀଣ ସ୍ୱପ୍ନମୟ ଆଲୋକରେ ଦେଖୁଛି ଗୋଟିଏ ଖଟଣାରେ ପ୍ରତୀକ୍ଷାର ମୁଦ୍ରାରେ ଅର୍ଦ୍ଧଶାୟିତା ତରୁଣୀ । ମୋ ଭିତରେ ପ୍ରଣାମ କରିବାର ପ୍ରବୃତ୍ତି ଧୀରେ ଧୀରେ ଜାଗି ଉଠୁଛି । ପ୍ରଣାମ କରିବ କି ନାହିଁ ଭାବୁଥିବା ବେଳେ,—"ତୁମେ ଏତେ ଡେରିରେ ଆସିଲ, ମୁଁ ଯେ ତୁମକୁ ଅପେକ୍ଷା କରିଛି, ବିଶ୍ୱାସ କର କେଉଁ ଅନାଦି କାଳରୁ ତୁମକୁ ଅପେକ୍ଷା କରି ମୁଁ ଏଇ ଘରେ ବସିଛି"—ଏଇ ଧରଣର ଅନେକ କଥା ଶୁଣିଲା ପରେ ପଚାରୁଛି—ତୁମ ନାଁ କଣ ? "—କୁହେଳି ।"

॥ ଜୀବନ ଯାପନ ॥

× × × କେହି ମୋତେ ଘୃଣା କଲେ ମୋର କିଛି ଯାଏ ଆସେ ନାହିଁ । କେହି ଭଲ ପାଇଲେ ବି ମୋ ଭିତରେ ତରଙ୍ଗ ଉଠେ ନାହିଁ ।

× × × ଓଡ଼ିଶାରେ ଗହମ ହୁଏ ନାହିଁ, ତଥାପି ଲୋକେ ରୁଟି ଖାଆନ୍ତି । ଓଡ଼ିଶାରେ ପ୍ରଚୁର ଧାନ ଚାଷ ହୁଏ, ତଥାପି ଚାଉଳ ମିଳେନି । ଓଡ଼ିଶାରେ ସମୁଦ୍ର ନଦୀରେ ପ୍ରଚୁର ଜୀଅନ୍ତା ମାଛ ଧରଯାଏ, ତଥାପି ଲୋକ ଶୁଖୁଆ ଖାଆନ୍ତି ।

× × × ବନ୍ୟା ହେଲା, ପାଣିର ପ୍ରାଚୁର୍ଯ୍ୟରେ ପୃଥିବୀ ଭାସିଗଲା, କିନ୍ତୁ ମଣିଷର ହୃଦୟ ରସଶୂନ୍ୟ ହୋଇଗଲା । ବନ୍ୟା ଚାଲି ଯାଇଛି, ମଣିଷକୁ ରସ ଶୂନ୍ୟ କରି ଦେଇଛି ।

× × × ବଡ଼ି ଗ୍ରହଣା ପରେ ବେଁକୁ ଯାଉଥିଲି । ଆଣ୍ଠୁ ଯାଏ ପଟ୍ଟ ଜମି ଯାଇଥିବା ଧାନବିଲ ଭିତରେ ବି, ନଳ ... ଉତ୍ତରେ ପେଲ ନଈ ସୂଅକୁ ଶ୍ରେଷ୍ଠ ଏକ ଡଙ୍ଗାରେ ପାର ହୋଇ ଗାଁରେ ଯାଇ ପହଞ୍ଚିଲି ଘରପଟ କାନ୍ଥ ଚଢ଼ିଯାଇଛି । ପୋଷା ହାଣ୍ଡି ପିଠିରେ ମାଙ୍କଡ଼ ଚଢ଼ିଲା ବେଳେ ହାଣ୍ଡି ପଛ ଗୋଡ଼ ଲଗି ଠିଆ ହେଲେ ଯେମିତି ଦେଖାଯିବ, ଦୂରରୁ ଗୁଳଟା ସେମିତି ଦେଖାଯାଉଛି ।

× × × ସ୍ୱପ୍ନ ଥିଲା ଗୋଟିଏ ସୁନ୍ଦର ଘର ତିଆରି କରିବ । ସହରତଳିର ଯେଉଁ ଅଂଶରୁ ସହରର ନିଅନ୍ ଆଲୁଅ ଦେଖାଯାଏ, ପୁଣି ଝ'ଘଡ଼ ରାତିରେ ବଳୁଆ ହୁକେ-ହୋ କରେ ଏବଂ ଯେଉଁ ଜାଗାକୁ କେବେ ବଡ଼ି ପାଣି ନ ଆସେ, ସେମିତି ଏକ ଜାଗାରେ ଶ୍ରେଷ୍ଠ ଗୋଟିଏ ଘର ତିଆରି କରିବ । ସାମ୍ନା ବଗିଚାରେ ସୁନ୍ଦର ସୁନ୍ଦର ଫୁଲଗଛ ଲଗାଇ ଦେବ । ଘର ପଛପଟରେ ଲଗାଇ ଦେବ ବାଇଗଣ, ଜହ୍ନି, ଭେଣ୍ଡି । ବାଡ଼ିପଟେ ପୋଖରୀ ଖୋଳାଇଦେବ । ପୋଖରୀରେ ଛାଡ଼ିଦେବ ମାଛ ଚାଆଁଳା । ପୋଖରୀ ହୁଡ଼ାରେ ନଡ଼ିଆ, ଗୁଆ, କଦଳୀ । ତଥି ସଜାରେ ଫୁଲ ବଗିଚାରେ ବୁଲିବ, ବ୍ରୋକଲି ଘନ୍ତୁ ବାହାରି ତୋଳି ଆଣିବ ବାଇଗଣ, ଭେଣ୍ଡି, ଜହ୍ନି । କାଲି ଓଡ଼ିଶାର ନଦୀରେ ପ୍ରବଳ ବନ୍ୟା ଆସିଲା ।

|| ଉତ୍ତାନପାଦ ||

× × × ଥରେ ଥରେ ଧରାବନ୍ଧା ଜୀବନରୁ ଛୁଟିକି ଯିବାକୁ ବେଶ୍ ଲୋଭ ହୁଏ । ନ୍ୟାସ୍ତ ମାଡ ମଝିରେ ଜୀବନ ଅଣନିଃଶ୍ୱାସୀ ହୋଇ ଉଠେ ।

ତୁଳନା ଏମିତି ଦିଆଯାଇ ପାରେ : ସୁମାନ୍ତ ଏକ ନିଷ୍କମ୍ପ ମହମବତୀ ଶିଖା ହେଲେ ସେ (ସୁରୁଚି) ଗୋଟିଏ ନିଅନ ଆଲୁଅ ।

+ + + ସହରର ମଣିଷ ସବୁ ବଣ୍ଡାପନ ହୋଇ ଗଲେଣି ।

+ + + ବିଗନ୍ତ ବିସ୍ତାରୀ ଶସ୍ୟକ୍ଷେତ୍ର, ଦାଳଗଛର ଚହଳିଆ ଛାଇ, ଚନ୍ଦ୍ରର ଶୀତଳ ଚନ୍ଦ୍ରିକାର କିରଣ ଭିତରେ ବନଗୁଡ଼ା ସିଧାସିଧା ଝାଙ୍କିଲା ଚଢ଼େଇ ଭଳି ଉଡ଼ିଗଲେ ।

|| ଏକ ବ୍ୟବଚ୍ଛେଦର ଧାରା ବିବରଣୀ ||

+ + + କଣ୍‌ହେଇରେ, ବାପା ମୋର, ଧନ ମୋର, ଛୁ'ଟା ଏତେ ଟିକେ ପିଲା, କେତେ ବା ବୟସ ତୋର, ଏତେ ସବୁ ଜିନିଷ କେଉଁଠି ରଖି ଥିଲୁରେ ବାପା । ଏଇ ବୟସରୁ ତୋର ଏତେ ଅନୁଭୂତି ! ତୁ ଏତେ ଜିନିଷ ରୁହି ଭିତରେ ପୂରାଇ କେମିତି ବଞ୍ଚିଥିଲୁରେ ବାପା ! କିଏ ଜଣେ ଚନ୍ଦ୍ର ଗିଳି ଦିଅା କଷ୍ଟ ପାଉଥିଲା, ସୂର୍ଯ୍ୟକୁ ଖାଇ ସିନା ଜଳି ଯାଉଥିଲା, ତୁ ତ ସାରା ବ୍ରହ୍ମାଣ୍ଡ ଗିଳି ଦେଇ ଥିଲୁରେ ବାପା । + + +

ଜନ୍ମେଇରେ ବାଗା ମୋର, ଧନ ମୋର, ତୋ ହୃତ୍‌ପିଣ୍ଡ ଭିତରୁ ସବୁ ବାଜେ ଜଞ୍ଜାଳ ବାହାର କରି ଦେଲେ ଭାଗ୍ୟବତୀ। ଟେବୁଲ ଉପରେ ସେଗୁଡ଼ା ଗଦା ହୋଇଗଲା। ତା ଭିତରେ ଏତେ ସ୍ୱର୍ଣ୍ଣୋଦୟ, ଏତେ ସୂର୍ଯ୍ୟାସ୍ତ, ଏତେ ଦୁଃଖ, ଏତେ ଅସହାୟତା, ଏତେ ବ୍ୟର୍ଥତା, ଏତେ ନିଃସଙ୍ଗତା, ପୁଣି ଏତେ ସ୍ୱପ୍ନ, ଏତେ ଫୁଲ, ଏତେ ଚନ୍ଦ୍ର, ଏତେ ନକ୍ଷତ୍ର, ଏତେ ଆକାଶ ! ବିଶ୍ୱରୂପ ଦର୍ଶନ ହୋଇଗଲାରେ ଜନ୍ମେଇ। ବ୍ରହ୍ମାଣ୍ଡ ସାଲ ସାଲ ହୋଇ, ତୋ ହୃତ୍‌ପିଣ୍ଡେ ବସିଗଲା।

## ।। ଗୋଟିଏ ଘରପୋଡ଼ିର ଦୃଶ୍ୟ ।।

+ + + ମୁଁ ଖୁବ୍ ନିଃସଙ୍ଗ ହେଲେ ସିଗାରେଟ୍ ଟାଣେ। ଆଜି ସକାଳେ ନିଦ ଭାଙ୍ଗିଗଲା ପରେ ମନେ ହେଲା ମୁଁ ପୃଥିବୀରେ ଭୀଷଣ ଅସହାୟ ଆଉ ନିଃସଙ୍ଗ। ମୁଁ ଆଜି ଥରେ ଆଖି ବନ୍ଦ କଲି। ଖୁବ୍ କ୍ଲାନ୍ତ ଲାଗୁଛି। ଆଖି ବନ୍ଦ କରି ଅନୁଭବ କଲି ମୋ ମନରେ ଗୋଟିଏ କ'ଣ ଜଳୁଛି ହଳଦିଆ ରଙ୍ଗର ଶିଖା ଭଳି।

× × ଆଜି ଘର ଖଣ୍ଡେ ଦେଖାଇବାକୁ ଯିବି। ପାସ୍‌ର ଷ୍ଟେସନ ପାଖରେ ଘରଟିଏ ହେବନି ଆଚାନକ ନିର୍ମିତ ବନ୍ଧୁବେଶ। ଏମିତି କାନ୍ଥରେ ଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଛବି—ହେ ମୋର କାଳିଆ, ବଳଦାଉ ଓ ଚିଜମା ! ତୁମେମାନେ ମରିବେ କ'ଣ ମୋର ମୃତ୍ୟୁ ! ତୁମେ ସବୁ ମୋର ଆଉଁ ଥାନି ମୋ ଘର ବାରମ୍ବାର ଦେଖାଉଛ ! ତୁମେ ସବୁ ମୋର ସ୍ୱଜନ ଥାଉଁ ଥାନି ଦୁନିଆରେ ଭଡ଼ା ଘର ଦେଖିବା ସ୍ଥାନ ନାହିଁ। ତୁମେ ସବୁ ମୋର ରହିନିଥିବ ଥାଉଁ ଥାଉଁ ପୃଥିବୀ ଉପରେ ପାଦ ରଖିବା ପାଇଁ ମୋର କୌଣସି ଜାଗା ନାହିଁ ! ତେଣୁ ତୁମେମାନେ ମୋ ପାଇଁ ବନ୍ଧୁ ହେଲେ କେବେ ! + + ମୁଁ ନିଜକୁ ନିଜେ ଚିତ୍କାର କରି କହିଛି—ଯା, ତୁ ଗଛ ହୋଇ ଯା, ଲତା ହୋଇ ଯା, ପାହାଡ଼ ପର୍ବତ ଅରଣ୍ୟ ମରୁଭୂମି ହୋଇ ଯା, ସମୁଦ୍ର ଆକାଶ ବତାସ ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ସବୁ ହୋଇ ଯା। ତୋର ଆଶ୍ରୟର ଦରକାର କ'ଣ ? ତୁ ତ ନିଜେ ଅନ୍ୟ ପାଇଁ ଆଶ୍ରୟ ଏବଂ ତୁ ନିଜେ ତୋର ଆଶ୍ରୟ ଏବଂ ତୋର ଆଶ୍ରୟ ତୁ ନିଜେ, କେବଳ ତୁ ନିଜେ, ଆଉ କେହି ନୁହେଁ।

## ।। ଶଫରୀ ।।

× × ପୃଥିବୀରେ ଯେଉଁମାନେ ଭୀଷଣଭାବେ ବୁଲବୁଲ ହେଉଛନ୍ତି, କଥାରେ କଥାରେ ସାଙ୍ଘାତିକ ହସୁଛନ୍ତି, ବିଭିନ୍ନ ଭଙ୍ଗୀ ଦେଖାଇ ବାକ୍ୟାଳାପ କରୁଛନ୍ତି ସେମାନେ ବଞ୍ଚିଛନ୍ତି କି ନା ମୁଁ ଜାଣେ ନାହିଁ। କିନ୍ତୁ ମୁଁ ବଞ୍ଚିଛି ବୋଲି ସେତେବେଳେ ଜାଣିପାରେ, ଯେତେବେଳେ ଟୁପ୍‌ଚୁପ୍ ବସି କାନ ଡେରି ଶୁଣେ ମୋ ଭିତରେ

ଛାପାଖାନାର ଶବ୍ଦ । ବିଭିନ୍ନ ଆକୃତିର ଅକ୍ଷର ଯୋଡ଼ାଯାଇ ଏକ ଅଦୃଶ୍ୟ ପାଣ୍ଡୁଲିପି ପ୍ରସ୍ତୁତ ହେଉଥିବାର ସୂଚନା ମୁଁ ଅନୁଭବ କରେଁ ମୋର ସ୍ନାୟୁକୋଷରେ । ଆଉ ରକ୍ତ ନଦୀରେ ଭାସିଯାଉଥିବା ପ୍ରତିଟି ଅକ୍ଷର ତଳେ ଯେତେବେଳେ ଯନ୍ତ୍ରଣା ଆଉ ଦୁଃଖର ଶଫରୀ ଲଞ୍ଜ ମୁଣ୍ଡ ହଲାଇ ଖେଳବୁଲେ, ସେତେବେଳେ ମୁଁ ଅନୁଭବ କରେଁ ମୁଁ ବେଶ୍ ବଞ୍ଚିଛି ଏବଂ ଖୁବ୍ ବଞ୍ଚିଛି । ହଠାତ୍ ମୋର ମନେ ହୁଏ, ଏ ପୃଥିବୀରେ ଜୀବନର ଯଥେଷ୍ଟ ମାନେ ଅଛି । + + କିନ୍ତୁ ଯେତେବେଳେ ସମସ୍ତ ଆତ୍ମୀୟ ଅନାତ୍ମୀୟଙ୍କ ଦେହ ସମ୍ପୂର୍ଣ୍ଣ ସୁସ୍ଥ ଥାଏ । ଅଥବା ମାସର ପ୍ରଥମାର୍ଦ୍ଧରେ ମୁଁ ସାଙ୍ଗ ସାଥୀ ଗହଣରେ ରେଷ୍ଟୋରାଁ କାଉଣ୍ଟରରେ ବା ସିନେମା ଝରକାରେ ପଇସା ବଢ଼ାଏଁ; ଅଥବା କୌଣସି ଏକ ମାହେନ୍ଦ୍ର ବେଳାରେ ପ୍ରେମିକର ଦେହର ବାସ୍ନା ମୋର ପ୍ରତି ଲୋମକୂପରେ ସଂଚରିତ ହୋଇଯାଏ, ସେତେବେଳେ ମନେ ହୁଏ ଦେହ ଭିତରର ଛାପାଖାନାରେ ଯେପରି ଶ୍ରମିକ ଧର୍ମଘଟ ହୋଇଛି, ଆଉ ରକ୍ତ ନଦୀରେ ଯନ୍ତ୍ରଣା ଓ ଜୀବନର ଶଫରୀ ନିସ୍ତେଜ ହୋଇ ବଶାଇଯାଇଛି ଏବଂ ମୁଁ କ୍ରମେ କ୍ରମେ ପୃଥିବୀର ସବୁ ପଦାର୍ଥର ଭିନ୍ନ ଭିନ୍ନ ଅର୍ଥ ଭୁଲି ଶବ ପାଲଟି ଯାଉଛି ।

ମା, ତୁମକୁ କେମିତି ବୁଝାଇବି ଯେ ମୁଁ ବଞ୍ଚିବାକୁ ଚାହେଁ ଏବଂ ସେଥିପାଇଁ ତୁମେ ଏତେ ଦୁଃଖ ପାଉଛ । ତୁମେ ହୁଏତ କିଛି ପାପ କରିଥିଲ, ନହେଲେ ମୋର ମା' ହୁଅନ୍ତ ନାହିଁ । ତୁମେ ଯେଉଁବେଳେ ମାତୃତ୍ୱର ଗର୍ବ, ଗୌରବକୁ ମୂଲ୍ୟନ କରି ମୋତେ ଗର୍ଭାଶୟର ନୀଳ ଅନ୍ଧକାରରେ ଲୁଚାଇ ରଖିଥିଲ ସେତେବେଳେ କଣ ଜାଣିଥିଲ ତୁମର ସମସ୍ତ ଦୁଃଖର କାରଣ ମୁଁ ହେବି ବୋଲି । ବିଶ୍ୱାସ କର ପୃଥିବୀରେ ଅନ୍ୟମାନଙ୍କ ନିକଟରେ ବଞ୍ଚି ରହିବାର ମାନେ ଯାହା ମୋ ପାଖରେ ଆଦୌ ତାହା ନୁହେଁ ।

## ॥ ଦୁର୍ଘଟଣା ॥

+ + ଅନ୍ଧାରିଗି ଟନେଲରେ ଗୃହଆନ୍ତ ଝରଣା ଦେବ ଉପତ୍ୟକା ମଝିରେ ଟୋପାଏ ପାଣି ବିନା ମୁଁ ମରିଯିବି । କେହି ଜାଣିବେ ନାହିଁ, କେହି ବୁଝିବେ ନାହିଁ । ବିସ୍ତୀର୍ଣ୍ଣ ପଡ଼ିଆ ଭିତରେ ଗୋଟିଏ ପିମ୍ପୁଡ଼ିର ଶବ ଅଜଣା ଅଦେଖା ଭାବେ ମାଟିରେ ମିଶିଗଲା ପରି ମୁଁ ଏଇଠି ଶେଷ ହୋଇଯିବି । ମୋର ବଞ୍ଚିବା ଦରକାର । × × ମୁଁ ଜାଣେ ନାହିଁ କାହିଁକି ଏମିତି ହୁଏ, ମୁଁ କିଛି ଦୁର୍ଘଟଣାର ସମ୍ମୁଖୀନ ହେବା ପୂର୍ବରୁ କେଜାଣି କେମିତି ବୁଝି ପାରେ । ମୁଁ ପ୍ରାୟ ଅଧିକାଂଶ ସମୟରେ ଏଇ ଧରଣର ସ୍ୱପ୍ନ ଦେଖେ । ଯାତ୍ରା, ଅନିର୍ଦ୍ଦିଷ୍ଟ ଯାତ୍ରା । ଅନେକ ଗ୍ରାମ ନଗର ଜନପଦ

ଯାଉ ହୋଇ ଯାଉଛି ଆଗକୁ । କିନ୍ତୁ କୁଆଡ଼େ ? କିଛି ଲକ୍ଷ୍ୟ ନାହିଁ । ବୋଧହୁଏ ଲକ୍ଷ୍ୟହୀନତା ମୋତେ ଭଲ ଲାଗେ ବୋଲି ମୁଁ ଏମିତି ସ୍ୱପ୍ନ ଦେଖେ । ଅବଶ୍ୟ ମୁଁ କୌଣସି ନିର୍ଦ୍ଦିଷ୍ଟ କାମରେ ବେଶୀ ସମୟ ମନ ଲଗାଇ ରହି ପାରେନି । ଘଟଣାହୀନ ହୋଇ ମୁହୂର୍ତ୍ତ ଗୋଟିଏ ବି ମୁଁ ନିଜକୁ ସ୍ଥିର ରଖି ପାରେନି । ଘଟଣା ଖୋଜିବା ପାଇଁ ବାହାରି ପଡ଼େ । + + +

ସକାଳେ ଏମିତି ଶୋଇ ରହି ଅର୍ଦ୍ଧଚେତନ ଅବସ୍ଥାରେ ଚାରିଆଡ଼େ ଜାଗି ଉଠୁଥିବା ଶବ୍ଦ ଶୁଣିବାକୁ ଭଲଲାଗେ । ବୋଧହୁଏ ଏଇଟା ପୃଥିବୀର ଶବ୍ଦ । ପୃଥିବୀର ଜାଗି ଉଠିବାର ଶବ୍ଦ । କ୍ରମେ ସମସ୍ତେ ଜାଗ୍ରତ ହୋଇଗଲେ ପୃଥିବୀର ମୌଳିକ ଶବ୍ଦ ଚାପା ପଡ଼ିଯାଏ । ଘୋ ଘୋ ଭିତରେ ହଜିଯାଏ ସୁନ୍ଦର ଶବ୍ଦ-ଧ୍ୱନି-ସ୍ୱର । ଠିକ୍ ଏଇ ଜାଗି ଉଠିବା ମୁହୂର୍ତ୍ତରେ ମନେହୁଏ ପୃଥିବୀଟା ଖୁବ୍ ସୁନ୍ଦର ଓ ପବିତ୍ର ହୋଇ ଯାଇଛି । ପୃଥିବୀର ଯେଉଁ ସବୁ ଜାଗା ଏବେ ବି ଅନାବାଦୀ ରହିଛି, ସେଇ ସବୁ ଜାଗାରେ ସରକାର ଫୁଲ ଚାଷ କରନ୍ତେ କି ? ମୁଁ ସେ ଫୁଲର ଜଙ୍ଗଲ ଭିତରେ ଅନେକ ରଙ୍ଗୀନ ପ୍ରଜାପତି ଗୋଡ଼ାଇ ବୁଲନ୍ତି । × ×

× × ମୁଁ ହଠାତ୍ ମନେ କଲି ମୁଁ ଖୁବ୍ ନିଃସଙ୍ଗ ହୋଇଗଲି । ମୋର ପୃଥିବୀରେ ଯେମିତି କେହି ନାହିଁ । ରାସ୍ତାରେ ବୁଲୁଥିବା ଭିକାରି କୁକୁରଠାରୁ ବି ମୁଁ ବେଶୀ ଅନାଥ, ଅସହାୟ ।

+ + + ବଞ୍ଚିବା ତ ଗୋଟିଏ ବଡ଼ ଦୁର୍ଘଟଣା । ଦୁଃସ୍ୱପ୍ନ ଦେଖିଲେ କେବଳ ଦୁର୍ଘଟଣା ନ ଘଟିବାଯାଏ ସମୟକୁ ଜାଣିହୁଏ ନାହିଁ । କେବଳ ସେତେବେଳେ ସମୟ ଜଣା ହୁଏ, ଯେତେବେଳେ ଟେବୁଲ ଉପରକୁ ନୂଆ ତାରିଖ ଫେରି ଆସେ, ଅଫିସରେ ଦରମା ମିଳେ, ପୁରୁଣା କେଲେଣ୍ଡର ବାହାର ମଳାଟ ହୋଇଯାଏ । ସେତେବେଳେ ବୁଝିହୁଏ ଗଲା, ସମୟ ଚାଲିଗଲା । ଅନୁଭୂତିଶୂନ୍ୟ ହୋଇ ସମୟ ପଳାଇଲା, ଘଟଣାହୀନ ହୋଇ ଦିନ ଗଡ଼ିଗଲା । ତେଣୁ ସମୟ ଓ ଜୀବନ ଜାଣିବା ପାଇଁ ଦୁର୍ଘଟଣାର ସାମ୍ନା ହେବା ଉଚିତ ।

ସ୍ୱାକ୍ଷରିତ
ଅଧ୍ୟାପକ ଶିବରାମ ପାଢ଼ୀ

# କହ୍ନେଇର ଦୁଇଟି ଚିଠି

[ ନିଜ ସମ୍ପର୍କରେ ଓ ଅନ୍ୟ ସମ୍ପର୍କରେ ]

( ୧ )

ଚିଠି ପାଇଥିଲେ ମଧ୍ୟ ଠିକ୍ ସମୟରେ ଉତ୍ତର ଲେଖି ପାରିନି ପଞ୍ଚାନନବାବୁ । × × ଆମ ଗାଁ ଲୋକେ ଲେଖକ କହ୍ନେଇ ଦାସଙ୍କୁ ଜାଣନ୍ତି, କିନ୍ତୁ ସେମାନଙ୍କ ଗାଁର କହ୍ନେଇକୁ ଚିହ୍ନନ୍ତି ନାହିଁ । ତାର ଉଦାହରଣ ମୁଁ ଅନେକ ଥର ପାଇଛି । ଏବେ ଥରେ ଗାଁ ଲାଇବ୍ରେରୀରୁ ବହି ନେଉଥିବା ଝୋଲମାଛଡ଼ା ତରୁଣ ଓ ପ୍ରଜାପତି-ମାନଙ୍କୁ ପଚାରିଲି "ଏବେ କାହା ଗପ ଭଲ ଲାଗେ ?" ସେମାନେ ମୋ ନାଁଟାବି ଉଚ୍ଚାରଣ କଲେ । କିନ୍ତୁ ଆଶ୍ଚର୍ଯ୍ୟ ସେମାନଙ୍କ ଧାରଣା—ଓଡ଼ିଶାରେକ କହ୍ନେଇ ଦାସ ଗୋଟିଏ ନାହାନ୍ତି ! ଥରେ ଗୋଟିଏ ଝିଅ ଗାଁରେ କହୁଥିଲା— ଜୁନା, ତୋ ନାଁରେ କିଏ ଜଣେ ଭଲ ଗପ ଲେଖୁଛି । କିଛିଦିନ ପରେ ସେ ଚିଠି ଲେଖିଥିଲା "କହ୍ନେଇ ଦାସର ଫଟୋଟା ତୋରି ଭଳି ଯେ, କିନ୍ତୁ ସେ ତୋ ଅପେକ୍ଷା ସୁନ୍ଦର ଓ ମୋଟା । ଏଥର ମାନସରେ ଦେଖିଲି ।"

କୁହନ୍ତୁ ପଞ୍ଚାନନବାବୁ ଏହାଠାରୁ ବଳି ଟ୍ରାଜେଡ଼ି ଆଉ କଣ ଥାଇ ପାରେ । ମୁଁ ତ ଗାଁ କଣିଆ ସିଂଘାଣି ନାକ ହେବାକୁ ନ୍ୟାୟତଃ ବାଧ୍ୟ । × ×

—କହ୍ନେଇ

( ୨ )

ବ୍ରଜବାବୁ,

ନମସ୍କାର ନେବେ ଓ ହାର୍ଦ୍ଦିକ ଅଭିନନ୍ଦନ ଗ୍ରହଣ କରିବେ । ବାଲେଶ୍ୱରୀ ସେଇ ଫକୀରମୋହନଙ୍କଠୁଁ ଏ ପର୍ଯ୍ୟନ୍ତ ବେଶ୍ ସାହିତ୍ୟର ସବୁ ବିଭାଗରେ ନେତୃତ୍ୱ ନେଉଛି । ଏଥିରେ ମୋର ଫୁଟାଣି ବେଶ୍ ବଢ଼ି ଯାଇଛି, ଏକଥା ଅନେକ ବଡ଼ ବଡ଼ ଲୋକେ କୁହାକୁହି ହେଉଛନ୍ତି । ଆପଣଙ୍କ ସମ୍ମାନରେ ମୁଁ ଯଦି ପ୍ରକୃତରେ ଖୁସିହୋଇ ନ ପାରିଲି ବା ମୋର ଖୁସିଟା ଦେଖେଇ ନ ପାରିଲି ତାହେଲେ ଆଉ ହେଲି କଣ ?

\+ \+ ବାଲେଶ୍ୱର ଓଡ଼ିଆ ସାହିତ୍ୟର ମୁଖଶାଳା ହେଉ ଏବଂ ଆପଣଙ୍କ ଶୁଭେଚ୍ଛାରେ ସାହିତ୍ୟର ନନ୍ଦଘୋଷ ଗଡ଼ିଚାଲୁ ଏହାହିଁ ଆପାତତଃ ଇଚ୍ଛା ।

ନମସ୍କାରାନ୍ତେ—କହ୍ନେଇ

---

( ପ୍ରଥମ ଚିଠିଟି 'ଲେଖକ' ପଞ୍ଚାନନ ଦାସଙ୍କୁ ଓ ଦ୍ୱିତୀୟ ଚିଠିଟି 'କବି' ବ୍ରଜନାଥ ରଥଙ୍କୁ ଲିଖିତ । ଚିଠି ଦୁଇଟିର ପ୍ରେରଣର ତାରିଖ ନ ଥିଲେ ମଧ୍ୟ ପୋଷ୍ଟ ଅଫିସ ମୋହର ଅନୁଯାୟୀ ଯଥାକ୍ରମେ ତା ୫-୮-୭୪ ଓ ତା ୨୩-୪-୭୪ରେ ମିଳିଥିଲା । ଦ୍ୱିତୀୟ ପତ୍ରଟି କବି ରଥଙ୍କୁ ବିଷୁବମିଳନ ରଜତଜୟନ୍ତୀ ଉପଲକ୍ଷେ ଏକହଜାର ଟଙ୍କାର ବିଷୁବ ପୁରସ୍କାର ପ୍ରଦତ୍ତ ହେବାପରେ ଅଭିନନ୍ଦନ ଜଣାଇ ପ୍ରେରିତ ହୋଇଥିଲା । )